ଗପକୁ କହିବାର, ପକ୍ଷି ଶୁଣେଇବାର ଓ ମୋଟେ ନପଡି ନିଜ ଭିତରେ ନିଜେ ପଥର ହୋଇଯିବାର ଓ ଶୁଣି ସେଇ ପଥରରୁ ମୂର୍ତ୍ତି ବାହାରିବାର କାରିଗରୀ ଚାତୁରୀ ଓସିଦ୍‌କୁ ଜଣା । କବିତା ଭିତରେ ଗପ ଓ ଗପ ଭିତରେ କବିତା ଉତ୍ତାରିବାର ବାହାଦୁରୀ ଓ ଲୋଡିବା ପଣକୁ ନେଇ ଗପର କାୟାକଳ୍ପ । ବେଳେ ବେଳେ ଅଲୋଡା ଅଖୋଜା ଚରିତ୍ର ଓ ଭୁଲି ହୋଇଯାଉଥିବା ସମୟର ବତୁରା, ଭିଜା ଜଲ୍‌ସାର ଚିତ୍ରକର ଓସିଦ୍ । ତା' ଗଦ୍ୟର ଜୟ ହେଉ ।

ଅଜୟ ସ୍ୱାଇଁ

ଲେଖକ : ଅବ୍‌ଦୁଲ ଓସିଦ୍ ଖାଁ
ସା-ବରଦାପଡ଼ା
ପୋ:ଅ-ବିଶ୍ୱାଳପଡ଼ା
ଭାୟା-ରେଞ୍ଚ, ପିନ୍- ୭୫୨୧୧୪
ଜି-ଖୋର୍ଦ୍ଧା

ପ୍ରକାଶକ : ଅନିଶ୍ ଆଲାମ୍

ପ୍ରକାଶନୀ : ଋତୁ ପ୍ରକାଶନୀ
ସା-ବରଦାପଡ଼ା
ପୋ:ଅ-ବିଶ୍ୱାଳପଡ଼ା
ଭାୟା-ରେଞ୍ଚ, ୭୫୨୧୧୪
ଜି-ଖୋର୍ଦ୍ଧା

ପ୍ରଚ୍ଛଦ : ସୁଧାଂଶୁ ସାମନ୍ତରାୟ

ପ୍ରଥମ ପ୍ରକାଶ ୨୦୦୮

ମୂଲ୍ୟ ୭୫ ଟଙ୍କା ମାତ୍ର

ମୁଦ୍ରଣ : କଲ୍ୟାଣୀପ୍ରେସ୍
ବି.ଜେ.ବି. ନଗର, ଭୁବନେଶ୍ୱର
ଫୋନ୍ - ୦୬୭୪-୨୪୩୦୬୭୧

**Writer** *Abdul Osid Khan.*
At- Baradapada
Po-Biswalpada
Via- Rench, Pin-752114
Dist- Khurda

**Publisher** : **Anish Allam**

**Published by**: : **Rutuprakasanee**
At-Baradapada
Po-Biswalpada
Via- Rench, Pin-752114
Dist- Khurda

**Cover Design** : **Sudhanshu Samantaray**

**First Edition** : **2008**
Price : Rs. 75/- only

**Printed At** : **Kalyani Press**
B.J.B. Nagar, Bhubaneswar
Ph. - 0674 - 2430671

# ଉତ୍ସର୍ଗ

ସାର୍,

ଅନ୍ଧାରେ ତୁମେ ଆଲୋକର୍ ଶିଖା
ତୋଳି ଧରି ଥିଲ୍ ଆଗେ
ପଛେ ପଛେ ମୁହିଁ ଅବୋଧ ବାଳକ
ଚାଲୁଥିଲି ଅନୁରାଗେ ।

ସେହି ଅନୁରାଗ ରୂପର୍ ପସରା
ଧରି ଉଭା ହେଲା ଯେବେ
ତାକୁ ଥୋଇ ତୁମ ପାଦ ତଳେ ନଇଁ
ମାଗୁଚି ଆଶୀଷ ଲଭେ ।

(ଶ୍ରୀଯୁକ୍ତ ବୀରେନ୍ଦ୍ର କୁମାର ସାମନ୍ତରାୟଙ୍କୁ)
ଓସିଦ୍

# ଅଭିମତ

## ।। ଅନ୍ଧାରର ମୁହଁକୁ ମୁଁ ଯେମିତି ଦେଖିଛି ।।

ଦୃଶ୍ୟମାନ ଜଗତ ଅଭ୍ୟନ୍ତରରେ ରହି ଯାଉଥିବା ଅଦୃଷ୍ଟ ଘଟଣା ଚରିତ୍ରକୁ ଦେଖି ପାରନ୍ତି କେତେ ଜଣ ? କେତେ ଜଣ ଖୋଳି ବାହାର କରିପାରନ୍ତି ସବୁଜ ଘାସ ପଡ଼ିଆର ଦୁଃଖ, ମହଲଣ ଗ୍ଲାନି, ଉଚ୍ଛୁଳା ନଈର ଅନ୍ତର୍ଦାହ, କୁସୁମିତ ଫୁଲବନର ଶୋକାର୍ତ୍ତ ସକାଳ ? ସଭ୍ୟତା ସମାରୋହ ଅନ୍ତରାଳରେ ମୂଲ୍ୟବୋଧର ବିସର୍ଜନ। ଜୀବୀକା ଭିତରେ ଜୀବନ କିପରି ଅଣନିଶ୍ୱାସୀ ଓ ଉର୍ଦ୍ଧଶ୍ୱାସୀ ? ଭେଜାଲ ସଂସ୍କୃତିକ ପରିମଣ୍ଡଳରେ ଅସ୍ମିତା ବିଚାର ପାଇଁ ପ୍ରଶ୍ନବାଣ। କିଏ କା'ର ଆତ୍ମପରିଚିତି ପାଇଁ ବ୍ୟଗ୍ର, ବ୍ୟସ୍ତ ଓ ବିକଳ ? ଘଷରା କାନ୍‌ଭାସ୍‌ରୁ ଖୋଜି ବାହାର କରିପାରିଛି କିଏ ଆଜିର ଆଦର୍ଶ ? ରୋଲ୍ ମଡ଼େଲ ? ବାପା ଖୋଜୁଚି ପୁଅ ପରି ପୁଅ। ପୁଅ ଖୋଜୁଚି ବାପ ପରି ବାପ। ଭାଇ ଖୋଜୁଚି ଭାଇ। ଦିଅର ଖୋଜୁଚି ଭାଉଜ। ଭାଉଜର ଦରକାର ଅଲିଅଳ ସାନଭାଇ ପରା ଦିଅର। ପ୍ରତିକଥାକୁ ହାଜର। ବୃତ୍ତାକର ଜୀବନକୁ ସାଉଁଟୁ ସାଉଁଟୁ ମଣିଷ ହୁଏ ମଡ଼ା, ଭାଗ ବସେ ମେଡ଼ିକାଲ ବାରଣ୍ଡାରେ। ଜୀବଦ୍ଦଶାରେ 'ମହାପୁରୁଷ' ସାଜି ଶକ୍ତି ଓ କ୍ଷମତାରେ କାବୁକରି ସିଂହାସନ, ନିଜ ଇଙ୍ଗିତରେ । ଚଳାଇ ସମାଜ, ଦେଶ ଓ ଜାତି ନିଜ ସ୍ୱାର୍ଥ ରଂଗରେ ଅନୁରଂଜିତ କରି ଶାସନ ପ୍ରଶାସନ ଆପଣା ଇଚ୍ଛାରେ। ପରିଣତିରେ ପାଏ କ'ଣ ? ତା' ମଡ଼ା ଭିତରୁ ଖୋଜାହୁଏ କଅଣ ? ସମ୍ପତ୍ତି ? ପ୍ରତିଷ୍ଠା ? ବେୱାରିସ୍ ହେବାର ଘୋଷଣାନାମା ? କିଏ କହି ପାରିବ ଆଜିର ଏ ଜଗତିକରଣ, ଉଦାରିକରଣ, ବଜାରୀକରଣ ଓ ବସ୍ତୁଗତ ସୁଖ ସନ୍ଧାନ କେତେ ଜଡ଼ତାଯୁକ୍ତ, ଆଦର୍ଶ ହୀନ ଓ ଅନୈତିକ ? ଏମାନଙ୍କ ସମାରୋହରେ ମଣିଷ କେତେ ଅବସରହୀନ, ଯାନ୍ତ୍ରିକ ? ଆଦର୍ଶଗତ ଅଧୋପତନ, ରାଜନୈତିକ, ସାମାଜିକ ଓ ଆର୍ଥିକ ଅପରାଧୀକରଣ, ସ୍ନେହ, ପ୍ରେମ, ପ୍ରଣୟର ପ୍ରତାରଣା, ଧୋକାବାଜି, ବ୍ଲାକ୍‌ମେଲିଂ । ନିରାପତ୍ତାହୀନ ଆଧୁନିକ ଜୀବନ। ଚିହ୍ନାଜଣା ନିରାସକ୍ତ ପଥରେ ମାୟା ମିରିଗ ପାଇଁ ଖୋଜି ବୁଲେ କାଳିଦାସ। ନିଖୋଜ ହୁଏ ସଭିଙ୍କ ନଜରରେ। ତା' ଅନୁପସ୍ଥିତି ସମସ୍ତଙ୍କ ପାଇଁ ହୋଇଯାଏ ଦୁଃସମ୍ବାଦ। କ'ଣ ଖୋଜେସେ ? କି ଲାଭ ଆଶାରେ ଅନ୍ତର୍ଦ୍ଧାନ ହୁଏ ? ଲୀରା' କାଚପଥର ସନ୍ଧାନରେ ବିଶ୍ୱ ପରିକ୍ରମା କରି ଧାଇଁ ଆସେ ପୁରୀ ସମୁଦ୍ର କୂଳ। ପାଏ ରାମୁଡୁକୁ। ନୋଳିଆ ବସ୍ତିର ମତ୍ସ୍ୟଜୀବୀ, ଭେଣ୍ଡା ଜୁଆନ୍। ଲେଖିବାକୁ ଯତ୍ନ କରି ପୂରା କରି ପାରେନା ଜୀବନର ଚିଠି। ରହିଯାଏ ଅଧାଲେଖା। ସାକ୍ଷାତ ଘଟେ ଦେବୀ ସହିତ। ସହରର ସୁନ୍ଦରୀ ଦେବୀ ଚୌଧୁରୀ। ତା' ପରେ ଯାହା ହୁଏ ତାକୁ ଲୁଚାଇ ଦିଏ ରାତି । ଲୁଚାଇ ରଖେ ଜୀବନର ନିଭୃତ କୋଠରୀ ଓ ତାର ରୋମାଞ୍ଚକର କାହାଣୀ।

ସେଦିନର ମହିଷାମର୍ଦ୍ଦିନୀ ଦେବୀ ଆଉ ସଂହାର କରେନା, ସଂସାର କରେ। ଆବଶ୍ୟକ ସ୍ଥଳେ ଦେବୀ ଭିତରୁ ଜନ୍ମନିଏ 'ବିଷକନ୍ୟା' ସଂହାର କରେ ମାନବ ଜାତିର କଳଙ୍କ ମହିଷାସୁରମାନଙ୍କୁ । ଅବିଳମ୍ବେ ଶାନ୍ତି ଓ ସଂହତି ଫେରାଇ ଆଣିବା ପାଇଁ ଜୀବଜଗତରେ ସେ ଚହଟିଯାଏ ଶାଳଫୁଲରବାସ୍ନା ହୋଇ। ବନଭୂମି ଆମୋଦିତ ହୁଏ। ବଣରୁ ଆସି ସଭ୍ୟତାର ଶିଡ଼ି ଚଢ଼ିବାକୁ ଯତ୍ନ କରୁଥିବା ମଣିଷ ବାଟବଣା ହୁଏ ଶାଳ ଫୁଲର ବାସ୍ନାରେ। ଓଃ ! କି ସୁନ୍ଦର। ଦିବସ ତା'ର ଯେତିକି ଭଲ, ଅନ୍ଧାର ତା'ର ତା' ଠାରୁ ଭଲ ? ? ଯିଏ ଦେଖେ ଅନ୍ଧାର ଓ ଅନ୍ଧାରର ମୁହଁ ସେ ନିଶ୍ଚେ ସ୍ରଷ୍ଟା, ଈଶ୍ୱର, ନୂତନର ରୂପକାର, କବି, ଗାଳ୍ପିକ, କଳାକାର।

ଓଡ଼ିଆ ଗଳ୍ପ ସାହିତ୍ୟ ଉତ୍ତର ଆଧୁନିକ କାଳ (୧୯୯୦ - ୨୦୦୮) ରେ ଯେଉଁ କେତେଜଣ ଗାଳ୍ପିକ ନିଜର ସ୍ୱତନ୍ତ୍ର ପରିଚୟ ତିଆରି କରିଛନ୍ତି ସେମାନଙ୍କ ମଧ୍ୟରେ ଡ଼କ୍ଟର ଅବଦୁଲ୍ ଓସିଦ୍ ଖାଁ ଅନ୍ୟତମ। ସେ ଜଣେ କବି, ସମାଲୋଚକ, ପ୍ରାବନ୍ଧିକ, ଗୀତିକାର ଓ ଗବେଷକ ଭାବରେ ଓଡ଼ିଶାରେ ବେଶ୍ ଜଣାଶୁଣା। ଓଡ଼ିଆ ଭାଷା ସଂସ୍କୃତି ତଥା ଜଗନ୍ନାଥ ଚେତନାର ସେ ଜଣେ ସଚ୍ଚା ଓ ସ୍ୱାଭିମାନୀ ଉପାସକ। ଶିଶୁ ସାହିତ୍ୟରୁ ଆରମ୍ଭ କରିଥିବା ସାରସ୍ୱତ ପ୍ରତିଭା ତାଙ୍କର ବହୁମୁଖୀ। ଗଳ୍ପ ପୁସ୍ତକ 'ଅନ୍ଧାରର ମୁହଁ' ସେଇ ସର୍ଜନ ମାନସର ଦ୍ୱିତୀୟ ଅର୍ଘ୍ୟ। ପ୍ରଥମ 'ଅଜ୍ଞାତବାସର ନିର୍ଜନତା' କବିତା (୧୯୯୦)। ଏ ଗଳ୍ପ ଗ୍ରନ୍ଥରେ ସନ୍ନିବେଶିତ ଅନ୍ୟୁନ ଷୋହଳ ଗୋଟି ଗଳ୍ପ ସାଂପ୍ରତିକ ସମୟର ମୂର୍ତ୍ତିମନ୍ତ ଦସ୍ତାବିଜ୍। ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକା ପୃଷ୍ଠାରେ ପ୍ରକାଶ ଲାଭ କରି ଏହା ଯଥେଷ୍ଟ ପାଠକୀୟ ଆବେଦନ ଓ ଆଦର ଲାଭ କରିପାରିଛି।

ଶୀର୍ଷକ ଗଳ୍ପ 'ଅନ୍ଧାରର ମୁହଁ' ବେକାରୀ ଜୀବନର ଶଙ୍କା, ଆଶଙ୍କା ଓ ଭାବନା - ସମ୍ଭାବନାକୁ ନେଇ ଆତଙ୍କିତ। ଅନନ୍ୟୋପାୟ ଜୀବନକୁ ସୁଧାରି ନେବାର ଅଭୀପ୍‌ସାରେ ଏହା ଘୂର୍ଣ୍ଣାୟମାନ। ଆବଶ୍ୟକ ଅର୍ଥ ସଂଗ୍ରହ ପାଇଁ ଅସତ୍ ମାର୍ଗ ଅବଲମ୍ବନ ଶ୍ରେୟ ମଣି ନେବାକୁ ଆଲୋକ ଓ ସଂଗ୍ରାମକୁ ଯେଉଁ ଏକ ଦୃଢ଼ ନିଷ୍ପତ୍ତି ଅନ୍ଧକରି ଦେଇଛି, ତାହା ବାସ୍ତବ । ପୁରୀ ସମୁଦ୍ର କୂଳର ଅନ୍ଧାରୀ ଇଲାକା ବଂଚିବାର ରାହା ଦେଖାଇଛି। ବେକାରୀ ଜୀବନର ଅସହାୟତା ଚାଟି ନେଇଚି ଯୁବକ ଭିତରର ସମସ୍ତ ଶକ୍ତି ଓ କ୍ଷମତା। ଭାରତ ବର୍ଷର ନିର୍ମାଣକାମୀ ସ୍ୱର୍ଦ୍ଧିତ ଯୁବକର ମାନସିକ ଶକ୍ତି ହରଣ କରି ନେଇଚି। ଏକ ଜରାଗ୍ରସ୍ତ ରୋଗୀ ପରି ବଂଚିବାର ଆତ୍ମ ବିଶ୍ୱାସତକ ହରାଇ ବସି ନିଜ ଉପରେ ଅଭିସମ୍ପାତ ବାଢୁଛି। ସତେ ଯେପରି ତା' ଭିତରେ କିଏ ଜଣେ କହୁଚି - 'ମୋ ଦେଇ ଆଉ କିଛି ହେବ ନାହିଁ। ଏ ଜୀବନରେ କି ଲାଭ' ? ପ୍ରଚଣ୍ଡ ମାର୍ତ୍ତଣ୍ଡ, ଜ୍ୱଳନ୍ତ ପିଣ୍ଡ ତୁଲ୍ୟ ଆଗ୍ନିକ ଉଷ୍ମ ଭାରତୀୟ ଯୁବକର ଯଦି ଏଭଳି ମାନସିକ ଅବସ୍ଥା ହୁଏ; ତେବେ ଭାରତର ଭବିଷ୍ୟତ କ'ଣ ହେବ ? କିଏ ନିର୍ମାଣ କରିବ ନବ ଭାରତ ? ସାଂପ୍ରତିକ ସମୟର ଏ ଏକ ଗମ୍ଭୀର ପ୍ରଶ୍ନ। ସଭ୍ୟ ଶିକ୍ଷିତ ଯୋଗ୍ୟତା ସମ୍ପନ୍ନ

ଯୁବକ ହାତରେ କାମ ନାହିଁ। ସାମାନ୍ୟ କେଇ ଗ୍ରାମ ରସଦ ଯୋଗାଡ଼ ପାଇଁ ସେ ଅସମର୍ଥ । ଏଥିପାଇଁ ଦାୟୀ କିଏ ? କାହାର ଉତ୍ତର ଦାୟିତ୍ୱ ରହିଚି ଏ ଦିଗରେ ? ଅବଶ୍ୟ ଏସ୍.ପି. ସାହାବଙ୍କର ପ୍ରସ୍ତାବ ନିରାଶାର ଚୋରାବାଲିରେ ବଂଚିବାର ଆକସ୍ମିକ ମାଟିମଣ୍ଡପ। ଓଡ଼ିଆ ସାହିତ୍ୟରେ ଯେଉଁ କେତେ ଜଣ ପ୍ରୟୋଗାତ୍ମକ ଗଳ୍ପ ରଚନାରେ ହାତ ଦେଇଛନ୍ତି ଅବ୍‌ଦୁଲ୍ ଓସିଦ୍ ଖାଁଙ୍କର **'ଅନ୍ଧାରର ମୁହଁ'** ତନ୍ମ ମଧ୍ୟରେ ଅନ୍ୟତମ। କ୍ଷମତାଧାରୀ ସହରୀବାବୁ ମାନଙ୍କର ବେକାର, ବଦମାସ୍ ଓ ବିଶୃଙ୍ଖଳ ପୁଅ ମାନଙ୍କ ପ୍ରତି **'ଦେବୀ'** ଗଳ୍ପ ଏକ ସତର୍କ ସୂଚନା। ଏଥିରେ ମହିଳା ସଶକ୍ତିକରଣର ଅଦୃଶ୍ୟ ଇଂଗିତ ଥିଲାବେଳେ ଅନ୍ୟାୟର ମୁକାବିଲା ପାଇଁ ଆବଶ୍ୟକ ହେଲେ ଲବଣୀ ପୀତୁଳା ନାରୀକୁ କଠିଣ ହୃଦୟ ମହିଷାମର୍ଦ୍ଦିନୀ ଦେବୀ ଦୁର୍ଗା ରୂପ ଧାରଣ କରିବାକୁ ପଡ଼ିବ ବୋଲି ଆହ୍ୱାନ ଦିଆ ଯାଇଛି। କେବଳ ବାକ୍ୟରେ ନୁହେଁ, କାର୍ଯ୍ୟରେ ଦେଖାଇ ଦେଇଛନ୍ତି ଗାଳ୍ପିକ। କଥାରେ ଅଛି Beauly can change the world । ପୁରାଣ ଶାସ୍ତ୍ର, କାବ୍ୟ, ନାଟକ ଓ ଇତିହାସରେ ଦେଖା ଯାଇଚି ସୁନ୍ଦରୀମାନେ ବିଶ୍ୱକୁ ଅକଲ୍ୟାଣ, ଅଧର୍ମ ଓ ବିପଦରୁ ରକ୍ଷା କରି ମାନବ ସମାଜର ବୃହତ୍ତର ମଙ୍ଗଳ ସାଧନ କରିଛନ୍ତି। ଦେବୀ ଗଳ୍ପର ନାୟିକା ଚୌଧୁରୀ। ସେଇ ଦୁଃସାହସିକ ଅଭିଯାନର ଏକ କ୍ଷୀଣ ଝନତ୍କାର।

**'ମହାପୁରୁଷ'** ଗଳ୍ପ ମାଧ୍ୟମରେ ଜଣେ ମହାନ୍ ଜନନେତାଙ୍କର ପ୍ରକୃତ ସ୍ୱରୂପ ଉଦ୍‌ଘାଟନ କରାଯାଇଛି। ଯେଉଁ ମହାନତା ଜନସାଧାରଣଙ୍କ ଦୃଷ୍ଟି ଆଢୁଆଳରେ ରହିଯାଇଥିଲା; ତାହାକୁ ଖୋଲି ବାହାର କରି ଦେଇଛନ୍ତି ଡ଼ଃ ଖାଁ। ମହାପୁରୁଷ ହେବାର ପ୍ରକୃତ ମନ୍ତଟି ସମ୍ଭବତଃ ସମଗ୍ର ଜୀବଦ୍ଦଶାରେ ଅନୁପାଳନ ବା ଚରିତାର୍ଥ ହୋଇ ପାରିଲା ନାହିଁ ତଥାକଥିତ ମହାପୁରୁଷଙ୍କର। ସେଇ ସତ୍ତାଟି ମହାପୁରୁଷଙ୍କ ଭିତରେ ଚତୁର୍ଥ ଛାୟାମୂର୍ତ୍ତି ରୂପେ ବନ୍ଦୀ ଥିଲା। ମୃତ୍ୟୁର ଅବ୍ୟବହିତ ପରେ ସେ ମୁକ୍ତି ପାଇଲା। ସାମ୍ବାଦିକ ଏଥିରେ ସମୟର ପ୍ରତୀକ ହୋଇଥିଲା ବେଳେ ଛାୟା ମୂର୍ତ୍ତି ଗୁଡ଼ିକ ବିଭକ୍ତ ବ୍ୟକ୍ତିତତ୍ତ୍ୱର ଏକ ଏକ ପ୍ରତିନିଧି। ଚାରିତ୍ରିକ ସ୍ୱରୂପର ପ୍ରତିବିମ୍ବ। କ୍ଷମତା ଓ ଐଶ୍ୱର୍ଯ୍ୟରେ ଅନ୍ଧ ପୁରୁଷ ମାନଙ୍କର ମୃତ୍ୟୁପରେ କି ଯେ ଦଶା, ତାହାକୁ ନିଖୁଣ ରୂପେ ଚିତ୍ରଣ କରିଛନ୍ତି ଗାଳ୍ପିକ ତାଙ୍କ **'ମଡ଼ା'** ଗଳ୍ପରେ। ମହାପ୍ରତାପୀ ଜମିଦାର ଚୌଧୁରୀ ରଣବୀର ସିଂହଙ୍କ ଲାସ୍ ଉପରେ ଚାଲିଥିବା ଜମିଜମା ସ୍ଥାବର ଅସ୍ଥାବର ସମ୍ପତ୍ତିର ଭାଗବଣ୍ଟା। ଅପୁତ୍ରିକ ରଣବୀରଙ୍କ ଆଭିଜାତ୍ୟ ସମ୍ପନ୍ନ ବୃଥା ଅହଂକାରର କରୁଣ ତଥା ମର୍ମସ୍ପର୍ଶୀ ପରିଣାମ ଟଣା ଯାଇଚି ଗଳ୍ପରେ। ଚରିତ୍ର ପ୍ରଧାନ ଗଳ୍ପ ଦୁଇଟି ସାଂପ୍ରତିକ ସମୟର ବାସ୍ତବ ତଥା ବିଶ୍ୱସନୀୟ ଘଟଣାର ନିଛକ ପ୍ରତିବିମ୍ବ।

**'ନିଖୋଜ କାଳିଦାସ'** ଗଳ୍ପରେ କାଳିଦାସ ମହାନ ଅଥଚ ଉଦ୍‌ବାସ୍ତୁ। ତାର ଘର, ସ୍ତ୍ରୀ, ପରିବାର, ବନ୍ଧୁ ଓ ପରିଜନ ସଭିଏଁ ଅଛନ୍ତି। ସେ ସମସ୍ତଙ୍କର ପୁଣି

କାହାରି ନୁହେଁ। ନିଜସ୍ୱ ବୃତ୍ତରେ ଚକ୍କର କାଟୁଥିବା ସାମାଜିକ ଦାୟିତ୍ୱହୀନ, ବିଟପୁରୁଷ, ଅମିତବ୍ୟୟୀ, ଅଜବ ପ୍ରାଣୀଟିଏ କାଳିଦାସ। ଅନେକ ଦାବୀ ଓ ଅଧିକାରର ଉତ୍ତରଦାୟୀ ଉତ୍ସଟିଏ ସେ। କାହାକୁ ଦେବାକୁ ଅଛି ଜମି, କାହାକୁ ଶୁଝିବାକୁ ଅଛି ଧାର୍, କାହାପାଇଁ ଚାକିରୀର ନିଯୁକ୍ତି ପତ୍ର, କାହାକୁ ବୁଝାଇବାକୁ ହେବ ଶଙ୍ଖା ଆଉ ସିନ୍ଦୁରର ମୂଲ, କାହାକୁ ଦେଇଥିବା ପ୍ରତିଶ୍ରୁତି ଚରିତାର୍ଥ କରିବାକୁ ହେବ - ଏମିତି ଅନେକ ଦାବୀ ଓ ଅଧିକାରର ଇସ୍ତାହାର ଯେତେବେଳେ ଆସି ଝୁଲେ ପୋଲିସ୍ ଷ୍ଟେସନରେ; ସେତେବେଳେ କାଳିଦାସ ହୋଇଯାଏ ନିଖୋଜ। ତାର ନିଖୋଜ ହେବା ଆଗାମୀ ନିର୍ବାଚନରେ ଦଳୀୟ ରାଜନୀତି ପାଇଁ ମହଙ୍ଗା ପଡ଼ିବ। ନିଖୋଜ ହେବାର ଅନ୍ୟାନ୍ୟ ଯେକୌଣସି କାରଣ ଥାଉନା କାହିଁକି ତାକୁ ଅର୍ଥ କରାଯାଏ ବିଭିନ୍ନ ଢ଼ଙ୍ଗରେ। ଯାବତୀୟ ଅପରାଧକୁ ହସିହସି ସମ୍ଭାଳି ନେଉଥିବା ଚରିତ୍ରକୁ ଆପଣ ଦେଖିଛନ୍ତି (?)। କାଳିଦାସ ଭିତରେ ଆଲବର୍ଟ କାମ୍ୟୁଙ୍କର ମିଉର ସଲ୍‌ଟ (The outsider) କୁ ଆମେ ଭେଟିଲୁଣି ଓଡ଼ିଶା ମାଟିରେ। ଦେବ୍ରାଜ୍ ଲେଙ୍କାଙ୍କ ଉପନ୍ୟାସ 'ଖେଳ'ର ମଳୟ ଦାସ ଯେମିତି ନାଁ ବଦଳି ହୋଇଚି କାଳିଦାସ। ଖିଆଲୀ, ବେପରୁଆ, ଉଦ୍ଧତ ମଳୟ ଦାସ କେବେ ଅନୁଶୋଚନା କରିନି। ଅଟକି ଯାଇ ପଛକୁ ଫେରି ନଜର କରିନି, ନିଜ କୃତକର୍ମ ପାଇଁ କେବେ ଦୁଃଖ ପ୍ରକାଶ କରିନି। ନିଜସ୍ୱ ପାରଂପରିକ ବଂଶ ମର୍ଯ୍ୟାଦାକୁ କ୍ଷୁନ୍ନ କରିଚି। ଆପଣା ପରିଚୟ (Identity) ପ୍ରତି ବେଖାତିର ହୋଇଛି।

**କାଚପଥର, ମାୟା, ଶାଳଫୁଲର ବାସ୍ନା** ଗଳ୍ପ ଚାରୋଟି ଗୋଟିଏ ସମତଳରେ ଗତିଶୀଳ। ପ୍ରତ୍ୟେକର ଘଟଣା, ଚରିତ୍ର ଓ କଥାବସ୍ତୁ ଭିନ୍ନଭିନ୍ନ ହେଲେ ହେଁ ପ୍ରେମ ରୂପକ ପରିଧିରେ ସମସ୍ତଙ୍କୁ ଅତିକ୍ରମ କରିବାକୁ ପଡ଼ିଛି। ପ୍ରେମ, ଆସକ୍ତି ଓ ସ୍ନେହର ପରିପାର୍ଶ୍ୱ ଗଳ୍ପ ଗୁଡ଼ିକୁ ରସୋତୀର୍ଣ୍ଣ କରି ପାରିଛି। ମାୟାରେ ବଙ୍ଗାଳୀ ଭଦ୍ର ମହିଳା ଯେଉଁ ଜୀବନ ସଂଗୀତ ଗାନ ପାଇଁ ଉଦ୍‌ବିଗ୍ନ ଓ ବ୍ୟାକୁଳ, କାଚପଥରର ଲୀରା ସେଇ ବ୍ୟାକୁଳତାର ବଶବର୍ତ୍ତୀ ହୋଇ ସାରା ବିଶ୍ୱ ପରିକ୍ରମା ପରେ ଧାଇଁ ଆସିଛି ପୁରୀ ଶ୍ରୀକ୍ଷେତ୍ର, ନୋଳିଆ ବସ୍ତି। ପ୍ରେମରେ ହତାଶା, ବ୍ୟର୍ଥତା ଅପେକ୍ଷା ଆଶାର ଆଲୋକ ଜଳି ଉଠିଛି। ସାକ୍ଷାତପରେ ସେଇ ଆଶାର ଏକ ଝଲକ। ପ୍ରକୃତ ପ୍ରେମରେ ବିଚ୍ଛେଦ ନାହିଁ। ଅଛି ଅବିଶ୍ୱାସ, ସମର୍ପଣ, ଦୁଃଖ ସୁଖରେ ଅଂଶ ଗ୍ରହଣ। ଯେଉଁଠି ଭ୍ରାନ୍ତି; ସେଇଠି ବିଭ୍ରାନ୍ତି ଓ ଅବଶୋଷ ଅଶାନ୍ତି। ସାମାନ୍ୟ ଭୁଲ ପାଇଁ ଇତିହାସ କ୍ଷମା ଦେଇନାହିଁ ଇତିହାସର ଅଧ୍ୟାପିକା କଲ୍ୟାଣୀକୁ। ଶାଳଫୁଲର ବାସ୍ନା ଏତେ ଆଦିମ ଯେ - ତାର ଜୀବନଦାୟୀ ସୁଗନ୍ଧରେ ଆତ୍ମହରା ହୋଇଛି ଗଳ୍ପ ନାୟକ ମୁଁ। ଏଥିରେ ଅଛି ଦେହଜ କ୍ଷୁଧା ଅପେକ୍ଷା ପବିତ୍ର ସ୍ୱର୍ଗୀୟ ପ୍ରେମର ପରାକାଷ୍ଠା, ମହତ୍ୱ। ଅନୁଭୂତିସିଦ୍ଧ ଜୀବନ୍ତ ଭାବସତ୍ତାରେ ଗଳ୍ପର ପରିଧି ଯେତିକି ସାନ୍ଦ୍ର ଓ ବିଶ୍ୱାସଯୋଗ୍ୟ, ତାର ବ୍ୟାସାର୍ଦ୍ଧ ଓ କ୍ଷେତ୍ରଫଳ ସେତିକି ବାସ୍ତବ ଓ ଜୀବନ୍ତ। ଭାବପ୍ରବଣତା ଗଳ୍ପକୁ ଯୁବପ୍ରାଣ ସୁଲଭ ତାରୁଣ୍ୟର ଆତ୍ମ ପୀଡ଼ନ ମଧ୍ୟକୁ ଟାଣି ନେଇ ନାହିଁ କେବଳ, ତନ୍ମଧ୍ୟରେ ଥିବା

ଆତ୍ମୀୟ ସତ୍ତାର ଦର୍ଶନ କରାଇଛି । ସବାର୍ ଉପର୍ ମାନୁଷ ସତ୍ୟ, ମାନୁଷ୍ ଭିତର୍ ଭାଲୋବାସାସତ୍ୟ, ତା'ର୍ ପର୍ ନାଇଁ । ସତ୍ୟର ଉପଲବ୍ଧି କରାଇଛି । ଗଳ୍ପ ଚାରୋଟି ମଧ୍ୟରୁ ତିନୋଟିରେ ଅଛି ବସ୍ତୁର ଠୁଳତା । ଅନ୍ୟଟିରେ ଅଛି ବସ୍ତୁତାନ୍ତ୍ରିକ ସଭ୍ୟତା ପ୍ରତି ଅହେତୁକ ଆକର୍ଷଣ । ଆଦିବାସୀ ସହର ଦେଖିନାହିଁ । ସହରୀ ବାବୁ ଜଙ୍ଗଲ ଦେଖିନାହିଁ । ସଭ୍ୟତାର ମହାସ୍ରୋତରେ ସାମିଲ ହେବାଠାରୁ ଅଧିକ ସ୍ୱପ୍ନରେ ସନ୍ତୁଳି ହୋଇ ଉଠିଛି ଅଶିକ୍ଷିତା ଆଦିବାସୀ କନ୍ୟା ଚୁମ୍‌କି । ଭଦ୍ର ମହିଳାଙ୍କର ହାଓଡ଼ା ଷ୍ଟେସନ ଟ୍ରେନ୍ ପାଖରେ ଅପେକ୍ଷା, ଲୀରାର ପୁରୀ ସମୁଦ୍ର ବାଲିରେ ଅପେକ୍ଷା, ଆଦିବାସୀ ଝିଅଟିର ବସ୍ ପାଖରେ ଅପେକ୍ଷା, ଆଇ.ଏ.ଏସ ପ୍ରାପ୍ତ ଅଭିଜିତ୍ ନୁହେଁ । ମନ ପାଇଁ ନୁହେଁ । କୌଣସି ସଫଳତା ଆଶାରେ ନୁହେଁ । ପ୍ରାଣ ଲାଖି ପ୍ରାଣଟିଏ ଅନୁସନ୍ଧାନ । କଲ୍ୟାଣୀର ପବିତ୍ର ପାର୍ଥିବ ସଂପର୍କ ପାଇଁ ଅପେକ୍ଷା ଅତି ଚମତ୍କାର । ଗଳ୍ପ ଚାରୋଟି ଚିତାକର୍ଷକ ହୋଇଥିଲେ ହେଁ ଏଥିରେ ବାସ୍ତବତାର ପ୍ରଲେପ ଖୁବ୍ ଅଳ୍ପ । ମୋଟାମୋଟି ଭାବରେ କହିଲେ 'ପ୍ରେମ ରୂପକ ଭାବାବେଗର ଏ ଏକଏକ ମନସ୍ତାତ୍ତ୍ୱିକ ପ୍ରତିଫଳନ ନୁହେଁ କି ?

'ଭାଇ' ଏକ ଘଟଣା ପ୍ରଧାନ ଗଳ୍ପ । ୧୯୯୯ ମସିହାର ମହାବାତ୍ୟା ଭାଙ୍ଗି ଦେଇଚି ରହିମ୍ ଆଉ କରିମ୍, ମସିମ୍‌ନ ଆଉ ହସିନା ମଝିରେ ଥିବା ବାରବର୍ଷ ତଳର ପାଚେରୀ । ପ୍ରାକୃତିକ ବିପର୍ଯ୍ୟୟ କାହାର କ'ଣ ନେଇ ଯାଇଛି, ଉଜାଡ଼ି ଦେଇଚି ସିନା, ଭାଇକୁ ତା'ର ଭାଇ ଫେରାଇ ଦେଇଚି । ସମାନତାର ବାର୍ତ୍ତା ନେଇ ଆସିଥିବା ଏଇ ମହାବାତ୍ୟା ଜାତିଜାତି, ଧର୍ମଧର୍ମ, ଭାଷା ଓ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ଥିବା ବିଭେଦକୁ ଦୂର କରି ଦେଇଚି । ମାନବିକ ମୂଲ୍ୟବୋଧର ବାର୍ତ୍ତା ପ୍ରଚାର କରିଛି ।

**'ମେଘର ମୁଦ୍ରାରେ ବର୍ଷାର ସଂଗୀତ'** ଗଳ୍ପରେ ଫର୍ମ ଓ ଥିମ୍ ଉଭୟ ପ୍ରତି ସମାନ ଦୃଷ୍ଟିପାତ କରାଯାଇଛି । କାଳି ଝିଅ ମେଘମାଳାର ବାହାଘର ଯେତିକି ଉତ୍କଣ୍ଠା ପୂର୍ଣ୍ଣ, ଗୋରୀ ଝିଅ ଅଧ୍ୟାପିକା ମଧୁମିତାର ପୁନର୍ବିବାହ ଚିନ୍ତା ତା'ଠାରୁ ଆହୁରି ନାଟକୀୟ ଓ ଉତ୍କଣ୍ଠା ପୂର୍ଣ୍ଣ । ଚୌଧୁରୀ ପରିବାର ଆଶ୍ୱସ୍ତ ହେବାର ପାରିପାର୍ଶ୍ୱିକ ଚିତ୍ରଣ ସହିତ ମଧୁମିତା ଭଉଣୀ ଭିଶୋଇର ଚିନ୍ତାର ସ୍ତର କେତେ ଯେ ବଢ଼ି ଯାଇଥିବ ତା' ଦେଖାଇଛନ୍ତି ଗାଳ୍ପିକ । ସେଇ କଥା ଚମତ୍କାରିତା ଭିତରେ ବିବେକର ମଧୁମିତା ଆସକ୍ତି ଓ ଭାଉଜ ଭାବରେ ବରିନେବାର ଦୁଃଖ କାହାଣୀଟିକୁ ଅଧିକ କରୁଣ ଓ ରସସିକ୍ତ କରି ପକାଇଛି । ମୋଟ ଉପରେ ଗଳ୍ପଟି ଅତ୍ୟନ୍ତ ଉଚ୍ଚକୋଟୀର ।

ଗାଳ୍ପିକ ଡ଼ଃ ଖାଁଙ୍କର ବିଶେଷତ୍ୱ ହେଲା – ଗଳ୍ପରେ ଫର୍ମ ସଂପୂର୍ଣ୍ଣ ସୁରକ୍ଷିତ ଥାଉ କି ନଥାଉ ନାଟକୀୟତା ଓ କଥାବସ୍ତୁ ବା କାହାଣୀ ନିଶ୍ଚୟ ଥିବ । ଗଳ୍ପରେ ଲେଖକୀୟ ସତ୍ତା ପାଠକୀୟ ସତ୍ତା ଠାରୁ ବୃହତ୍ତର ହେବ । କାବ୍ୟିକ ନ୍ୟାୟ ତୁଳନାରେ ବାସ୍ତବ ଜୀବନ ଆଶା ଅଧିକ ଇଂଗିତାତ୍ମକ ହେବ ।

'ବିଷକନ୍ୟା' ଓ 'ନେତା' ସାଂପ୍ରତିକ ସମୟର ଏକଏକ ଦସ୍ତାବିଜ୍। ଆଧୁନିକ ସହରୀ ଜୀବନରେ ଦଳୀୟ ରାଜନୀତିର ପ୍ରତ୍ୟକ୍ଷ ପ୍ରଭାବ ତଥା ପ୍ରଶାସନିକ ବ୍ୟବସ୍ଥାରେ ରାଜନୈତିକ ହସ୍ତକ୍ଷେପର ଚରମ ପରିଣତିକୁ ସହ୍ୟ କରିପାରି ନାହିଁ ଗଳ୍ପ ନାୟିକା ଶ୍ରଦ୍ଧାସୁମନ ଓରଫ ସୁକନ୍ୟାଆନନ୍ଦ। ସାଂପ୍ରତିକ ସମାଜର ବିଷାକ୍ତ ପରିମଣ୍ଡଳରେ ଶ୍ରଦ୍ଧାକୁ ପିଇବାକୁ ପଡ଼ିଚି ଯେଉଁ ବିଷ, ସେ ତାକୁ ଢ଼ାଳି ଦେଇଚି ସେଇ ମାନଙ୍କ ଉପରେ ଯେଉଁମାନେ ଏ ସମାଜକୁ କବଳିତ, ପଦଦଳିତ, ମଥିତ ଓ ମୃତ୍ୟୁ ମୁଖରେ ପକାଇ ଚାଲିଛନ୍ତି। ସତ୍ୟ କହିବାକୁ ଯାଇ ଉଚ୍ଚପଦସ୍ଥ ଅଫିସର ତା ବାପାର ଟ୍ରକ୍ ଚାପାରେ ମୃତ୍ୟୁ ସେ ଦେଖିଚି। ମୃତ୍ୟୁର ପ୍ରକୃତ ରହସ୍ୟ ଖୋଜିବାକୁ ଯାଇ ବ୍ୟାଙ୍କ ଅଫିସର ମାଆର ଧର୍ଷଣ ଓ ମୃତ୍ୟୁକୁ ମଧ୍ୟ ଦେଖିଛି। ଏକ ମାତ୍ର ସହାୟ ଭାଇର ବମ୍ ବ୍ଲାଷ୍ଟରେ ଟୁକୁଡ଼ା ଟୁକୁଡ଼ା ହେଇଯିବାର ଘଟଣା ଗୁଡ଼ିକ ତାକୁ ବିଦ୍ରୋହିଣୀ କରିପକାଇଛି। ଏୟାର ହୋଷ୍ଟେସ୍ ସୁକନ୍ୟା ଆନନ୍ଦ ଅପରାଧକୁ ଅପରାଧରେ ହିଁ ଶାସ୍ତି ଦେବାକୁ ଦୃଢ଼ ନିଷ୍ପତ୍ତି ନେଇଛି। ଏକବିଂଶ ଶତକର ନାରୀ ହୃଦୟରେ ଏତାଦୃଶ ପ୍ରତିସ୍ପର୍ଦ୍ଧା ଦେଖାଯିବା ଅତ୍ୟନ୍ତ ଉତ୍ସାହ ପ୍ରଦ। ଗଳ୍ପର କାନ୍‌ଭାସ୍ ଯେତେ ବିସ୍ତୃତ ହେଲେ ବି ନାୟିକା ଶ୍ରଦ୍ଧା ସୁମନ ଓରଫ ସୁକନ୍ୟା ଆନନ୍ଦ ଡ଼ାକରା ଦେଇଛି ସାରା ପୁରୁଷ ଓ ନାରୀ ସମାଜକୁ ରାଷ୍ଟ୍ରୀୟ ସମସ୍ୟାର କାରଣ ଉତ୍ପାଟନ ପାଇଁ। ଆଇନ୍‌କୁ ହାତକୁ ନେଇ ଭାରତୀୟ ସାମ୍ବିଧାନିକ ମର୍ଯ୍ୟାଦାକୁ ହାନୀ କରିବାରେ ସେ ଅନୁତପ୍ତା । ହେଲେ ସେ ଅସହାୟା। ଏକ ବୃହତ୍ତର କଲ୍ୟାଣ ଆଗରେ ଏତାଦୃଶ ଅପରାଧକୁ ଆଉ କେତେ ଦିନ ମୋହର ଲଗାଇ ବାଛନ୍ଦ କରାଯାଇ ପାରିବ? ଅନ୍ୟାୟ ଅତ୍ୟାଚାର କରିବା ଠାରୁ ଅନ୍ୟାୟ ଓ ଅତ୍ୟାଚାରକୁ ମୁଣ୍ଡପାତି ସବୁ ଜାଣି ସହିଯିବା କ'ଣ ଜାତୀୟ ଅପରାଧ ନୁହେଁ??

ଯୌନ ବ୍ୟଭିଚାରୀ ମାନଙ୍କ ପାଇଁ ଅପରେସନ୍ ପଏଜନ୍, ଦୁର୍ନିତୀ ଖୋରଙ୍କ ପାଇଁ ଅପ୍‌ରେସନ୍ ଟ୍ରିଟ୍‌ମେଣ୍ଟ୍' କ'ଣ ସାମାଜିକ ପରିବର୍ତ୍ତନର ବାର୍ତ୍ତା ନେଇ ଠିଆ ହେବ ନାହିଁ? ସେହିପରି 'ନେତା' ମାନଙ୍କର କ୍ଷମତା ଲୋଭ ଓ କ୍ଷମତା ଦଖଲ ପାଇଁ ଲଢ଼େଇକୁ ଗାଳ୍ପିକ ବ୍ୟାଙ୍ଗାତ୍ମକ ଶୈଳୀରେ ଉପସ୍ଥାପନ କରିଅଛନ୍ତି। ଏଥିରେ ମାନବିକତାର ପ୍ରଶ୍ନ ଉଠିଛି। ଜୀବ ଜଗତ ତଥା ମାନବ କଲ୍ୟାଣର ସ୍ୱର ଶୁଣା ଯାଇଛି। ପରିଣତିରେ ଜଙ୍ଗଲ ମାଫିଆ ମାନଙ୍କର ଜଙ୍ଗଲ ରାଜ୍ ପଛରେ ନେତାମାନଙ୍କର କି ଯେ ଭୂମିକା ରହିଛି; ତାହାକୁ ବ୍ୟଙ୍ଗ କରା ଯାଇଥିଲା ବେଳେ ମାଫିଆ ମାନଙ୍କର ମୃତ୍ୟୁ ପାଇଁ ସାଧାରଣ ଜନତାଙ୍କର ସକ୍ରିୟ ସହଯୋଗ ପ୍ରାର୍ଥନା କରାଯାଇଛି।

ଯୁଗେ ଯୁଗେ ପିତା ପୁତ୍ରକୁ ନେଇ ନାନା କାହାଣୀ ଓ ଇତିହାସ ମୁଣ୍ଡ ଟେକିଛି। ପିତାନୁଗତ ପୁତ୍ର ବୋଲି ଆଦର୍ଶଟିଏ ମହଲଣ ପଡ଼ିଯାଇଚି ଆମ ମନ ଭିତରେ। କିନ୍ତୁ ପ୍ରତ୍ୟେକ ପୁତ୍ର ଯେ ପିତାର କଂକାଳ ଏକଥା ଭୁଲି ଯାଉଚି ସଂସାର। ବିଜ୍ଞାନ ଓ ବୈଷୟିକ ଜ୍ଞାନ କୌଶଳ ଯୁଗରେ ଅର୍ଥକରୀ ପୁତ୍ରର ଚାହିଦା ଖୁବ୍ ବେଶୀ ଆର୍ଥିକ ସମ୍ବଳ ଠୁଳ ଡ଼ଲାର ଉତ୍ପାଦନର ଏକମାତ୍ର ଲକ୍ଷ୍ୟ ନେଇ, ସାଂପ୍ରତିକ ପିତାମାନେ

ଚେଷ୍ଟାରତ । ତତ୍ପର । ବ୍ୟସ୍ତ ଓ ବିନିଦ୍ର। ଯାହା ଦେଖା ଦେଇଚି ବେସରକାରୀ ଅଧ୍ୟାପକ ଜୀବନ ସରକାର ଓ ତା' ପୁଅ ସୌରଭ ସରକାର କ୍ଷେତ୍ରରେ। ଅନ୍ୟ ତିନି ଭାଇଙ୍କ ପରି ସୌରଭ ହେଇ ପାରିନାହିଁ। ଏଭଳି ଏକ ବିଫଳତାକୁ ଗ୍ରହଣ କରିପାରୁନାହିଁ ଜୀବନ। ସୌରଭ ପ୍ରତି ଥିବା ପୁଂଜିଭୂତ ଅସନ୍ତୋଷ ତାକୁ ଇତସ୍ତତ ଓ ଅସହାୟ କରିପକାଇଚି। ଜୀବନ ସଂପ୍ରତିକ ସମାଜର ପିତା ମାନଙ୍କର ଏକ ପ୍ରତିନିଧି। ମାତ୍ର ସୌରଭ ପ୍ରତିନିଧି ନୁହେଁ ଏକ ପରିବର୍ତ୍ତନ। ତା ବଡ଼ଭାଇ ଗୌରବ ପ୍ରତିନିଧି। ମଧ୍ୟବିତ୍ତ ପରିବାରର ନିଛକ ଜୀବନ ଚିତ୍ର ବହନ କରେ ପୁଅ।

ମେଘର ମୁଦ୍ରାରେ ବର୍ଷାର ସଂଗୀତ ଦୁଇଟି ସମାନ୍ତରାଳ ଭାବାଭିବ୍ୟକ୍ତି। ବାହା ହେଇ ପାରୁନଥିବା କାଳୀଝିଅ ପାଇଁ ଚୌଧୁରୀ ବାବୁଙ୍କ ପରିବାରର ସର୍ବ ପ୍ରଥମ କାର୍ଯ୍ୟସୂଚୀ କଅଣ ? ବରଖୋଜା। ଶଙ୍ଖାସିନ୍ଦୁର ସାହାନାଇର ସ୍ୱର ଗୋଟେ ପଟେ ଶାନ୍ତି ଓ ଆତ୍ମ ପ୍ରସାଦର ବାତାବରଣ ତିଆରି କରିଥିଲା ବେଳେ ଆଉ ଗୋଟେ ପଟେ ସୃଷ୍ଟି କରିଚି ମାନସିକ ଝଡ଼। ଯେଉଁ ନିଷ୍ପତ୍ତିରେ ଅଟଳ ରହି ମଧୁମିତା ଏତେ ପଥ ଅତିକ୍ରମି ଆସିଛି। ବିବେକର ଅନୁରୋଧକୁ ଉପେକ୍ଷା କରିଚି। ସେ କ'ଣ ଆଉଥରେ ବଦଳେଇ ପାରିବ ସେଇ ନିଷ୍ପତ୍ତି। ପୁନଃର୍ବିଚାର କରି ପାରିବ ? କଲେବି ସୁଯୋଗ ନାହିଁ । ବୟସ ନାହିଁ । ଅବସ୍ଥା ନାହିଁ। ଅଭିଆଡ଼ୀ ଅଧ୍ୟାପିକା ଜୀବନର ଏ କ'ଣ ଏକ ମାର୍ମିକ ଅନ୍ତର୍ଦାହ ନୁହେଁ? ବାସ୍ତବତାର ଭିତ୍ତିଭୂମିରୁ ଗୋଟାଇ ଆଣିଥିବା କାହାଣୀ ଦୁଇଟି ଗଳ୍ପକୁ ଅଧିକ ରସୋତୀର୍ଣ୍ଣ କରିପାରିଛି।

'ଅନ୍ଧାରର ମୁହଁ' ଚର୍ଚ୍ଚିତ ଗଳ୍ପ ମାନଙ୍କର ମୂଳନିର୍ଯ୍ୟାସ। ଯେଉଁ ମୁହଁକୁ ଦେଖି ପାରିନାହିଁ ଜଗତ ତାକୁ ଦେଖିଛନ୍ତି ଗାଳ୍ପିକ ଡ଼ଃ ଖାନ୍। ଏହା ପାଠକୀୟ ଆଦର ଲାଭ କରିବ ବୋଲି ମୋର ଦୃଢ଼ ବିଶ୍ୱାସ। ଅନ୍ଧାରର ମୁହଁ ଆଲୋକିତ କରିଚି ଅଗଣିତ ସାଧାରଣ ମଣିଷ ମାନଙ୍କୁ ସଂପ୍ରତିକ ସମାଜର।

ବିଜୟାନନ୍ଦ ସିଂ

# ସୂଚୀପତ୍ର

# କୃତଜ୍ଞତା

ସର୍ବ ପ୍ରଥମେ ପରମେଶ୍ୱରଙ୍କୁ କୋଟିକୋଟି ପ୍ରଣାମ

ତା' ପରେ ସେଇମାନଙ୍କୁ, ଯେଉଁମାନେ ମୋ ସଂକଳନକୁ ଆଦରରେ ଟେକିନେଇ ବିଦଗ୍ଧ ପାଠକ, ସମାଲୋଚକ ସମୀକ୍ଷକ ଓ ସଂଗ୍ରାହକ ସାଜିବେ ।

ତତ୍ପରେ ସେଇମାନଙ୍କୁ, ଯେଉଁମାନେ ମୋର ସହୃଦ୍, ଶୁଭେଚ୍ଛୁ ଓ ବରେଣ୍ୟ ପ୍ରେରଣା ଦାତା, ଅନୁଜ ପ୍ରତୀମ ସୁଧାଂଶୁ, ସୁପୁବାବୁ, ବଂଧୁ ଲଳିତ ଓ ମୋର କନ୍ୟା ସିଲି ଯାହାଙ୍କ ଏକାନ୍ତ, ଅକ୍ଲାନ୍ତ ଚେଷ୍ଟା ଓ ପରିଶ୍ରମ ବଳରେ ସଂକଳନ ବାହାର ଦୁନିଆର ଆଲୋକ ଦେଖିଲା । ପୃଷ୍ଠା ମଣ୍ଡନ କରିଥିବା ପତ୍ର-ପତ୍ରିକା ସଂପାଦକମାନଙ୍କୁ ବି ।

ଶେଷରେ ସେଇମାନଙ୍କୁ, ଯେଉଁମାନେ ମୋ ସଂକଳନ ନାଁ ଶୁଣୁଶୁଣୁ, ଦେଖୁ ଦେଖୁ ବିଷେଇ ଯିବେ, ଘୃଣାକରି ନିନ୍ଦାରେ ଶତମୁଖ ହେବେ ଓ ଲୁଚାଇ ନେଇ ପଢ଼ି ପଢ଼ି ଦୁର୍ଗୁଣ କାଢ଼ିବେ, ନିନ୍ଦୁକ ସାଜିବେ ।

ଓ

ଯହାଙ୍କ ଯୋଗୁଁ ମୁଁ ଗାଳ୍ପିକ ହେବାର ସୌଭାଗ୍ୟ ପାଇଲି, ନିରବଚ୍ଛିନ୍ନ ଉଦ୍ୟମ କଲି, ପ୍ରତିବଦ୍ଧତାର ପଣ ନେଲି ।

"କାଳ ନେବ ସବୁ ପୋଛି
କାଳ ହିଁ ଦେବ ସବୁ ଯାଚି"

କୃତଜ୍ଞତା ଜ୍ଞାପନ ମୁଦ୍ରାରେ ମୁଁ, ଅନାଗତ ସକାଳକୁ
ଓସିଦ୍

## ମହାପୁରୁଷ

ସହରର ମୁଖ୍ୟ ଛକ ଜାଗାରେ ଠିକ୍ କେନ୍ଦ୍ରକୁ କରି ସ୍ଥାପନ କରାଗଲା ତାଙ୍କର ପ୍ରତିମୂର୍ତ୍ତି । ମୁଖ୍ୟମନ୍ତ୍ରୀ ଆସି ଅନାବରଣ କଲେ ମୁଖ । ପ୍ରାୟ ତିରିଶ କେ.ଜିର ଏକ ଦଶଫୁଟିଆ ମାଳା ଝୁଲିଲା ତାଙ୍କ ବେକରେ । ଝୁଲାଇବା ପାଇଁ ଲାଗିଲେ ପାଞ୍ଚ ଛଅଜଣ । ଟେକିଦେଲେ ବେକପାଖକୁ, ହାତ ଲଗାଇ ଥାନ୍ତି ମୁଖ୍ୟମନ୍ତ୍ରୀ । ଫୁଲ ଆସିଥିଲା କଲିକତାରୁ । ସକାଳ ଟ୍ରେନ୍‌ରେ ।

ପ୍ରତିମୂର୍ତ୍ତି ସ୍ଥାପନ ଓ ଅନାବରଣ ଉତ୍ସବ ଚାଲିଲା ସଂଧ୍ୟା ସାତ ଯାଏ । ଜନସମାଗମ କମିଗଲା । ଠିଆହୋଇଥିଲା ସଭାପରେ କେବଳ କେଇଟା ଗାଡ଼ି । ଯା'ଆସ କରିବା ଚଉଛକିରେ । ଠିଆ ହୋଇଥିଲା ତାଙ୍କର ବିଶାଳ ପ୍ରତିମୂର୍ତ୍ତି ଏକ ପ୍ରହରୀ ପରି । ଅନ୍ଧାର ମାଡ଼ିଆସିଲା । ଗାଡ଼ିମଟର ବନ୍ଦ ହେଲା । ରାସ୍ତାପଡ଼ିଗଲା ।

ମୂର୍ତ୍ତି ଭିତରୁ ବାହାରିଲେ ଖପାଖପ୍ ହୋଇ ପାଞ୍ଚଜଣ ।

ଜୀବନ୍ତ ଚେହେରା ଯେମିତି । ଠିକ୍ ତାଙ୍କରି ପରି । ବିଶାଳ ଛାତି ଉପରକୁ ପ୍ରଶସ୍ତ ସ୍କନ୍ଧ । ତା ଉପରେ ସଂକ୍ଷିପ୍ତ ଅଥଚ ରେଖତିରିକ୍ତ ଗ୍ରୀବା । ମୁଖମଣ୍ଡଳର ଔଜଲ୍ୟକୁ ଦାମ୍ଭିକତାରେ ରୂପାନ୍ତରିତ କରିଦେବାରେ ହଲେ ପଟାଦାର ନିଶର ଭୂମିକା ଖୁବ୍‌ବେଶୀ । ମୋଟାମୋଟି ସାଢ଼େ ଛଅଫୁଟ ସୁଦୀର୍ଘ ଛାଇକୁ ଦେଖିଲେ ଯେ କୌଣସି ଛାତିଦମ୍ଭ ଲୋକର ନରମି ଯିବାର ଅନେକ କାରଣ ରହିଛି ।

ଜଣଜଣ ହୋଇ ପାଞ୍ଚଜଣ । କେହି କାହାକୁ କମ୍ ନୁହନ୍ତି । ସବୁ ଚେହେରା ଏକା । ସାମନ୍ୟ ଟିକେ ବି ଫରକ ନାହିଁ କାହାରି ପାଖରେ । ସମାଞ୍ଜସ୍ୟ ଖୋଜିଲେ ଶତକଡ଼ା ଶହେଭାଗ ମିଳିଯାଉଛି ପରସ୍ପର ।

ସଭିଏଁ ଚାଲିଗଲାପରେ ଯିଏ ଯୁଆଡ଼େ । ସାମ୍ବାଦିକ ବସିଥାଏ ଗୋଟିଏ ନିରୋଳା ନିର୍ଜନ ଜାଗାରେ, ଛକ ଗୋଲେଇର । ଭାବୁଥାଏ । କଅଣ ଲେଖିବି ଏ

ମହାନହସ୍ତୀଙ୍କ ବିଷୟରେ ? ଏ ସମୟରେ ପ୍ରତିମୂର୍ତ୍ତିର ପ୍ରଥମ ନମ୍ବର ଛାଇ ଚାଲିବା ଆରମ୍ଭିଲା ।

ସାମ୍ବାଦିକ ଲଣ୍ଡଭଣ୍ଡ ହୋଇ ସାମ୍ନାରେ ଠିଆହେଲା ଓ ସାଷ୍ଟାଙ୍ଗ ପ୍ରଣିପାତ କଲା । ଛାଇ ଚାଲିବା ଆରମ୍ଭିଲା ଆଗକୁ ।

ତହୁଁ ସାମ୍ବାଦିକ ପ୍ରଶ୍ନ କଲା-' ହଜୁର ! ଆପଣ କିଏ ? ମୁଁ? ମୁଁ ତାଙ୍କର ପ୍ରକୃତ ପରିଚୟ । ଶ୍ରୀ ଶ୍ରୀ କଳିଙ୍ଗବୀର ହର୍ଷବର୍ଦ୍ଧନ ସିଂହସାମନ୍ତ, ମୁଖ୍ୟମନ୍ତ୍ରୀ (ପୂର୍ବତନ) ।

ସେତ ଦିବଙ୍ଗତ ? ଆପଣ ପୁଣି କିଏ ?

ଦିବଙ୍ଗତ ତାଙ୍କର ମାଟିପିଣ୍ଡ । ଭୌତିକ ଶରୀର । ମୁଁ ତାଙ୍କର ପ୍ରକୃତ ଅତ୍ମିକପରିଚୟ । 'ଆପଣଙ୍କର ଆବିର୍ଭାବର ହେତୁ ? ସାମ୍ବାଦିକ ପଚାରିଲା ।

ହେତୁ ଅତି ସ୍ୱଷ୍ଟ ଓ ପ୍ରାଂଜଳ । ମୁଁ ପଦାକୁ ଆସି ଶିକ୍ଷା ନ ଦେଲେ, ଏ ଟୋକାଗୁଡ଼ା ଶିଖିବେ କଅଣ ? ଦେଶ ଚଳେଇବେ କେମିତି ? ପ୍ରତି ମୂର୍ତ୍ତି କହିଲା ।

'ସେମାନେ ତ ଆପଣଙ୍କ ନୀତି ଆଦର୍ଶମାନି ଚଳୁଛନ୍ତି । ଆପଣଙ୍କ କଥାର ସାମାନ୍ୟ ଟିକେ ବି ପରିବର୍ତ୍ତନ କରୁନାହାନ୍ତି ?'

ବୋକା ! ବୋକା ! ! ସେଥିପାଇଁ ତ ମୋତେ ଦେହ ଭିତରୁ ବାହାରି ଆସିବାକୁ ହେଲା । ମୁଁ ଯାହା କହିଥିଲି ସବୁ କଣ ସତ ? ମୁଁ ଯାହା କହୁଥିଲି ତାକୁ କ'ଣ ଅକ୍ଷରେ ଅକ୍ଷରେ ପାଳନ କରୁଥିଲି । ଶତକଡ଼ା ଏକଭାଗ ବି ନୁହେଁ । ଯିଏ ରାଜନୀତି କରିବ, ଯାହା କହିବ ତା କରିବ ନାହିଁ । ଯାହା କରିବ ତା' କହିବ ନାହିଁ । ଆଜିକାଲି ଲୋକଚରିତ୍ର ଏତେ ବିଚକ୍ଷଣ ଯେ ତାକୁ ନିଜ ଅକ୍ତିଆରରେ ରଖିବା ମୁସ୍କିଲ୍ । କହିଥିବା କଥାର ଗୋଟାଏ ପରସେଣ୍ଟ୍ କାମ ଆରମ୍ଭ କଲେ, ତମେ ମଲ ଆଉ ସମ୍ଭାଳି ପାରିବ ନାହିଁ । ଗୋଟାଏ ଲମ୍ବାଧାଡ଼ି ଆସି ଲାଗିବ ତମ ଦୁଆରେ । ଦିନେ ଓଳିଏ ନୁହେଁ, ପ୍ରତିଦିନ । ଆସି ବସିବେ ତମ ମୁଣ୍ଡରେ । ଆଉ କହିବେ – ଆମର ଏସା କରିଦିଅ-ତେସା କରିଦିଅ, ଆମେ ତମକୁ ଭୋଟ୍ ଦେଇଚୁ । ଭୋଟବେଳେ ପାଖପଶି ଆସିଥିବା ଲୋକଗୁଡ଼ା ଭାବନ୍ତି, ନେତା ବା ମନ୍ତ୍ରୀ ଗୋଟାପଣେ ଆମ ଅକ୍ତିଆରରେ । ଆମ ଅଧୀନ । ଆମେ ଯାହା ଚାହିଁବୁ ତାହା କରିବୁ । ନହେଲେ ଆସୁ ଆର ଥରକୁ । ଏଣେ ସରକାରଙ୍କ ସମ୍ବଳ ନଥିବ । କୋଉଠି କାମହେବ । କୋଉଠି ହେବ ନାହିଁ । ଖୁବ୍ ଗୋଟେ ସମସ୍ୟାକୁ ସାମ୍ନାରେ ଠିଆ ନ କରି ସବୁତକ ଟଙ୍କା

ବାଣ୍ଟିନବ ପଛେ କିଛି କରିବ ନାହିଁ । ତମେ ଇଂଜିନିୟର୍ କଣ୍ଟ୍ରାକ୍ଟର ସାଙ୍ଗେ ସଲାସୁତୁରା ହୋଇଗଲେ ସରିଲା, ଆଉ କିଏ ଅଛି ଯେ ଜାଣିବ ?

ଆଜ୍ଞା ! ଏବେପରା ସବୁ କଥାରେ ଭିଲେଜ୍ କମିଟିର ମଂଜୁରୀ ଦରକାର । ଭିଲେଜ୍ କମିଟି ନଜାଣି କଣ କେମିତି ବାଏଁ ବାଏଁ ଟଙ୍କା ଉଡ଼େଇ ଦେବ ? ପଚାରିଲା ସାମ୍ବାଦିକ ।

ଧେତ୍ ! ବୋକା କାହିଁକା । ତା' ଭିତରୁ ଜଣକୁ କାହାକୁ ଟଙ୍କା ହଜାରେ ଫୋପାଡ଼ିଦେଲେ ସିଏ ସବୁତକ ଦସ୍ତଖତ କରାଇ ଆଣି ଥୋଇଦେବ । ନହେଲେ ମିଛ ଦସ୍ତଖତ କରାଇ ନେଲେ କିଏ ଦେଖୁଚି ଏଇ ଲୋକର ଏଇ ଦସ୍ତଖତ୍ ବୋଲି ! କେତେ ଖୋଜିବେ । ଖୋଲତାଳ ହେଲାବେଳକୁ ଫାଇଲ୍ ଆସିବ ମୋ ପାଖକୁ ସେ ରହିଲା । ଆଉ ହବ କଅଣ ? ବୁଝାଇଦେଲା ଛାଇ ନମ୍ବର ଓ୍ୱାନ୍ ।

ଏସବୁ ହେଲା ଯେ ଆଚ୍ଛା ! ମହାଶୟ ! ଆପଣ ଆଜ୍ଞାଙ୍କର କେଉଁ କାମଟା ସମ୍ଭାଳିଥିଲେ ?

ମୁଁ ଥିଲି ତାଙ୍କର ପ୍ରତିଶ୍ରୁତି ଓ ପ୍ରତିଜ୍ଞା । ଯେତକ ମିଥ୍ୟା ପ୍ରତିଜ୍ଞା ଓ ପ୍ରତିଶ୍ରୁତି ତା' ବିଷୟରେ ବୁଝାଇ ଦେଉଥିଲି ମୁଁ । ଜନତାଙ୍କ ଦରବାରକୁ ଯିବାକୁ ହେଲେ 'ନା' ବୋଲି ଉତ୍ତର ତମ ସନ୍ନିଧାନରେ ରଖିବ ନାହିଁ । ପ୍ରତିଶ୍ରୁତି ମୂଳକ ଶବ୍ଦ ସବୁ ହେଲା- 'ଆମେ ଦେଖିବା ! ଚେଷ୍ଟା କରିବା । ଅତିଜରୁରୀ ବୋଧହେଲେ ଅବଶ୍ୟ କରିବା ! ଏଭଳି କାମ ହବା ଉଚିତ ! ନ ହବାର କୌଣସି କାରଣ ନାହିଁ ! ଶତକଡ଼ା ଶହେଭାଗ ଏହାର ଆବଶ୍ୟକତା ରହିଛି । ଏ ଦିଗରେ ଅର୍ଥବ୍ୟବସ୍ଥା କରିବାକୁ ପଡ଼ିବ ।'

କ୍ରମେ କ୍ରମେ କଥାଟାକୁ ମୋଡ଼ିଦେବ ତମ ବିରୋଧୀ ସରକାର ଆଡ଼େ । ଜନତାଙ୍କ ଭାବନା ବାଙ୍କିଯିବ ସିଆଡ଼ିକି । 'ଏଥିପାଇଁ ଆବଶ୍ୟକ ହେଲେ ଆମେ ଜନତାଙ୍କ ସହ ଓହ୍ଲାଇ ଯିବୁ ରାଜରାସ୍ତାକୁ । ଉପର ସରକାରର ଆମପ୍ରତି ଏଭଳି ବୈମାତୃକ ଭାବକୁ ଆମେ କଦାପି ବରଦାସ୍ତ କରି ପାରିବୁ ନାହିଁ ।'

ତାଳି ! ତାଳି । ତାଳି ମାଡ଼ରେ ତମପାଇଁ ସଭାସ୍ଥଳ କମ୍ପିବ । ଏଥର ଜନତାଙ୍କ ଦୃଷ୍ଟି ତମ ଉପରକୁ ନ ଯାଇ ଆଉ ଜଣକ ଉପରେ ଠୁଳ ହେଲା ବେଳେ ତମେ ତମ ଲକ୍ଷ୍ୟସ୍ଥଳରେ ପହଞ୍ଚି ସାରିଥିବ ।

ଆଜ୍ଞା ! ଏବେ ପରା ଜନନେତାମାନେ ସର୍ବସାଧାରଣଙ୍କ ପାଖରେ ଖର୍ଚ୍ଚବାର୍ଚ୍ଚ ହିସାବ ଦେବାକୁ ବାଧ୍ୟ ରହିବେ । ଜନକଲ୍ୟାଣ ପାଇଁ କେତେ ଅର୍ଥ ବରାଦ ହୋଇଥିଲା

ଓ ସେଥିରୁ କେତେ ଭାଗ କାମ ହୋଇଛି କି କି କାମ ଆଉ ବଳକା କେତେ ରହିଲା ଓ କାହିଁକି ? ତାର ଟିକିନିଖି ହିସାବ ।

ଆରେ ବୋକା ! ବୋକା ! !

ସେତେବେଳେକୁ ଆଉ ଏ ସ୍ୱର ଥିବ ନା ବଦଳାଇଦେବ । ଇଂଜିନିୟର, ଅଫିସରଙ୍କୁ ଶିଖାଶିଖି କରି ଦେଇଥିବ । ଜନତାଙ୍କ ମୁହଁବନ୍ଦ ପାଇଁ ଆଙ୍ଗୁଠି ଉଠେଇବ ଅଫିସର - ଇଂଜିନିୟର, ଆଡ଼େ । ଯେତେବେଳେ ଏକଥା ପ୍ରମାଣିତ ହୋଇଯିବ । ଆଦେଶ ଦେଇ ଦେବ ସଂପୃକ୍ତ ଅଫିସରକୁ ସସ୍‌ପେଣ୍ଡ୍ କରିବା ପାଇଁ ।

ସାମ୍ବାଦିକ ଉତ୍ତର ଦେଲା ଷଣ୍ଢ ଖାଇଲା ଧାନ ତନ୍ତୀଘର କୋରଡ଼ ? ଏ ତ ବଡ଼ ଅନ୍ୟାୟ ମହାଶୟ ? ଦୀର୍ଘ ପ୍ରଶ୍ନବାଚୀ ।

ଧେତ୍ ! ଅନ୍ୟାୟ କ'ଣ ? ଅଫିସରକୁ କହିଦେବ ଲମ୍ବାଛୁଟି ନେଇ ବିଦେଶ ଚାଲିଯିବ । ନହେଲେ ଛୁଟିରେ ରହି ଘରତୋଳିବ । ଝିଅ ପୁଅ ବାହା କରିବ । ବହି ଲେଖିବ କି ସମାଜ ସେବା କରିବ ।

କିଛି ବୁଝି ପାରୁନି ଆଜ୍ଞା ! ବୁଝିବ କଅଣ ? ବୁଝିବ ଚୋପା । ସବୁତ ସିଧାସାଧା କଥା । କିଓ ଜନତାଙ୍କ ଆଖି କ'ଣ ଆଉ ସେଠି ଥିବ ନା ନେତାମାନେ ତାକୁ ମନେ ରଖି ବସିଥିବେ । ଗଲା ଆଇଲା ବେଳେ ଦୁର୍ନୀତିଖୋର ଅଫିସରର ସସ୍‌ପେଣ୍ଡ୍ ଅର୍ଡ଼ର ଉଠାଇ ରି-ଆପଏଣ୍ଟମେଣ୍ଟ କରିଦବ ଓ ତା'ର ଯେତକ ବାକିଆ ଦରମା ଥିବ, ଦେଇଦେବ । ଚାକିରୀ କାଳ ନିୟମିତ କରରାଇ ଦେବ । ଆଉ କିଏ ଅଛି ଯେ-ଜାଣିବ କ'ଣ ହଉଛି ? ହଉ ତେମେ ଥାଅ । ମୁଁ ଆସୁଚି ।

ବାହାରିଲା ଦ୍ୱିତୀୟ ଛାଇ । ଚାଲିବା ଆରମ୍ଭିଲା ବେଳକୁ ସାମ୍ବାଦିକ ପ୍ରଶ୍ନକଲା- କିଏ ଆପଣ ? ଏ ମହାତ୍ମାଙ୍କ ସହିତ ଆପଣଙ୍କର ସଂପର୍କ କଅଣ ? କୁଆଡ଼େ ବାହାରିଛନ୍ତି ?

'ଦ୍ୱିତୀୟ ଛାଇ ଥ ଥ ମ ମ ହୋଇଗଲା । ଟିକେ ରହି ଚଟାପଟ୍ ଚିନ୍ତା କରିଦେଇ ପ୍ରଶ୍ନକଲା ଭଂଗୀରେ ଉତ୍ତର ଦେଲା-' ମୋତେ ଚିହ୍ନିନ ? ମୁଁ ସ୍ୱର୍ଗୀୟ ସିଂହସାମନ୍ତଙ୍କର ସାକ୍ଷାତ୍ ପ୍ରତିମୂର୍ତ୍ତି ।

ପ୍ରତିମୂର୍ତ୍ତି ? ମାନେ ? ସିଏ ତ ଏଇ ଟିକେ ପୂର୍ବରୁ ଗଲେ ? ଆପଣ ପୁଣି କିଏ ?

ଯିଏଗଲେ ସେ ମୋର ଅବିକଳ ନକଲ ହେଲେବି ଆମର କାମଦାମ ସବୁ ଅଲଗା ।

ଆପଣଙ୍କର କି କାମ ମହାଶୟ ?

ମୋର କାମ ଅତ୍ୟନ୍ତ ସମ୍ବେଦନଶୀଳ। ଗୁରୁତ୍ୱପୂର୍ଣ୍ଣ ଓ ବ୍ୟକ୍ତିଗତ।

ଟିକେ ଆମକୁ ଶୁଣାଇବା ହୁଅନ୍ତୁ । କି କି କାମସେ ।

ମୁଁ ମହାତ୍ମାଙ୍କର ନିଜସ୍ୱ ଖଜଣାଖାନାର ଜଗୁଆଳ ଓ ଖଜଣା କଲେକ୍‌ଟର । କାହାକୁ କେତେ ଦିଆହେବ, କେଉଁଠୁ କେତେ ଆସିବ ସେସବୁ ଦାୟିତ୍ୱ ମୋର । ଏତେସବୁ କଡ଼ା କଡ଼ି ଆଇନ୍ ଭିତରେ ଆପଣ ମାଲପଟା ଆଣନ୍ତି କୋଉଠୁ ?

ତମେ ଭାବିଛ ? ମୁଁ ଏ ଟ୍ରିକ୍‌ଟାକୁ ତମକୁ ସହଜରେ ବତେଇ ଦେବି ? ଜମାନୁହେଁ। ଆଦୌ ନୁହେଁ । ଏ କାମଟା ଏକବାର ବ୍ୟକ୍ତିଗତ ଓ ଟପ୍‌ସିକ୍ରେଟ୍ ।

ସାମ୍ବାଦିକ ଲଣ୍ଡଭଣ୍ଡ ହୋଇ ଜାଣିବାକୁ ଚେଷ୍ଟା କଲା । କ'ଣ ଆଜ୍ଞା । ସେ ଦିଗରେ ଉତ୍ତରପୀଢ଼ିକୁ ଟିକେ କିଛି ଶିଖାଇ ନ ଦେଲେ ଏ ଦଳ ରହିବ କେମିତି ? ଆଗକୁ ଥିବା ନିର୍ବାଚନବୈତରଣୀ ପାରହେବେ କେମିତି ? ସବୁକଥା ପ୍ରଘଟ ନ କଲେ ନାହିଁ । ଗୋଟେ ଯୋଡ଼େ ସୂତ୍ର ବତେଇ ଦଉନାହାନ୍ତି ?

ନା' ଏହା ପୂରାପୁରି ବ୍ୟକ୍ତିଗତ ମାମଲା । ନିଜ ବୁଦ୍ଧି ବଳ ଉପରେ ସେ କଥା ନିର୍ଭର କରେ । ବଡ଼ ବଡ଼ କଥାର ଗୁମର କ'ଣ କୁହାଯାଏ ? ବୁଝି ହୋଇଯାଏନା ? 'ଅକଲମନ୍ଦ କୋ ଇସାରା କାଫି' ?

ସାମ୍ବାଦିକ ତହୁଁ ଉତ୍ତର ଦେବା ଛଳରେ ପ୍ରଶ୍ନକଲେ - ତା ହେଲେ ଆପଣ କମିଶନି ନିଅନ୍ତି ?

ଛାୟାମୂର୍ତ୍ତି ନୀରବ ।

ଆପଣ ବଡ଼ବଡ଼ ଟେଣ୍ଡର କରାଇ ପରସେଣ୍ଟ ପାଆନ୍ତି ?

ଛାୟାମୂର୍ତ୍ତି ତଥାପି ନୀରବ ।

ସରକାରଙ୍କ ଗୋଟେ କଂପାନୀ ପ୍ରତିଷ୍ଠା ହେଲାବେଳେ ଆପଣ ନିଜ ସ୍ତ୍ରୀ, ପୁଅ, ଝିଅ, ଜୋଇଁ ଭାଇ ବନ୍ଧୁକୁଟୁମ୍ବ କାହାରି ନା କାହାରି ନାଁରେ କଂପାନୀ ବସାଇ ନିଅନ୍ତି ?

ତଥାପି ନୀରବ ?

ସରକାରଙ୍କୁ ବଡ଼ ବଡ଼ ସପ୍ଲାଇ ,ଏଇ ଯେମିତି ଭୋଟ ପରିଚୟପତ୍ର, ନିର୍ବାଚନ ପୋଷ୍ଟର, ରେଳ ଗାଡ଼ି ଉଡ଼ାଜାହାଜର ସରଞ୍ଜାମ, ଜାତୀୟ ଆନ୍ତର୍ଜାତୀୟ କୁମ୍ପ୍ୟୁଟର ବ୍ୟବସାୟର ସଫ୍‌ଟୱେୟାର୍ ବ୍ୟବସାୟର ଲାଇସେନ୍‌ସ, ମଦ ତିଆରି, ହୋଟେଲ୍ ତିଆରି ଇତ୍ୟାଦିର ଅର୍ଡ଼ର କରାଇ ନିଅନ୍ତି । ନିଜ ଆତ୍ମୀୟ ସ୍ୱଜନଙ୍କ ନାଆଁରେ ନିଶ୍ଚୟ । ତଥାପି ବି ଛାୟା ମୂର୍ତ୍ତି ନୀରବ ।

ନହେଲେ ଆଉ କେଉଁଠୁ ଆଣନ୍ତି ଆପଣ ଖଜଣା ?

ତାହେଲେ କ'ଣ କୌଣସି ପ୍ରାକୃତିକ ବିପର୍ଯ୍ୟୟକୁ ଆପଣ ଚାହିଁ ବସିଥାନ୍ତି ? ତାକୁ ପୂଜାଅର୍ଚ୍ଚନା କରି ଆବାହନ କରୁଥାନ୍ତି ? ଆସିବା କ୍ଷଣି ଜାତୀୟ ସଂକଟ ନାଁ ଦେଇ ଯାହା ଦେଲ ଯାହା ନେଲ ସେ କଥା ତମକୁ ଜଣା । ଦେଖୁନ । ୧୯୯୯ର ମହାବାତ୍ୟା ତ ହେଲା । କେତେ ଘରଦ୍ୱାର ଭାଙ୍ଗି ଦେଇଗଲା ଗାଁ ଗଣ୍ଡାରେ ? ହେଲେ ସହରରେ ଏତେ କୋଠା ଗଢ଼ି ହୋଇଗଲା କେମିତି ? ଭାଙ୍ଗିଲା ଗାଁ, ଗଢ଼ା ହେଲା ସହର ?

ନୀରବତାର ପ୍ରତିମୂର୍ତ୍ତି ସତେ ଯେପରି କଥାଗୁଡ଼ାକର ଉତ୍ତର ଖୋଜିପାଉନି । ନୀରବତା ହିଁ ସମ୍ମତିର ଲକ୍ଷଣ । ସାମ୍ବାଦିକ ପଚାରିଲେ ତା ହେଲେ ଆପଣ ଆଦୌ ଦୁର୍ନୀତି କରନ୍ତି ନାହିଁ ?

କଦାପି ନୁହେଁ ,କେବେ ବି ନୁହେଁ । ଦୁର୍ନୀତି ଆଉ ମୁଁ ? ଧିକ୍‌ଧିକ୍ ଏ କ୍ଷମତା ରାଜନୀତି । ଭିକମାଗିବ ବରଂ ଭଲ । ଲୋକଙ୍କ ତଣ୍ଟିକାଟି, ଦେଶକୁ ଋଣଗ୍ରସ୍ତ କରାଇ ରାଜନୀତି କରିବ ? କାହିଁକି ଯେ । ରାମ୍ ରାମ୍ ରାମ୍ । ରାମବୋଲ । ଆମ ଜାତକରେ ସେ କଥା ହେଇନି କି ହେବ ନାହିଁ । ବରଂ ତମେ କ'ଣ କେବେ ପଚାରିଚ ଆମେ ଆମ ଖଜଣାଖାନାରୁ କେତେ ବ୍ୟୟକରୁ କୋଉ କାମ ପାଇଁ ?

ସାମ୍ବାଦିକ ଉତ୍ସାହିତ୍ ହେବା ସହିତ ମୁରୁକି ମୁରୁକି ହସିଲେ ଓ ପ୍ରଶ୍ନ କଲେ ଟିକେ କହିବା ହୁଅନ୍ତୁ ଆଜ୍ଞା ।

ଆମେ ଦରିଦ୍ର ଜନର ବଂଧୁ । ଅସହାୟ, ନିଃସହାୟ, ରୋଗୀ,ଯୋଗୀ ଓ ଅନାଥ ମାନଙ୍କର ରକ୍ଷଣାବେକ୍ଷଣର ଭାର ଆମ ଉପରେ । ଏଇମାନଙ୍କୁ ଦେଇ ଦେଇ ଆମ ଭଣ୍ଡାରଘର ଆଜି ଶୂନ୍ । ମୋର କିଏ ଅଛି ଯେ ଖାଇବାକୁ ? ?

ସାମ୍ବାଦିକ ଏକ ଜଟିଳ ପ୍ରଶ୍ନ କଲେ-'ଆଚ୍ଛା ମହାଶୟ ! ଆପଣ କହିବେକି ଆପଣଙ୍କ ମହାତ୍ମା କ୍ଷମତାକୁ ଆସିବା ଆଗରୁ ଯାହାଥିଲେ ଆଜି ଏଇ ଅଳ୍ପଦିନ ଭିତରେ

ଏତେଗୁଡ଼େ ଧନ ସଂପତ୍ତିର ଅଧିକାରୀ କେମିତି ହେଲେ ? ତାର ମୂଳ ରହସ୍ୟଟି କ'ଣ ? ଟିକେ ବତାଇ ଦେବେ କି ?

ବାବୁଙ୍କର କିଛିବୋଲି କିଛି ନାହିଁ । ଯାହାକିଛି ସବୁ ମାଆଙ୍କର ଓ ତାଙ୍କ ପୁଅଙ୍କର । ମହାତ୍ମାଙ୍କ ପକେଟ କଣା । କାହାକୁ ଦିଅନ୍ତି ନା କାହାଠୁ ନିଅନ୍ତି ?

ସାମ୍ବାଦିକ ଯେତେବେଳେ ମାଆ ଓ ପୁଅଙ୍କର ଯୋଗ୍ୟତା ଉପରେ ପ୍ରଶ୍ନ କଲେ ସେତେବେଳେ ଛାୟାମୂର୍ତ୍ତି ତରତର ହୋଇ ଆଡ଼େଇ ଚାଲିବାକୁ ଆରମ୍ଭ କଲେ ।

ସାମ୍ବାଦିକ ନିରୂପାୟ ।

ତୃତୀୟଛାୟାମୂର୍ତ୍ତି ଆସି ଠିଆ ହେଲା ସାମ୍ନାରେ ।

ସମ୍ବାଦିକ ପ୍ରଶ୍ନକଲା-'ଆପଣ ପୁଣି କିଏ ?'

ମୁଁ ? ମୁଁ ହେଉଛି ମହାତ୍ମାଙ୍କର ପର୍ସନାଲ୍ ସେକ୍ରେଟାରୀ । ଏକ ଆତ୍ମା କହିଲେ ଚଳେ । ତାଙ୍କ ମୋ ଭିତରେ କୌଣସି ତଫାତ୍ ନାହିଁ ଜାଣ । ଏକ ବୀଜ ବେନି ଫାଳ ।

ସାମ୍ବାଦିକ ପ୍ରଶ୍ନକଲେ-'ଆପଣ ତାଙ୍କର କି କାମ ମାନ ତୁଲାଇଥାନ୍ତି ?

'ମୁଁ ତାଙ୍କୁ ଖୁସି ରଖିବାରେ ନିରତ ଚେଷ୍ଟାରତ ଥାଏ । ତାଙ୍କର ଆନନ୍ଦ, ମୋର ଆନନ୍ଦ ।' ତା ହେଲେ ସେ କ'ଣ ସବୁବେଳେ ଖୁସିନଥାନ୍ତି ।

ହେଲେ ଦିନେଦିନେ ସେ ଏତେ ଉତ୍ତେଜିତ, ଉନ୍ମାଦିତ ହୋଇପଡ଼ନ୍ତି ଯେ ତାଙ୍କ ମୁହଁରୁ ଭଲ ଭାଷା ଜାଗାରେ ଖରାପ ଭାଷାସବୁ ବାହାରେ । ପାଦ ଟଳମଳ ହୋଇଯାଏ । ନିଶାଗ୍ରସ୍ତ ହେଲାପରି ସେ ଦମ୍ଭେ ପ୍ରତିବାଦୀମାନଙ୍କୁ ଗାଉଁ ଗାଉଁ ହେଇ ଗାଳିଗୁଲଜ କରନ୍ତି । ମୋ ଉପରକୁ ଫାଇଲ୍ ଫୋପାଡ଼ନ୍ତି । ବଡ଼ବାବୁ ଓ ଅନ୍ୟମାନେ ପାଖ ପଶିପାରନ୍ତି ନାହିଁ । ମୁଁ ବାଧ୍ୟ ହୋଇ ତାଙ୍କ ଚାମ୍ବର ବାହାରର ରେଡ୍‌ଲାଇଟ୍ ଜଳାଇ ଦିଏ । ସିକ୍ୟୁରିଟି ଆଉ କାହାକୁ ଛାଡ଼େ ନାହିଁ । ମୁଁ ମନେ ପକେଇ ଦିଏ ତାଙ୍କର ହୁକିଟୋଲା ଶିମିଳିପାଳର ଡ଼ାକବଂଗଳା କଥା । ସେ ବିକଳ ହୋଇ ଖୋଜନ୍ତି । ପାଆନ୍ତି ନାହିଁ । ଲାଇଟ୍ ଜଳୁଥାଏ । ଦେଖା କରିବାକୁ ଆସିବାଲୋକ ଅତିଷ୍ଠ ହେଉଥାନ୍ତି । ମହାତ୍ମାଙ୍କୁ ବିଶ୍ରାମ ମୁଦ୍ରାରେ ଶୁଆଇ ଦେଇ ମୁଁ ବାଥ୍‌ରୁମ କବାଟ ଆଉଜାଇ ଆଣି ଲାଇଟ୍ ଲିଭାଇ ଦିଏ । ସିକ୍ୟୁରିଟି ଘୋଷଣା କରିଦିଏ ବିଶ୍ରାମ । ଲୋକେ ଫେରି ଯାଆନ୍ତି ।

ମୁଁ ଯଦି ପ୍ରଶ୍ନକରେ ଆପଣ ତାଙ୍କର ଦେହଜ କାମନାର ଏକ ଯାନ୍ତ୍ରିକ ବାହକ ନୁହଁନ୍ତି କି ?

ନାଁ । ଆଦୌ ନୁହେଁ । ତାଙ୍କ ଜୀବନର ବ୍ରତ ସଂପର୍କରେ ଆପଣ ଜାଣି ନାହାନ୍ତି । ଲେଖି ରଖନ୍ତୁ। ସେ ଜଣେ ନିପଟୁ ଗୃହୀ। ପରିବାର ବୋଲି ତାଙ୍କର କେହି ନାହିଁ । ଜନତା ଜନାର୍ଦ୍ଦନ ତାଙ୍କର ନିଜ ଲୋକ । ସେଇମାନଙ୍କୁ ସେ ପରିବାର ବୋଲି ମନେ କରନ୍ତି । ମୁଁ ତାର ଜୀବନ୍ତ ନମୂନା ।  ମୋର କେହିନଥିଲାବେଳେ ସେ ମୋତେ ଅଯାଚିତ ସାହାଯ୍ୟ ଓ ସ୍ନେହ ଦେଇ ନିଜ ପାଖରେ ଆଶ୍ରୟବି ଦେଇଛନ୍ତି । ତାଙ୍କ ପରି ପରମାତ୍ମା ଆଜିକାଲି ଖୋଜିଲେ ଆଉ ମିଳିବେ ? ପରିବାରରୁ ସେ ଏକରକମ ସନ୍ୟାସ ନେଇ ସାରିଛନ୍ତି, ଦେଶ ସେବାର ବ୍ରତ ନେବା ଦିନଠାରୁ ।

ସାମ୍ବାଦିକ ପ୍ରଶ୍ନ କଲେ- ଟୁର୍ ପଡ଼ିଲେ ଆପଣ କଅଣ ତାଙ୍କ ସହିତ ସବୁଆଡ଼େ ଯାଅନ୍ତି ? ନହେଲେ ସେ ଖୁସି ହୋଇପାରନ୍ତି କିପରି ?

ଏତିକି କଥା ଜାଣିନାହାନ୍ତି ? ତାଙ୍କର ଯେତେ ଯେତେ ରହିବା ଜାଗା, ସବୁଠି ମୋରି ପରି ଆପଣାର  ଲୋକମାନେ ପ୍ରସ୍ତୁତ ହୋଇ ରହିଛନ୍ତି ।  ବଙ୍ଗଳାରେ ପହଞ୍ଚିବା ମାତ୍ରେ ସେମାନଙ୍କୁ ଡ଼ାକିବା ଦରକାର ପଡ଼େ ନାହିଁ । ଆପେ ଆପେ ଆସି ପହଞ୍ଚି ଯାଆନ୍ତି ।

ଠିକ୍ ଅଛି ସେ ମହାନ୍ । ତାଙ୍କ ଗୁଣର ବର୍ଣ୍ଣନା ପାଇଁ ଭାଷା ନାହିଁ । ତେବେ ଗୋଟେ ପ୍ରଶ୍ନ-'ତାଙ୍କ ସ୍ତ୍ରୀ କ'ଣ ଏ ଦିଗରେ କିଛି କହନ୍ତି ନାହିଁ ?

ଅବଶ୍ୟ ଥରେ ଅଧେ ସ୍ତ୍ରୀ ତାଙ୍କର ବାହାରିଥିଲେ କୋର୍ଟର ଆଶ୍ରୟ ନେବା ପାଇଁ । ସେ ତାଙ୍କ ନିକଟରେ ଶରଣ ପଶି ସମସ୍ୟାର ସମାଧାନ କରିଦେଲେ । ନହେଲେ ରାଜନୈତିକ ମୃତ୍ୟୁ ଘଟିଥାନ୍ତା  ସେଥର ତାଙ୍କର ।  ଆଚ୍ଛା ଆପଣ ତାଙ୍କଠାରୁ ପାଆନ୍ତି କଅଣ ?

'ସବୁ' । ଗାଡ଼ି, ପଇସା, ଭଲଖାଦ୍ୟ, ଭଲ ଶାଢ଼ୀ, ଅଳଙ୍କାର, କ୍ଷମତା । କଣନାହିଁ ? ତାହେଲେ ମୁଁ ପ୍ରଶ୍ନ କରୁଚି-ଆପଣ ଗୋଟିଏ ପରିବାର ଧ୍ୱଂସ କରି ଦେବା ଦିଗରେ ଏକ  କାରଣ ହୋଇ ଯାଉ ନାହାନ୍ତି କି ?

ଛାୟାମୂର୍ତ୍ତି ଏତେ ବେଶୀକାଳ ରହିବା ଉଚିତ ମନେ ନ କରି ସେଠାରୁ ନିଷ୍କ୍ରାନ୍ତ ହେଲେ । ସାମ୍ବାଦିକ ଡ଼ାକିଲେ ମଧ୍ୟ ଆଉ କର୍ଣ୍ଣପାତ କଲେ ନାହିଁ ।

ସ୍ୱଗତ ହେଲା ସାମ୍ବାଦିକ ।

ଚତୁର୍ଥ ଛାୟାମୂର୍ତ୍ତି ପାଦ ଉଠାଇଲା ବେଳକୁ ସାମ୍ବାଦିକ କହିଲେ ରୁହ ! ଆପଣ ପୁଣି କିଏ ? କୁଆଡ଼େ ଯାଉଛନ୍ତି ?

ଆରେ ଭାଇ ମୋତେ ଟିକେ ଛାଡ଼ିଦିଅ । ଗୋଟେ ବଡ଼ ସଂକଟ ସୃଷ୍ଟି ହୋଇଯାଇଛି, ରାଜ୍ୟରେ ବର୍ତ୍ତମାନ । ତାକୁ ସମାଧାନ କରିବାକୁ ହେବ ।

କି ସମସ୍ୟା ?

ବିରୋଧୀ ଦଳଗୁଡ଼ା ଆମର ଗୋଟେ ଉଇକ୍‌ପଏଣ୍ଟ ଧରିନେଇ ଜନତାଙ୍କୁ ଉସ୍‌କାଉଛନ୍ତି । ମତ ବିଭ୍ରାନ୍ତ କରୁଛନ୍ତି । ଏଥିପାଇଁ ତୁରନ୍ତ କଅଣ କରିବାକୁ ହେବ ମୁଁ ଧାଇଁଚି ସେଇ ଜାଗାକୁ ମୋ ସାଙ୍ଗସାଥୀମାନଙ୍କୁ ଡ଼ାକି ଆଣିବାକୁ । ପରେ କଥା ହେବା ।

ନାଁ । ଆପଣ ଟିକେ କହିଯାଆନ୍ତୁ । ଯୋଉ ସମସ୍ୟା ବର୍ତ୍ତମାନ ସୃଷ୍ଟି ହେଇଛି ତାକୁ କେମିତି କ'ଣ କରି ସମାଧାନ କରିବେ ?

କଣ୍ଟାକୁ କଣ୍ଟା କାଢ଼େ । ଲୁହାକୁ ଲୁହା କାଟେ । ଖରାପ୍ ଖଳ ଲୋକଙ୍କୁ ଖଳ ଲୋକ ସାଧେ । ମିଛକୁ ମିଛ କାଟିଦିଏ । ତେଣୁ ଆମେ ସମସ୍ୟାକୁ ସମସ୍ୟାରେ ହିଁ ସମାଧାନ କରିଥାଉ ।

ମୁଁ ତ ମହାତ୍ମାଙ୍କର ପରାମର୍ଶ ଦାତା । ଯେତକ କୁଟିଳ, ଖଳ ଆଉ ଦୁଷ୍ଟ ବୁଦ୍ଧି, ସେ ମାଗି ନେଇ ଥାନ୍ତି ମୋରିଠାରୁ । ଗୋଟେ ମଲା ମୂଷା ଥିଲେ ବି ମୁଁ ତାକୁ ଜାତୀୟସମସ୍ୟା କହି ଇସୁ କରିଦେବି । ଯେ କୌଣସି କଥାକୁ ଇସୁ କରିବା ହେଉଛି ମୋର କାମ । ଏପଟେ ଗୁଣିଆ ହେଇ ଭୂତ ଲଗେଇ ଦେବ । ସେପଟେ ବୁଲିଆସି ଭୂତ ଛଡ଼େଇ ଦେଲେ ଜନତା ବି ଖୁସ୍ ତମେ ବି ଖୁସ୍ । ସାଂପ୍ରଦାୟିକ ଦଙ୍ଗା ସୃଷ୍ଟି କରିବା । ଧର୍ମବିଦ୍ୱେଷ ସୃଷ୍ଟି କରେଇବା, ରାଜନୀତିରେ ଧର୍ମକୁ ଇସୁ କରିବା ହେଉଛି ମୋ କାମ । ସ୍ୱାଭାବିକରେ ମରିଥିଲେ ବି 'ପୂୟୁମାରାଣ୍ଡି' ଅନାହାରରେ ମଲା ବୋଲି 'କଳାହାଣ୍ଡିରେ ଅନାହାରରେ ମୃତ୍ୟୁ ନାଁରେ ଚାରିଆଡ଼େ ପ୍ରଚାର କରେଇ ଦେବା ମୋ କାମ । ମୋତେ ଅର୍ଡ଼ର ଅଛି ବିରୋଧୀ ଦଳକୁ ଗୋଡ଼େ ଗୋଡ଼େ ଜଗିଥାଅ । ନହେଲେ ବିରୋଧୀରେ ଥିଲେ ଶାସକ ଦଳକୁ ପାଦେ ପାଦେ ଛକିଥାଅ । ଦିଅ ଡ଼ାକରା । ଭାଙ୍ଗ ବସ୍, ଟେମ୍ପୋ । ଜାଳ ଟାର୍ । କର ଲୁଟ୍ ତରାଜ ଦୋକାନ ବଜାର । ଛକ ଉପରେ ଠିଆ ହୋଇ ବଜାବଜି ହୁଅ । ଯାହାକୁ ବୋଲି ତାକୁ ଦେଖି ଗୋଡ଼ାଅ, ପରେ ଦେଖିବ ସେଟା ଗୋଟେ ଇସୁ ହୋଇଯିବ । ଏମିତିକି ମୁଖ୍ୟ ମୁଖ୍ୟ ଦେଖି କାହାକୁ ବୀରଗତି ପ୍ରାପ୍ତ କରାଇ ଦେବାରେ ବି ଆମେ ପଛାଉ ନା । ପ୍ରତିଦିନ କିଛି ନା କିଛି ନ ଘଟିଲେ ହବ କେମିତି ? ଲୋକେ ଶାସନ କଅଣ ବୁଝିପାରିବେ ନାହିଁ । ମଝିରେ ମଝିରେ ଝଡ଼ବତାଶ ନଇବଢ଼ୀ ହଉଥିବ ନାଁ । ନହେଲେ ପୁରା ଥଣ୍ଡା

ପଡ଼ିଯିବେ ନାହିଁ ଜନତାଗୁଡ଼ା । ଗାଁ ଗାଁ, ସହର ସହର, ଲେନ୍ ଲେନ୍, ସାଇସାଇ, ଟୋକାଙ୍କୁ ଖୋଇବା ପିଇବା ଦେଇ ତତେଇ ମତେଇ ରଖିଥିବ । ଏମାନେ ହେଲେ ତମ ବଳୟ । ତମର ଶକ୍ତି ।'

ଯୁବକ ମହାତ୍ୟାଗୀ, ଆବେଗରେ ପଡ଼ିଲେ ସେ ନିଃସ୍ୱାର୍ଥପରଭାବେ ଜୀବନବି ତ୍ୟାଗ କରିବାକୁ ପଛାଇବ ନାହିଁ । ଟିକେ ବୟସ ହେଇଗଲେ ମାରଗୁଲି ସେମାନଙ୍କୁ । ଯେତେକ କୁମନ୍ତ୍ରଣା ଏଇମାନଙ୍କୁ ଗଦପରି ଶୁଙ୍ଘେଇ ଦେଲେ ବେଶ୍ ଅଫିମ ନିଶାରେ ଟୁଳ ହେଲାପରି ଲାଗିଥିବେ ସେମାନେ ଦିନରାତି ତମ କାମରେ । ତମେ ବସିମଜା ଦେଖୁଥିବ । ବସ୍ ପୋଡ଼େଇ, ଦେବାକୁ ବତେଇ ଦେଇ, ଅଫିସର ଆସବାବ ପତ୍ର ଭଙ୍ଗାରୁଜା କରିବାକୁ କହିଦେଇ, ସେପଟେ ମନ୍ତବ୍ୟ ଦେବ– 'ଏଭଳି କାମ ଦେଶ ବିରୋଧୀ, ଦୁଃଖଦାୟକ, ଦୋଷୀମାନଙ୍କୁ ଦଣ୍ଡମିଳିବା ଉଚିତ୍ । ରାଜ୍ୟରେ ଶୃଙ୍ଖଳା ବୋଲି କିଛି ନାହିଁ ।'

ବେକାରମାନଙ୍କ ପାଇଁ ରାଜନୀତି ହେଉଛି ,ଏକ ସର୍ବଶ୍ରେଷ୍ଠ ନିରାପଦ ସ୍ଥଳ । ଭୋଟ ଆଣ ନୋଟ ନିଅ । ମୁଁ ଯାଉଛି ସେଇମାନଙ୍କୁ ଲଗେଇ ସମସ୍ୟାଟା ହାଲ୍‌କା କରିଦେବି ।

ସାମ୍ପ୍ରଦାୟିକ କହିଲା ? କିଏ କହିଲା !! ନା ଆଦୌ ନୁହେଁ, ଏ ସବୁ କୁଟିଳ ବୁଦ୍ଧିରେ ଯିବ ନାହିଁ ? ସୁଉଦ୍ଧୁ ରାଜନୀତି । ରାଜନୀତିରେ ବେଳେବେଳେ କୁଟିଳ ବୁଦ୍ଧି ପ୍ରୟୋଗ ନକଲେ ତମେ ଚିତ୍‌ପଟାଙ୍ଗ୍ ହୋଇଯିବ ବୋଲି ଚାଣକ୍ୟ ତାଙ୍କର 'ନୀତିଶାସ୍ତ୍ର'ରେ କହିଛନ୍ତି । ଏହାକୁ ଆମେ ପଲିଟିକାଲ ଡ଼ିପ୍ଲୋମାସି କହୁ । ମହାଭାରତରେ କୁହାଯାଇନାହିଁ । 'ନରେବା ଗୁଂଜରେ ଅଶ୍ୱତ୍ଥମା ହତ'? ତମେ ବସି ଦେଖୁଥିବ ବାଘ ଛେଳି ଏକାତୁଠରେ ପାଣି ପିଉଥିବେ ।

ଏଇ ଯୋଉ ଦଙ୍ଗାକୁ ଆପଣ କଅଣ ବୋଲି କହିବେ ?

ଠିକ୍ କଥା । ଏଟା ଦଙ୍ଗା ନୁହେଁ । ଆପଣ ଜାଣନ୍ତି ବଡ଼ଦ୍ରୁମମାନ କଟା ହେଲାବେଳେ ଛୋଟ ଛୋଟ ଦ୍ରୁମମାନ ତା ତଳେ ଚାପି ହୋଇ ନଷ୍ଟ ହୋଇଯାଏ । ଗଛର ଦୋଷ କଅଣ ? ଯିଏ କାଟିଲା ତାର ଦୋଷ କଅଣ ? ସେମିତି ଦେଶରେ ବା ରାଜ୍ୟରେ କ୍ଷମତା ହାସଲ କଲେ କ'ଣ ଗୋଟେ ଯୋଡ଼େ ଛୋଟବଡ଼ ଘଟଣା ଘଟିଗଲା ,ତାକୁ ଅଘଟଣ ଓ କୁଟିଳ ବୁଦ୍ଧି କହିବ କାହିଁକି ? ହଁ ଆପଣ ଥାନ୍ତୁ ମୁଁ ଆସୁଚି ।

ଆଚ୍ଛା ଆଉ ଗୋଟେ ପ୍ରଶ୍ନ । ଭାରତ ମୁକ୍ତି ଆନ୍ଦୋଳନ ବେଳେ ଜେନେରାଲ୍ ଡ଼ାୟାରଙ୍କର ଜାଲିଓ୍ୱାନାବାଗ୍ ହତ୍ୟାକାଣ୍ଡକୁ ଆପଣ ତାହେଲେ କଅଣ କହିବେ ?

ନିରୁତ୍ତର ରହି ଛାୟାମୂର୍ତ୍ତି ଅପସରି ଯିବାରେ ଲାଗିଲା ।

ସାମ୍ବାଦିକ ଏତେଗୁଡ଼ା ପ୍ରଶ୍ନରେ ସନ୍ତୁଳିତ ହୋଇ ନିଜକୁ ବାରମ୍ବାର ପ୍ରଶ୍ନ ପଚାରିବାକୁ ଲାଗିଲା-'ଯେତେସବୁ ମହାତ୍ମା ସେମାନେ କ'ଣ ସଭିଏଁ ଦୁରାତ୍ମା ବିଟପ ବିଷାକ୍ତ ଜଳ କଣା ଧାରଣ କରିଥିବା ଗୋଟେ ଗୋଟେ ଚିତ୍ର ବିଚିତ୍ର ମାଠିଆ ? ସାମାନ୍ୟ ଟେକାଟିଏ ବାଜିଗଲେ ତାଙ୍କର ଅସଲ ସ୍ୱରୂପ ପଦାକୁ ବାହାରି ଆସିବ ନାନା ବିଷାକ୍ତ ସରୀସୃପ ଲହଲହ ଫଣା ଓ ଶୁଣ୍ଢ ମେଲାଇ ? ଆଃ..... !

ଚିନ୍ତା ଓ ବେଦନାରେ ଅତିଷ୍ଟ ହୋଇଉଠୁଥିଲା ସାମ୍ବାଦିକ । ଦେଖିଲା ପଞ୍ଚମ ଛାୟାମୂର୍ତ୍ତି ବହୁ ମୁମୂର୍ଷୁ ଅବସ୍ଥା ନେଇ ଜରାଗ୍ରସ୍ତ ରୋଗୀଟିଏ ପରି ପାଦ ପକାଇ ଯିବାକୁ ଆରମ୍ଭ କଲା । ଶାନ୍ତିରେ ନିଶ୍ୱାସମାରି ଚିତ୍କାର କରି ମୁକ୍ତିର ଆନନ୍ଦରେ ବିଭୋର ହୋଇ ହସୁଥିଲା ।

ସାମ୍ବାଦିକ ପଚାରିଲା- 'ଆପଣ କିଏ ?'

ଛାୟାମୂର୍ତ୍ତି ଉତ୍ତର ଦେଲା- 'ମୁଁ ମହାତ୍ମାଙ୍କର ଅସଲରୂପ ।' ଯିଏ ମାତୃଗର୍ଭରେ ଥିଲାବେଳେ ଈଶ୍ୱରଙ୍କ ସହିତ ପ୍ରତିଜ୍ଞା କରି ଆସିଥିଲେ- "ମୁଁ ଜଣେ ସଚ୍ଚା ମଣିଷ ହୋଇ ବଂଚିବି । ପ୍ରକୃତିର ସବୁ ଉପାଦାନ ପରି ମୁଁ ବି ଜଣେ ହେବି ।' ଆଜି ତାକୁ ଭୁଲି ଯାଇ ମୁଁ ଏଇ ଦୁଷ୍ଟ ଦୁରାଚାରୀ ଶକ୍ତିମାନଙ୍କ ପ୍ରେରଣାର ଉସ୍ୱ ହୋଇଗଲି । ସେମାନଙ୍କୁ ମୋ ଘରେ ଜାଗା ଦେଲି । ସେମାନଙ୍କୁ ପାଛୋଟି ଆଣିଲି-ଫଳରେ ତାଙ୍କରି କଥାରେ ମୋତେ ଚାଲିବାକୁ ବାଧ୍ୟ କରାଗଲା । ମୁଁ ତା'ର ପ୍ରତିବାଦ କରିବାରୁ ମୋତେ ସେମାନେ ବନ୍ଦୀ କରି ରଖିଥିଲେ । ମୋ ମୁହଁରେ ଅଠା ଲଗାଇ ସିଲ୍ କରିଦେଇଥିଲେ । ମୋ ଆଖିରେ ପଟି ବନ୍ଧା ହୋଇଥିଲା । କାନରେତୂଳା ଦିଆ ହୋଇଥିଲା । ମୋ ଇନ୍ଦ୍ରିୟମାନେ ମୋହଗ୍ରସ୍ଥ ହୋଇ ମୋତେ ବାନ୍ଧି ଫିଙ୍ଗି ଦେଇଥିଲେ ଅତଳ ଗହ୍ୱରରେ । ମହାତ୍ମାଙ୍କ ଭିତରେ ଥାଇ କେତେ ନେହୁରା ହୋଇଛି, କେତେ ଅନୁନୟ ବିନୟ କରିଛି । କିଛି ଶୁଣିଲେ ନାହିଁ ମହାତ୍ମା ।ଆଜି ତମ ଆଗରେ ସବୁ ସତ ଧରା ପଡ଼ିଗଲା । ଏତେଦିନ ପରେ ମୋତେ ଆଜି ମୁକ୍ତି ମିଳିଛି । ଆଃ କି ଆନନ୍ଦ ।

ସାମ୍ବାଦିକ ପଞ୍ଚମ ଛାୟାମୂର୍ତ୍ତିକୁ ପ୍ରଶ୍ନକଲେ 'ଆପଣ ତାହେଲେ ମହାତ୍ମାଙ୍କ ପାଇଁ କିଛି କରିପାରିଲେ ନାହିଁ ବୋଲି ଦୁଃଖ ପ୍ରକାଶ କରୁଛନ୍ତି ?

ନା ତା ନୁହେଁ। ସାମାନ୍ୟ କେଇଟି କାମର ଉପାୟ ବତାଇ ଦେବାରୁ ସେ କ୍ଷମତା ଐଶ୍ୱର୍ଯ୍ୟ ଓ ପ୍ରତିଷ୍ଠା ମୋହରେ ମୋତେ ସଂପୂର୍ଣ୍ଣ ଭୁଲିଗଲା । ମୁଁ ତାକୁ ମହାପୁରୁଷ କରି ଗଢ଼ିତୋଳି ଦେଇଥାନ୍ତି । ହେଲାନାହିଁ ।

ସାମ୍ବାଦିକ ପ୍ରଶ୍ନକଲେ-'ମହାପୁରୁଷ ହେବାର ସୂତ୍ରଟି କ'ଣ କହିବେନି ?'

ଛାୟାମୂର୍ତ୍ତି ଠୋ ଠୋ ହୋଇ ହସି ଉଠିଲା ଓ କହିଲା- ମୁଁ ତ ଏତେ ଚେଷ୍ଟା କରି ଦିବଙ୍ଗତ ସିଂହସାମନ୍ତଙ୍କୁ ମୋର ସାମାନ୍ୟ ଗୋଟିଏ ଶବ୍ଦ ମନେ ରଖାଇପାରିଲି ନାହିଁ । ତାର ଦୀର୍ଘ ନବେ ବର୍ଷର ଜୀବନ ବିତିଗଲା । ଆଉ ତମେ କହୁଚ ମୁଁ ସେ ଉପାୟଟି ଏତେ ସହଜରେ ବତେଇ ଦେବି ? ସବୁଯାକ କହିଦେବି ? ତମେ ସଙ୍ଗେ ସଙ୍ଗେ ମହାପୁରୁଷ ହୋଇଯିବ ? ହା, ହା ହା..........।

ଛାୟାମୂର୍ତ୍ତି ଚାଲିବା ଆରମ୍ଭ କଲେ ।

ସାମ୍ବାଦିକ ଚିତ୍କାର କରି ପଚାରୁଥାଏ-'ମହାତ୍ମା କହିଯାଆନ୍ତୁ । ସେଇ ମାତ୍ର ଶବ୍ଦଟା ! ମୋତେ କହିଯାଆନ୍ତୁ ।

ପୂର୍ବଦିଗରେ ରକ୍ତିମ ଆଭା ନେଇ ବାଳଭାନୁ ପ୍ରକାଶିତ ହୋଇ ଆସୁଥାଏ । ଅନ୍ଧାରର ଝାପ୍‌ସା ଛାଇରେ ଛାୟାମୂର୍ତ୍ତି ହଜି ହଜି ଯାଉଥାଏ । ଚଢ଼େଇମାନଙ୍କ କିଚିରି ମିଚିରି ଆରମ୍ଭ ହେବାର ମୁହୂର୍ତ୍ତରେ ପ୍ରାଚୀପଟ ପ୍ରଶ୍ନବାଚୀ ତୋଳୁଥାଏ । ସାମ୍ବାଦିକ ! ଆରେ ପଚାରି ରଖ ସେ ଶବ୍ଦଟା । ଆଉ କେବେ ବି ମିଳିବ ନାହିଁ ।

ଶେଷଥର ଚିତ୍କାର କଲା ସାମ୍ବାଦିକ । 'ମହାତ୍ମା ମୋତେ ଦୟା କରି ସେଇ ଶବ୍ଦଟା କହିଯାଆନ୍ତୁ । ମହାତ୍ମା ! କହିଯାଆନ୍ତୁ' ।।

ପବନ ସ୍ୱରରେ ମିଳାଇ ଯାଉଥାଏ ଚିତ୍କାର । ଆଲୋକ ପୋଛି ନେଉଥାଏ ସବୁ ଭାବନା ।ପକ୍ଷୀ କୂଜନରେ ହଜିଯାଉଥାଏ ପ୍ରଶାନ୍ତ ପ୍ରହର । ଦୂରରୁ କେବଳ ଶୁଣାଯାଉଥାଏ-"କମ୍‌ପାସନ୍ ମାଇଁବୟ" ! କମ୍ପାସନ୍ !!

ସାମ୍ବାଦିକ ଖୋଜୁଥାଏ କମ୍ପାସନ୍‌ର ଅର୍ଥ କଅଣ ?



## ନେତା

ବହୁଦିନର ପୁଞ୍ଜିଭୂତ ମାନସିକ ଅସନ୍ତୋଷ ସେମାନଙ୍କୁ ବିଦ୍ରୋହୀ ହେବାକୁ ବାଧ କଲା । ପାହାଡର ମଥାନରୁ ଆରମ୍ଭକରି ସମତଳ ଭୂମି ଓ ସମୁଦ୍ର କୂଳ ପର୍ଯ୍ୟନ୍ତ ସେମାନଙ୍କର ସେଇ ଗୋଟିଏ  ଚିନ୍ତା - କେମିତି ଏ ସ୍ଥିତାବସ୍ଥାରୁ ମୁକୁଳିବା !!

ଯେଉଁଠି ଜନ୍ମ ହେଇଚ ସେଇଠି ଠିଆ ହେଇ ଥାଅ ଯେ ଥାଅ, ଶେଷ ନିଶ୍ୱାସ ଛାଡିବା ଯାଏ। କି ଯେ ମାୟାଅଛି ଏ ମାଟିର ଆମ ସାଙ୍ଗରେ କେଜାଣି ? ଭିଡିଓଟାରି ଧରିଚି ଆମ ଗୋଡ । କେତେ କାଳଯେ ୟା ଭିତରେ ଗଲାଣି କେହିବି କହିପାରିବ ନାହିଁ । ଆମ ବୋପା ଅଜା ଏଇଠି ରହି ରହି ଗଲେ । ଆମେ ରହିଚୁ । ଆମ ପିଲାଏ ଓ ତାଙ୍କ ପିଲାଏ ବି ଏଇଠି ରହିଥିବେ ! କିଛି ବଦଳି ପାରିବ ନାହିଁ । ଶୁଣା ଅଛି ମଝିରେ କିଛିଦିନ ତଳେ–ଏଇ ଅଥର୍ବ ବାକ୍‌ଶକ୍ତିହୀନ, ଆଜ୍ଞାଧୀନ ନିକମା ଓ ପରାକ୍ରାନ୍ତ ମହାନ ସ୍ଥବିର ଶ୍ରମଜୀବୀମାନେ କୋଉ ଗୋଟେ ଆନ୍ଦୋଳନ କରିବାର ମନେମନେ ସ୍ଥିର କରୁଥିଲେ । ଜଣେ ଅଧେ ଏକଥା ଜଣେଇ ଦେଇ ଥିଲେ କାହାକୁ କେମିତି - ହେଲେ ଗୋଟେ ବନ୍ୟା ଆଉ ମହାବାତ୍ୟା ଆସିଲା ଯେ - ସବୁ ଫସର ଫାଟିଗଲା । ପୁଣି ଯେ ଯାହାର ରାହା ଧରିଗଲେ । ରାଜାଦେଶମାନି ନିଜଭିତରେ ସନ୍ତୁଳି ହେଉଥିବା ସିପାହୀଟି ପରି । ସେଇ ଏକା କଥା ବୋପା ଅଜା ଅମଳରୁ ଲାଗିରହିଚି । ଯୁଗକୁ ଯୁଗ ଏହିମତେ । ମନକଥା ଖୋଲି କହିବୁ କହିବୁ ବୋଲି ବିତି ଗଲାଣି ଏତେ ଶତାବ୍ଦୀ ୟା ଭିତରେ ।

କ'ଣ ମୁଁ ଭୁଲ କହୁଚି ??

ସାଧୁ ! ସାଧୁ !! ସଭାମଧ୍ୟରୁ ମିଳିତ କଣ୍ଠରେ ଶୁଭିଲା ।

ହଁ ଆଉ ଗୋଟେ କଥା କହିରଖେଁ ! ଆପଣମାନେ ସୂର୍ଯ୍ୟ, ଚନ୍ଦ୍ର, ତାରାମାନଙ୍କୁ ଦେଖୁଥିବେ। ସେମାନେ ବି ତ ଗୋଟେ ସ୍ଥାନରୁ ଅନ୍ୟସ୍ଥାନକୁ ଯା' ଆସ କରି

ପାରୁଛନ୍ତି ? ସେମାନଙ୍କର ବି କିଛି ମହତ୍ୱ ଅଛି ଏ ସଂସାରରେ । ସେମାନେ ଚାହିଁଲେ ଏ ସଂସାର ଅନ୍ଧାର ନହେଲେ ଆଲୁଅ । ହଁ, ପବନର ଓ ପାଣିର ବି ଗତିଅଛି । ନଈ ପର୍ବତରୁ ବାହାରି ସମୁଦ୍ରଯାଏଁ ଚାଲିଚାଲି ଯାଏ । ଇଚ୍ଛାହେଲେ ସେ ହେଇଯାଏ ମହାବଳଶାଳୀ ବ୍ରହ୍ମପୁତ୍ର କି ଗୋଦାବରୀ ନହେଲେ ସ୍ୱର୍ଗର ନନ୍ଦିନୀ ଗଙ୍ଗା ବା କାବେରୀ । ପବନର ବି ଗତି ଅବାଧ । ସେ କାହା ଭିତରେ ନାଇଁ ଯେ ! ବିଜୁଳି ପଙ୍ଖାରୁ ବ୍ୟୁପାତ ଘଟେଇ ପାରୁଥିବା ମହାବାତ୍ୟା ଭିତରେ ବି ତାର ସ୍ଥାନ । ଆପଣମାନେ କୁହନ୍ତୁ କେବଳ ଅଚଳ ମହାମେରୁ ପରି ଆମକୁ ଠିଆ ରହିବାର ଶପଥ କରାଇ ଏମାନେ ଆମପ୍ରତି ଘୋର ଅନ୍ୟାୟ କରି ନାହାନ୍ତି କି ? ତାର ଦୃଢ ମୁକାବିଲା କରିବାକୁ ପଡିବ ।

ତାଳିରେ ସଭାସ୍ଥଳ ମୁଖରିତ ହୋଇଉଠିଲା । ଜଣାପଡୁଥାଏ ଏତେ ଦିନପରେ ପଙ୍ଗୁମାନଙ୍କ ପାଦରେ ଗିରି ଲଙ୍ଘନର ସ୍ୱପ୍ନ ଡାନା ବାନ୍ଧି ଯାଉଛି । ସମସ୍ତେ ଏକ ସ୍ୱରରେ ଚିତ୍କାର କରି ଉଠିଲେ - ଯା ପାଇଁ କଣ ଗୋଟେ ଉପାୟ ବାହାର କରାଯାଉ । ନିଜ ଦାବୀ ଓ ଅଧିକାର କଥା କହିବାପାଇଁ କିଏ କାହାକୁ ଡାକିଯିବ କାହିଁକି ? ଆପଣମାନଙ୍କ ସ୍ୱାଧୀନ ଚିନ୍ତା ଉପରେ କିଏ ହସ୍ତକ୍ଷେପ କରିବ ? ଏହା କାହାରି ଅଧିକାରରେ ନାହିଁ । କଥା ଉଠିଲାଣି ଯେତେବେଳେ ତାର ଭଲମନ୍ଦ ତର୍ଜମା କରାଯାଇ କାମଟା ହାତକୁ ନିଆଯାଉ ।

ହଁ ନିଆଯାଉ । ଆମେ ସବୁ ରାଜି । ସଭାମଧ୍ୟରୁ ବଡପାଟିରେ କେହି ଜଣେ ଠିଆ ହୋଇ କହିଲା ।

ଗୁନିଆ, କେଥୁଆ, ନିମା, ଅର୍ଜୁନୀ, ଦେବା, ମଧୁ ଓ ରସା ଆଦି ଯେତେଯିଏ ଥିଲେ ସଭିଏଁ ସମର୍ଥନ ଜଣେଇ ବସିଲେ । ପ୍ରକୃତରେ ଯଦି ବିଚାରକରି ଦେଖାଯାଏ - 'ତେବେ ଏ ହେବ ଏ ଶତାବ୍ଦୀର ସବୁଠାରୁ ବଡ ଆନ୍ଦୋଳନ, ପୃଥିବୀର । ମଣିଷ ବିରୁଦ୍ଧରେ ଆନ୍ଦୋଳନ ଡାକରା ଦେଇ ଆମେ ତିଷ୍ଠିପାରିବା ତ ?

ମଣିଷଟା ବଡ ଚତୁର । ଆମରି କୋଳରେ ବଢି, ଆମରି ଖାଇ । ଆମରି ସର୍ବନାଶ କରିଚାଲିଛି । ଯୋଉଦିନ ସେ ସ୍ୱର୍ଗରୁ ଫିଙ୍ଗା ହୋଇ ଛେଉଣ୍ଡପରି ବୁଲୁଥିଲା ଏଣେ ତେଣେ । ନା ଲୁଗାଥିଲା, ନା ଖାଇବାର ଜିନିଷ ପତ୍ର, ନା ରହିବାର ଘରଦୁଆର ତାକୁ ଦେଖି ବାଘ ଭାବୁଥିଲା - ଆଃ ! କି ସୁନ୍ଦର ହୋଇଚି । ମୁଁ ତାକୁ ଖାଆନ୍ତି ? ସାପ ପାଟିଖୋଲି ତା'ଦେହର ବାସ୍ନା ଶୁଙ୍ଘୁଥିଲା ଆଉ ମନେ ମନେ ଖୁସି ହେଉଥିଲା । ବର୍ଷା ଆଉ ଶୀତରେ ଥୁରୁ ଥୁରୁ ଏଇ ମଣିଷକୁ ଆଣି ମୁଁ ଜାଗା ଦେଇଥିଲି ମୋ ଘରେ। କୋଳରେ । ସେ ଆଜି ଆମ ମୂଳ ତାଡି ନେଇଯାଉଛି । ଏଇ କଥାପାଇଁ ମୁଁ ଯେତିକି

ଦୁଃଖ କରୁନି, କରୁଚି ତାର ଦୋଚଡ ନୀତି ଯୋଗୁଁ । ବେଳ ପଡିଥିଲା ବୋଲି ସେଦିନ ସେ ଜବାବ୍ କରିଥିଲା – ମୁଁ କାହାରି ଅନିଷ୍ଟ କରିବି ନାହିଁ । ଏମିତି କି ମୋ ଜାଣତରେ ପିମ୍ପୁଡିଟିଏ ବି କଷ୍ଟପାଇବ ନାହିଁ । ପାହାଡ ଯାହାକରୁଚି, ଚନ୍ଦ୍ରସୂର୍ଯ୍ୟ, ନଈ, ମେଘ ଯାହା କରିବେ, ଆମେ ସବୁ ଯାହା କରିବା ସେଇ ଜବାବ ନେଇ ସେ ବଂଚିଲା । ଆରେ ଦେଖିଲାବେଳକୁ ସବୁ ପିଛିଲା କଥା ସେ ଭୁଲିଗଲାଣି । ଏତେବଡ ଆପଣାସୁଖୀ ଜୀବ ମୁଁ ଆଉ କାହାକୁ ଦେଖିନାହିଁ । ନିଜ ସୁବିଧା ପାଇଁ ହଇହେ ଅନ୍ୟର ତଣ୍ଡିକାଟିବ ? ଏକଥା ଆମ ଦେଇ କେବେ ହେଇ ପାରିବ ନାହିଁ ।

କହୁନ ? ସବୁ ଚୁପ୍‌ହେଇ ବସିଗଲ କାହିଁକି ? ତମେ ଯିଏ ମିଠାଫଳ ଦଉଚ ସେ କେବେ ପିତାଫଳ ଦେଇପାରିବ କି ? ତମେ ଯିଏ ଜାଳକୁ ଯୋଗତା ହେଇଚ, ସେ କେବେ ଚାଳକୁ ଯୋଗତା ହେଇପାରିବ କି ? ହେଲେ ଏ ଚତୁର ମଣିଷ ଯାହାର ଆଙ୍ଗୁଳକର ମୂଳନାହିଁ, ସେ କହୁଚି ମୋ ହାତରେ ମୁଁ ଚଉଦପା ।

ବହୁତହେଇଗଲା । ଆଉ ଏଣିକି ଛାଡଛୁଡ ନାହିଁ । ସହିବାର ଗୋଟେ ସୀମାଅଛି । ତମେ ସବୁ ରାଜିହେଲେ ମୁଁ ଗୋଟେ ପ୍ରସ୍ତାବ ଦେବି ଆଜିଠୁ ଆମକୁ କିଛି ଗୋଟେ କରିବାକୁ ହବ ।

ତାଳି ଆଉ ସମର୍ଥନରେ ସଭାସ୍ଥଳ କମ୍ପିଉଠିଲା ।

ସହକାର ବେଉରା ରହିଯାଇ ଆରମ୍ଭ କଲେ । ଆମେ ସଭିଏଁ କହୁଥାଇଁ ମଣିଷକୁ ଉଚିତ୍ ଶିକ୍ଷାଦବା । ହଉଠିକ୍ ଅଛି ବନ୍ୟା, ବାତ୍ୟା, ଅଂଶୁମାନ ସେମାନଙ୍କର ଦାଉ ସାଧିଲେଣି । ଭୂମି ମଧ ଥରହର ହେବାର ଚିନ୍ତାକରୁଚି । ଆମେବି କିଛି ଗୋଟେ କରିବା । ଏଇ କଥା ଆମେ ଜଣେଇବା କେମିତି ? କିଏ ଯାଇ ବିଲେଇ ବେକରେ ଘଣ୍ଟିବାନ୍ଧିବ ? ସେଇଥିପାଇଁ ମୁଁ କହୁଚି – ସବୁରି କଥାରେ ଆଜି କାଲି ଜଣେ ନେତା ଦରକାର । ତମେ କହିପାରୁନ । ତମ କଥା ନେତା ଯାଇ କହିବ ତା ଉପର ନେତାକୁ । ଉପର ନେତା ତା ଉପର ନେତାକୁ, ତା ଉପର ନେତା ତା ଉପର ନେତାକୁ ଆଉ ବଡନେତା କହିବ ବଡ ନେତାକୁ ନହେଲେ ତମ କଥା ତମଠି ରହିଯିବ । ନାଁ ତମେ କହିପାରିବ । ନା ତମ ବଡନେତା ଶୁଣିପାରିବେ । ଏଇ ବିଷୟରେ ଗୋଟେ କଥା କହୁଚି ଶୁଣ । ହସି ହସି ଗଡିଯିବ । ଏଇମ ! ଆମର ଯେତେବେଳେ ନ'ଅଙ୍କିଆ କାଳ ପଡିଥିଲା ସ ! ଦଳେ ଗୋରା ଲୋକ ପଳେଇ ଆଇଲେ । ଆମ ଏ ଉଡିଶା ରାଇଜରେ ରିଲିଫ୍ ଦେବେ। ସତରେ ନ'ଅଙ୍କିଆ ଘୋଟିଚି କି ନାହିଁ ତଦାରଖ କରିଲେ। ଦେଖିଦେଲେ। ଏଇ ଆମ ଜଗନ୍ନାଥ ସଡକ

ଧାରରେ ଏଇ ନିଉଛଣା ହରିଜନ ଛୁଆମାଇପେ ଗୁଡେ ମାଛକଙ୍କଡା ଧରୁଥେଲେ ।
ତାଙ୍କ ନାକର ନୋଥ ହାତର ପିତଳ ବଟଫଳ, ଖଡୁ - ତାଡ ଦେଖି ଆଖି ବୁଜିଦେଲେ ।
କହିଲେ ଏଁ ! ଯୋଉଦେଶରେ ମାଛ କଙ୍କଡା ଧରୁଥିବା ମାଇପିଙ୍କ ହାତରେ ସୁନାଖଡୁ
ସେ ଦେଶକି ଗରିବ ହୋଇଥିବ ? ହରଗିଜ୍ ନୁହେଁ, ହରଗିଜ୍ ନୁହେଁ । ନଅଙ୍କ
ଜମାବି ପଡିପାରିବ ନାହିଁ । ସେୟା ହେଲା - ରଜା ଅନ୍ଧକୁ ପାଣି ଅନ୍ଧ । ବ୍ରିଟୀଶ ରଜା
ବୁଝିଲା ଖମ୍ଭଆଳୁ । ଅଗାଣ୍ଡିଆ ରଜାକୁ ପାଳଚୁଣ୍ଡା ମନ୍ତ୍ରୀ । ସେଥିକି ଯାହାହେଇ ଥିବ
ପ୍ରଜାଙ୍କର । ଆଉ ଗୋଟେ କଥା । ସେମିତି ଏଇ ଦି ଚାରିବର୍ଷତଳେ ହେଇଗଲା
ବା ! ଥରେ ବଡରଜା କହିଦେଲେ ଆମ ଦେଶ ସାରା କୂଅ ଖୋଳେଇ ଦିଅ !
ମନ୍ତ୍ରୀ, ସେନାପତି ଲୋକଙ୍କର କଇଲାଣ ପାଇଁ କୂଅ ପୋଖରୀ ଖୋଳାଇ ଦେଲେ ।
ରାଜା ମାଗିଲେ ହିସାବ । କେତେ କୂଅ ଖୋଳାହେଲା ? ହିସାବ ଗଲା ସାନନେତାଙ୍କ
ଠୁଁ । ସାନ ନେତା ଦି'ଟା ଯାଗାରେ ଚାରିଟା ଲେଖିଦେଲେ ତା' ଉପର ନେତା
ଚାରିଟା ଯାଗାରେ ଆଠଟା ଲେଖିଦେଲା । ତାଉପର ନେତା ଆଠଟାକୁ କରିଦେଲେ
ଷୋହଳଟା । ଏମିତି ଏମିତି ହେଇ ତାଲିକା ଯାଇ ପହଞ୍ଚିଲା ବଡ ନେତାଙ୍କ ପାଖରେ ।
ବଡ ନେତା ଦେଶରେ ଏତେଗୁଡେ କୂଅ ଖୋଳା ହୋଇଛି ଜାଣି ଖୁସି ହେଲେ ଆଉ
ତାର ପ୍ରାପ୍ୟ ମୂଲ୍ୟ ହିସାବ ପତ୍ରକରି ଦେଇ ଦେଲେ । ପଇସା ସବୁ ଖର୍ଚ୍ଚ ସରିଲା ପରେ
ହଠାତ୍ ଦିନେ ରଜା ମାଗିଲେ ଖର୍ଚ୍ଚ ହିସାବ । କେତେ ଜମିରେ କୂଅ ଖୋଳା ହେଲା ?
ସବୁ ହିସାବକୁ ନେଇ ଏକାଠି କରିବାରୁ ଦେଖାଗଲା - ଯେତିକି ଜାଗାରେ କୂଅ
ଖୋଳା ହେଇଛି ତାର ଏରିଆ ହେଉଛି ତାଙ୍କ ଦେଶର ଭୌଗୋଳିକ ଏରିଆରୁ ବେଶୀ ।
ତା'ଅର୍ଥ ଦେଶଟାଯାକ କ'ଣ ରହିଛି ଗୋଟେ କୂଅ ଭିତରେ ??

ଠୋ ଠୋ ହସି ଗଡିଗଲେ ସଭାସଦ୍ ମଣ୍ଡଳୀ । କଥା ହେଲା ଆମଭିତରୁ
ନେତା ବଛାଯିବ : କେହିକେହି କହିଲେ- ନାନା ! ନେତା ବଛା କାମଥାଉ । ଆଗ
ଜଣେଇଦିଅ ମଣିଷ ସମାଜକୁ ଯେ - ଆମେ ସବୁ ଏଣିକି ତାଙ୍କ କାମ କରିବୁ ।
ସେମାନେ ଏଣିକି ଆମ କାମମାନ କରନ୍ତୁ । ନଚେତ୍ ଆମ ବାଟ ଆମେ ଦେଖିବା ।

ଜଣେ ମଝିରୁ ଥାଇ କହିଉଠିଲା - ହଉ ତମେ ତାହାଲେ ମଣିଷ କାମ
କରିବ ? ନା ନା କରିବ ? ହଉ କହିଲ ଦେଖି ଶାଳନ୍ଦୀ ଭାଇନା ଆଉ ଦେବାନ୍ନାଙ୍କ
ପାଇଁ କୋଉ ବସ୍ ତିଆରିହବ ? ସେ ଦୁହେଁ କେମେତି ଯା ଆସ କରିବେ ? କୋଉ
ଘରେ ରହିବେ, କିଏ ତିଆରି କରିବ ତାଙ୍କ ପାଇଁ ଘର ?

"ଆରେ ବୋକା ! ବୋକା" ଏଇତ ଆଶ୍ଚର୍ଯ୍ୟ । ହଇରେ ଆମର କାହାର ଅଲଗା ଅଲଗା ଘର ଅଛି ? ଆକାଶତ ଆମର ଛାତ । ସୂରୁଜ ଚନ୍ଦ୍ର ତ ଆମର ଆଲୁଅ । ମାଟିତ ଆମର ଘର । ସାନରୁ ବଡ ଆମେ କାମ କରୁଚେ । ଖାଉଚେ, ଚଳୁଚେ । ଯାହା ବଳକା ତାକୁ ସାଇତି ରଖୁଚେ ମାଟିରେ । ମାଟି ଦରକାରବେଳେ ଦଉଚି ଆମକୁ । ଆମେ ଦଉଚେ ମାଟିକୁ । ତୁ କହିଲୁ କମଳ ଭାଇ ! ଆମର କାହାର ପରଆପଣା ଅଛି ନା ଲୁଚାଛପା ଧନ ସାଇତା ସୁଇତି ଅଛି ? ଆମର ଯାହା ଦିଆନିଆ ଭାବ ଲାଗିରହିଚି । କଥାରେ ନାହିଁ "ଦିଆକୁ ଦିଆ ନାଁ ଅଦିଆକୁ ଦୁଆର ଦିଆ।" ଯଉଯାକେ ଦଉଥବସେ ଯାକେ ପାଉଥିବ । ଦେଇଥିଲେ ପାଇ । ମୋର ପ୍ରସ୍ତାବ ହେଲା ଏଣିକି ମଣିଷ ଆମପରି ଆକାଶକୁ ଚାହୁଁ । ଉପରକୁଦେଖୁ । ତଳକୁ ନ ଅନାଇ ସଭିଙ୍କି ଦଉ । ଯେତିକି ସେ ନଉଚି ସେତିକି ଦଉ । କଥା ସରିବ । ମୋ ମତରେ - ଆମର ତିନିଟା କାମ କରୁ ମଣିଷ । ଆମେ ତାର ଆଉ ଯେତେ କାମ ରହିଗଲା ସବୁ କରିଦେବୁ । କ'ଣ ରାଜି ।

ଜଣେ ପଚାରିଲା - କି କି କାମ ତିନିଟା ।

ଏକ -ମଣିଷ ଏଣିକି ଆମପରି ମାଟି ଉପରେ ପରସ୍ପର ଛନ୍ଦାଛନ୍ଦି ହେଇ କାନ୍ଧକୁ କାନ୍ଧ ମିଳେଇ, ହାତକୁ ହାତ ଧରି, ପାଦ ପକେଇରହୁ । ମାଟିକୁ ନ ଚାହିଁ, ଆକାଶକୁ ଚାହୁଁ । ତା ହେଲେ ତା ଭିତରୁ ପର ଆପଣା ଭାବ ଲୋପ ହେଇଯିବ ।

ଦୁଇ-ଏଣିକି ମଣିଷ ସର୍ବଦା ସତର୍କ ରହୁ । ତା'ନିଜ ସୁଖ ସୁବିଧା ପାଇଁ ଆଉ କାହାର କ୍ଷତି କଲେ, ସର୍ବନାଶକଲେ ବଂଶ ବୁଡେଇଲେ ତା'ବଂଶ ବୁଡ଼ିଯିବ ।

ଜଣେ ପ୍ରଶ୍ନକଲା-"କଥା ସ୍ପଷ୍ଟ" ବୁଝି ହେଲା ନାହିଁ ।

-ତା' ଅର୍ଥ ମଣିଷ ଆମ ଛାଇତଳେ ରହି । ଆମ ଫଳମୂଳ ଖାଇ, ଆମ ଡାଳ ଗରଣ୍ଡାରେ ଘର ଦୁଆର କରି, ଆମ ବଂଶ ବୁଡେଇବାକୁ ଚେଷ୍ଟା କଲେ ଆମେ ତା' ବଅଁଶ ବୁଡେଇ ଦବା ।

କଥାଟା ସମିଙ୍କ ମନକୁ ପାଇଗଲା-ହାଁ ଏଯେ କଥା !

ତିନ୍- ଆମେ ଯାହାକୁ ସେୟା, କେତେ କାଳ ଗଲାଣି ଯା ଭିତରେ । କେହି କାହା ନିଜ ଧର୍ମ ଛାଡି ପାରୁନୁ । ଆମେ ଶ୍ରମିକ ଦଳ। ଖଟିଖିଆ ଦଳ । ମାଟିକୁ ଘାଣ୍ଟି ଘାଣ୍ଟି ପାଣି ଫଟେଇ ତା ଭିତରୁ ଫଳ ଫୁଲ ପତ୍ର ବାହାର କରିବା ଆମର କାମ । ଆମରି ମେହେନତରେ ତିଆରି ହୋଇଚି ଏଦେଶ । ଏ ଦୁନିଆଁ, ଆମେ ହାତ ନଦେଲେ ସବୁ ଅଚଳ ।

ହଁ ! ଆମର ଗୋଟେ ଖରାପ ଗୁଣ ରହିଚି । ଆମେ ଯାହାକିଛି ରୋଜଗାର କରୁଚେ ନିଜପାଇଁ ନରଖି ଦେଇ ଦଉଚେ ଆଉ କାହାକୁ । ଅଭାବକୁ ଆମେ କେବେ ମଣୁନା ଅଭାବ ବୋଲି । ଯୋଉଦିନର କାମ ସେଇଦିନ କରିସାରି ଦଉଚେ । କାମରେ ଆମର ବିଶ୍ୱାସ । କଥାରେ ନୁହେଁ ।

ଆଉ ଗୋଟେ କଥା ଯା ଭିତରେ ରହିଯାଉଛି । କୁଆଡିକିତ ଯା ଆସ ନାହିଁ ଆମର ! ବାହାର ଜଗତ ଜାଣିବୁ କେମିତି ? ଏକାଠିତ ହେଇ ପାରୁନେ । ଗଣ୍ଠିରେ ବି ଧନ ନାହିଁ । ଯୋଉଧନ ଉପୁଜେଇଲେ ତାକୁ ମାରିନେଲା ମାଲିକ । ଆଉ ତା' ଖିଲାପିରେ ଠିଆ ହେବା କେମିତି ?

କାଦମ୍ବିନୀ ଦେବୀଙ୍କର ଏ ବକ୍ତବ୍ୟ ଶେଷ ହୋଇଛି କି ନାହିଁ ସଭାଯାକ ଭାବବିହ୍ୱଳ ହୋଇଉଠିଲା - ଉଚିତ୍ ! ଉଚିତ୍ ! ଏକବାର୍ ଠିକ୍‌କଥା

ଆମର ବଳଅଛି । ହେଲେ ଆମର ମୂଳନାହିଁ, ଟାଣ ମୂଳ ନାହିଁ । ମୂଳକୁ ଟାଣ କରିବା ପାଇଁ ଆମର ନେତା ଦରକାର । କାଦମ୍ବିନୀ ଦେବୀଙ୍କ ବକ୍ତବ୍ୟ ପରେ ସଭାର ଏ ଧାରଣା ଦୃଢ ହୋଇଉଠିଲା ।

ଅଶୋକ ଭାଇନା ତହୁଁ ନେତା ବାଛିବାର ଉପାୟ କହିଲେ । କାହାକୁ ନେତା ବାଛିବା ସେଇଟା ଆଜି ଆମପାଇଁ ବଡକଥା । ଭଲ ନେତା ନ ହେଲେ ଆମ ଅବସ୍ଥାର ଆଦୌ ପରିବର୍ତ୍ତନ ହୋଇପାରିବ ନାହିଁ । ଯାହାକୁ ସେୟା ହୋଇ ପଡିରହିଥିବା ।

ଆପଣମାନଙ୍କ ସାମ୍ନାରେ ମୁଁ ମୋର କେଇଟା ବିଚାର ବ୍ୟକ୍ତ କରୁଚି । ତାକୁ ଆଖିଆଗରେ ରଖି ଆମେ ନେତା ବାଛିଲେ ଠିକ୍ । ଏମୋର ବ୍ୟକ୍ତିଗତ ମତ । ଆପଣଙ୍କ ସ୍ୱାଧୀନ ମତ ଉପରେ ମୁଁ ତାହାକୁ ଲଦି ଦେବାକୁ ଚାହେଁନା ।

ତାଳି ।

ଆଜିକାଲି ସମୟ ବହୁତ ଖରାପ ଚାଲିଛି । ନେତା ବାଛିବା ଭାରି କଷ୍ଟ । ପହିଲେ ପହିଲେ ନେତାମାନେ ନିଜର ସ୍ଥିତି ଦୃଢ କରିବା ପାଇ ହସିହସି କଥା ହୁଅନ୍ତି । ଯେମିତି କାମ ସରିଯାଏ । "ତୁ କିଏ ନା ମୁଁ କିଏ ?" ଦେଖିଲା ବେଳକୁ ଢୋଲ ଭିତରେ ମୂଷା । ତମେ ଜାଣିବ ଯାହାର କଥା ଚିକ୍‌କଣ ସେ ପରମ ଠକ - କଥା ଚିକ୍‌କଣ ତିଳକ ସରୁ - ଜାଣିବ ଏହାଙ୍କୁ ଠକଙ୍କ ଗୁରୁ ।

ଆମରିମାନଙ୍କ ଦ୍ୱାରା, ଆମରିମାନଙ୍କ ପାଇଁ ଓ ଆମରିମାନଙ୍କର ଯିଏ ନେତା

ହେବ ସେ ଆମରି ହାନି କରିବ କେମିତି ? ଏକଥା ଯେକେହି ନିଜଆଡିକି ଟାଣି ନେଇ ଭାବିବା ଉଚିତ୍ ନୁହେଁ ? ଆମେ ବର୍ତ୍ତମାନ ନୀତି, ଆଦର୍ଶ ଓ ଲକ୍ଷ୍ୟ ନେଇ ନେତା ବାଛିବା କଥା କହୁଚେ। ଏଇଟା କାହାରି ବ୍ୟକ୍ତିଗତ ମତ ନୁହେଁ । ଆମ ସମସ୍ତଙ୍କର କଥା । ଆପଣମାନେ ଜାଣିରଖନ୍ତୁ - ଯାହାର ନେତା ଦୁର୍ବଳ ତାର ଲୋକ ପଛୁଆ । ସେ ଅଂଚଳ ସେତେ ଅନୁନ୍ନତ । ଯାହାର ନେତା ଯେତେ ବଳଶାଳୀ ସେ ଲୋକେ ସେତେ ଚାଲାକ୍ । ଆଉଗୋଟେ କଥା ଏଇଠି ଖୋଲି ଦେଲେ ଭଲହବ । ଯାହାକୁ ଆମେ ନେତା ବାଛିବା ସେ ଭାବିବା ଉଚିତ୍ ଯେ - ମୁଁ ସର୍ବସାଧାରଣଙ୍କ ସେବକ, ଶାସକ ନୁହେଁ । ସର୍ବସାଧାରଣଙ୍କ କଲ୍ୟାଣ ପାଇଁ ମୋତେ ଆଗୁସାର କରାଯାଇଛି । ସେଠି ଲୋକଙ୍କୁ ଭୁଲି ଯଦି ନେତା ନିଜ କାମ ପାଇଁ ତତ୍ପର ରହିବେ, ତେବେ ତାଙ୍କ ପାଇଁ ଆମମାନଙ୍କର କର୍ତ୍ତବ୍ୟ କଅଣ ?

ହଠାତ୍ ମଝିରେ ଠିଆ ହୋଇ 'କାଦମ୍ବିନୀ' ଦେବୀ ସମ୍ବୋଧନ କଲେ - 'ଭାଇ ଓ ଭଉଣୀମାନେ' ! ଆମେ ପ୍ରଥମେ ଏଇ ନିଷ୍ପତ୍ତି କରିବା ଯେ - ଆମ ପାଇଁ ନେତା ହୋଇଯିଏ ତା କାର୍ଯ୍ୟକାଳ ଭିତରେ ଆମକୁ କୁକୁର ବିଲେଇ ପରି ବ୍ୟବହାର କରିବ, ତାକୁ ଆମେ ଉଚିତ୍ ଶିକ୍ଷା ଦେବା । କ୍ଷମତାରୁ ଗଲାପରେ ତାକୁ ସଂପୂର୍ଣ୍ଣ ଏକ ଘରିକିଆ ବା ବାଛନ୍ଦ କରି ଦିଆଯିବ । ତାର ଯାହା ଧନ ସଂପତ୍ତି ଠୁଳ କରିଥିବ ତାକୁ ଆମେ ଛଡେଇ ଆଣି ନିଜଭିତରେ ବାଣ୍ଟିନବା । 'ଗୋଠମାତିଲେ ଖଣ୍ଡିଆମାତେ' ହଇରେ ଆଇନ୍‌କୁ ଆମେ ହାତକୁ ନେଲେ ଅଧିକାଂଶଙ୍କର କୋଉ ଆଇନ୍ କଅଣ କରିବ । ଯିଏ ଆମ ଲକ୍ଷ୍ୟକୁ ହାନିକରି ଆମ ଉଦ୍ଦେଶ୍ୟକୁ ଭଣ୍ଡୁର କରି ନିଜ କଥାରେ ମାତିବ ତାର ଏଇ ପରିଣାମ ହେବ । ଏଥିରେ ଯିଏ ରାଜି ସେଇ ଏକା ନେତା ହେଉ ।

ତାଳି ।

ଏତକ କହି କାଦମ୍ବିନୀ ଦେବୀ ବସିଲେ । ସଭା ମଝିରେ ମୃଦୁ ଗୁଂଜରଣ ସୃଷ୍ଟି ହେଲା । ଏକଥାର ସମ୍ଭାବନା ଓ ବାସ୍ତବତା ନେଇ ଯେ ଯାହାର ନିଜ ଭିତରେ କଥା କଟା କଟି ହେଲେ ।

ଅଶୋକ ଭାଇନା ପୁଣି ଆରମ୍ଭ କଲେ, 'ହଉ ତା'ହେଲେ ଆପଣମାନେ ସ୍ଥିର କରନ୍ତୁ, କୋଉ କୋଉ ଗୁଣ ରହିଲେ ଆମେ ତାକୁ ନେତା କରି ବାଛିବା ।'

ସହକାର ବେଉରା କହିଲେ - ଯିଏ ଅତି ସରଳ, ନିଷ୍କପଟ, ନିଃସ୍ୱାର୍ଥପର ଆଉ ପରଉପକାରୀ ହୋଇ ପାରିବ, ସେଇ ଏକା ହେଇ ପାରିବ ଆମର ନେତା ।

ପ୍ରଶ୍ନ ଉଠିଲା - ଆମେ ତାଙ୍କର ଏଇ ଗୁଣ ବାହାର ଦେଖାଣିଆ କି ଭିତରର କେମିତି ଜାଣିପାରିବା ?

'ବାହାରେ ଦେଖାନ୍ତି ଅନେକ ଛାପ
ଭିତରେ କରନ୍ତି ଅନେକ ପାପ' ।

ଆଜିକାଲି 'ଭଦ ଭଦଳିଆ' ଭଦ୍ରଲୋକ ଦେଖା ଯାଉଛନ୍ତି ଅନେକ । ସେଇ ପୁରୁଣା କାଳିଆ ଆଦର୍ଶ କଳଙ୍କି ଖାଇ ଗଲାଣି । ଆମେ ଯା ଦ୍ୱାରା ଠକି ଯିବାର ବହୁତ ସମ୍ଭାବନା ଅଛି । ଭାଇ ଆମେ କଥାଟାକୁ ଲୁଚେଇବା କାହିଁକି ? ଏବେତ ଅଫିସ୍ ବାଡି ସବୁଠି କମିଶନ ବେପାର ଚାଲି ଲାଣି । ତମକୁ ଆମେ ପ୍ରତିନିଧି କରି ପଠେଇଛୁ ତମେ ତମ ବୁଦ୍ଧିବଳରେ ଯାହା ଯାହା ଆଣିବ ତାର କୋଡିଏ ଭାଗ ଏକା ତମର । ବାକି ଅଶୀଭାଗରୁ ଦଶ ଭାଗ ଦପ୍ତରର, ଦଶଭାଗ ବୁଝାଶୁଝା କଲାଲୋକର ଆଉ ଦଶଭାଗ ମେଳା, ମଉଛବ, ଖାଅପିଅ ଇତ୍ୟାଦି ସମୂହ କାର୍ଯ୍ୟକ୍ରମ ପାଇଁ ଖର୍ଚ୍ଚ ହବ । ଅବଶିଷ୍ଟ ଥିବା ପଚାଶଭାଗ ସେଟା ଆମ ସର୍ବସାଧାରଣଙ୍କର । ଏତକ ସର୍ବସାଧାରଣଙ୍କ ଉପକାର ପାଇଁ ଗଡିଆ, ପୋଖରୀ, ରାସ୍ତାଘାଟ, ସ୍କୁଲ ଡାକ୍ତରଖାନା, ଇଲେକ୍‌ଟ୍ରି ଇତ୍ୟାଦି କାମରେ ଲାଗିବ । କ'ଣ ରାଜିତ ?

କାଦମ୍ବିନୀ ଦେବୀ ପ୍ରତିକ୍ରିୟା ପ୍ରକାଶ କରି କହିଉଠିଲେ - ଆଦୌ ନୁହେଁ । ଏମିତି ଗୋଟେ କାଳ୍ପନିକ ରାଜ୍ୟ କଥା କାହିଁକି ଭାବୁଛନ୍ତି । ବିଲେଇକୁ ହାତକାମୁଡା ଶିଖେଇଲେ ଆମରି କ୍ଷତି । ତମେ କହୁଚ ବିଲେଇ ରଖିବ ଶୁଖୁଆ । ଦବ ଦରକାର ହେଲେ ଅନ୍ୟମାନଙ୍କୁ ? ଦୁର୍ନୀତିକୁ ତମେ କ'ଣ ନିମନ୍ତ୍ରଣ କରି ନିଜ ଘର ଯାଏଁ ଡାକି ଆଣିବ ? ତାର ଶିକାର ହବ  ପ୍ରଥମେ ତମେ ।

ସଭାରେ ଥିବା କିଛିଲୋକ ଏକଥାର ସମର୍ଥନ ଜଣାଇଲେ - 'କାଦମ୍ବିନୀ ଦେବୀ ଠିକ୍ କହୁଛନ୍ତି ? ଆସିଲେ ଗୋଟେ ଅଦ୍‌ଭୁତ କଥା କହିବାକୁ ।'

ଅଶୋକ ଭାଇନା ପୁଣିକହିଲେ - ଆରେ ଭାଇ ଯିଏ ଦେଶକୁ ଉନ୍ନତି ଆଣିବ । ରାଜ୍ୟକୁ ଉନ୍ନତି ଆଣିବ । ଗାଁକୁ ଉନ୍ନତି ଆଣିବ ସେ ପରା ମଂଜୁର କରାଇ ଦଉଥିବା ଲୋକଙ୍କୁ କିଛି ନଦେଲେ କାଣିକଉଡିଟିଏ ବି ଆଣି ପାରିବ ନାହିଁ ? ତେଣୁ ଖୁବ୍ ପାଟିକରିବ ଘେରାଉ କରିବ ରାସ୍ତାରୋକୋ କରିବ । ଟ୍ରେନ୍ ଲାଇନ୍‌ରେ ଶୋଇବ । ଲୋକଙ୍କ ପାଇଁ କୁମ୍ଭୀର କାନ୍ଦଣା କାନ୍ଦିବ । ବଡ ନେତା କାନିରେ କିଛି ବାନ୍ଧିବ । ତାପରେ ଯାଇ ନିଜ ଇଲାକା ପାଇଁ ଯାହାକିଛି ଆଣିବ । ସେମିତି ଲୋକ ଆମର ନେତା ହେବାକୁ କିଏ ଅଛି ? କାଳନ୍ଦୀ ଭାଇତ ସବୁଠି ବଡ ପାଟିକରି କହିବ । ତାକୁ ନେତା ପଦ ଦିଆଯାଉ ।

ସଭା ମଝିରେ ଦଳେ ଠିଆ ହେଇ କହିଲେ - ସେ କଥା ହେଇପାରିବ ନାହିଁ । ନିର୍ମଳ ଭାଇଙ୍କର ଶାଖା ପ୍ରଶାଖା, ଡାଳପତ୍ର କିଛିନାହିଁ । ଚରିତ୍ରରେ ଅତିନିର୍ମଳ ।

ସବୁଠି ଗଳିପଶି କାମ ହାସଲତ କରିଦେଇ ପାରିବ । କୋଉ ବାଟେ ନା କୋଉବାଟେ ପଶି ଚୁପ୍ ଚାପ୍ ତମ ରକ୍ତ ଶୋଷି ଆଣିବ । ତାକୁ ନେତା କରାଯାଉ । ନହେଲେ ଆମେ ଏଇଠି ବସିଲୁ ।

ଆଉଦଳେ ଉଠିଲେ - ତମ ମାନଙ୍କର ଯଦି ଜଣେ ଜଣେ ନେତା ଅଛନ୍ତି; ତାହେଲେ ଅମରବି ଜଣେ ନେତା ଅଛନ୍ତି, - ସେ ହେଉଛନ୍ତି ଦେବବଲ୍ଲଭ ଦାଶ । ଯାହାର ଖାନ୍‌ଦାନି ଅଛି ପଇସାର ଅଭାବ ନାହିଁ କି ଲୋଭ ଲାଳସା ନାହିଁ । ତାଙ୍କ ଘରଦେଇ ଦେଖିବ, ମହାଜନ ମାନେ ଯା'ଆସ କରନ୍ତି । ତାଙ୍କ ପାଇଁ ସୁଯୋଗ ନାହିଁ । ଭାଗିଇଛା ଦେଶ ଜାତିର ସେବା କରିବା । ରଜାଛୁଆ କେବେ କ'ଣ ଭିକାରି ହୋଇଯିବ ?

ବହୁବାକ୍ ବିତଣ୍ଡା ଭିତରେ ନେତା ବଛା ହୋଇପାରିଲା ନାହିଁ । ତିନିଚାରି ଦିନ କାଳ କଥା କଟା କଟି ଚାଲିଲା । ନିଜ ନିଜର ବଡପଣରେ ସଭାଜନେ ଅଡିରହିଲେ । ଶେଷକୁ କଥାଟା ଯାଇ ଏକପ୍ରକାର ଗୋଳମାଳରେ ବଦଳିଯିବାକୁ ଲାଗିଲା ।

ବସିଥିଲେ ଏଯାଏଁ - ବୋଧିଦ୍ରୁମ ନାୟକ । ସବୁ ଦେଖୁଥିଲେ । ଶୁଣୁଥିଲେ ପଦେବି ମୁହଁ ଖୋଲି ନଥିଲେ ଶେଷଯାଏ । ବୟସରେ ଅଶୀତିପର । ଥର ଥର କଣ୍ଠରେ କହିଲେ - 'ଆରେ ପିଲାଏ ! ମୋର ଗୋଟାଏ ପ୍ରସ୍ତାବ ଅଛି ଶୁଣ ! ଗୋଟାକୁ ଗୋଟାଏ ବୋକା ! ଆରେ ତମର ଏଯାଏଁ ସ୍ମରଣ ପଡିଲା ନାହିଁ ଯେ- ତମ ବଂଶ ଲୋପ କରିଦେବାକୁ ଯାଉଛି ମଣିଷ । ଏତେ ବେଳେ ଏକାଠି ହବ କ'ଣ' ତମ ଭିତରେ ବାଡିଆ ପିଟା ହଉଚ ନେତାହବାପାଇଁ । ଆଗ ଥିଲେତ ତମେ କାହାର ନେତା ହବ କି ତମର କିଏ ନେତା ହବ ? ହଇରେ କୁମ୍ଭୀର ନେଇ ଏଣେ ମଝିଗଣ୍ଡରେ ପକେଇଲାଣି, ସେଣେ ପୁଅ କହୁଚି କ'ଣନା ମୋତେ ଆଣ୍ଡିଏ ପାଣି। ନେତାପାଇଁ ଲଢେଇ କରି ଏ ଘରଟାକୁ ଉଜାଡି ଦବନା କଅଣ ? ବଞ୍ଚିରହି ଥେଲେ ତ ନେତା ବଛାବଛି ।

ସଭିଏଁ ଚୁପ୍ ଚାପ୍ । ସଭାଟା ଯାକ ସଭିଏଁ ଭାବୁଥିଲେ - ଯେମିତି ନିଜେ ଜଣେ ଜଣେ ଦୋଷୀ , ନେତା ହେବାକୁ ଇଚ୍ଛାକରୁଥିବା ନେତାର ପକ୍ଷ ଧରି ପାଟିକରୁଥିବା । ନେତା କେମିତି ହେଇଥିବ ଭାବୁଥିବ । ନେତା କେମିତି ହେଇଥିବା ଭାବଚିନ୍ତି କହୁଥିବା ସବୁ ଶ୍ରେଣୀର ସଭାସଦ୍ ତୁନିହୋଇ ରହିଗଲେ । ବିଲେଇ ଛୁଆଟେ ବି ନାହିଁ ପାଟି କରିବ । ସଭାସ୍ଥଳ ଗମ୍ଭୀର ।

ବୃଦ୍ଧ ବୋଧିଦ୍ରୁମ ପୁଣିକହିଲେ - ତମେ ସବୁତ ଟୋକାଟାକେଳିଆ ତଟ୍ଟୁ ଘୋଡାଖିଆ । ବୁଢାମାନେ ଆଖିରେ ଅଚଳ ଦୋଅଣି ମରହଟ୍ଟିଆ । ଆମବେଳେ କୋଉ କଥାରେ ଏତେ ଟଣା ଓଟରା ନଥେଲା। କଳିଝଗଡା, ତାକତକ୍ୟ କି ମନ

ଅମେଳ ନଥିଲା । ଏକ ସ୍ୱର ସର୍ବମଙ୍ଗଳ ଜଗନ୍ନାଥ । ଧର୍ମକୁ ଚାହିଁ ଆମେ କହିଦେଲୁ ଯିଏ ନେତା ହେଲା ସିଏ ବି ଧର୍ମକୁ ଡରି କାମକରୁଥିଲା । ନକଲେ ତା ଧରମ ତାର । ଧର୍ମ ଦଣ୍ଡରେ ସେ ଧରାପଡିବ । ଲୋକଙ୍କୁ ଠକିଲେ ସେ ନର୍କ ଭୋଗିବ । ହଉ ମୋର ଗୋଟେ କଥା ଶୁଣିବ ?

ସଭାରେ ଥିବା ସଭିଏଁ ହଁ ମାରିଲେ ।

ବୋଧିଦ୍ରୁମ ମଉସା କହିଲେ - ଆଚ୍ଛା ଆମ ଏ ଶାଳନ୍ଦୀକୁ ନେତା ପଦ ଦେଲେ କେମିତି ହୁଅନ୍ତା ? ସମିଙ୍କଠୁ ଉଚ୍ଚା ତାଗଡା ଅଛି । ବେଶ୍ ମୋଟାସୋଟା ଫସଦିଆ । ଟିକେ ଭଡ ଭଡିଆ ସିନା ଭାରି ବିଚକ୍ଷଣ । ଏଥର ଧର୍ମକୁ ଚାହିଁ ତାକୁ ନେତା ପଦ ଦେଇଦିଅ, ଦେଖିବା ସେ କ'ଣ କରୁଚି । ସେ ଏକା ଆମ କଥା ଆମ ଇଚ୍ଛା ନେଇ ଉପର ମଣିଷ ମାନଙ୍କ ସାଥୀରେ କଥାହଉ । କିଛି ନ କଲେ ଆରଥରକୁ ବିଦା । ଆଉ ଶୁଣିବାର ନାହିଁ । ଓ ?

ଏକ ସ୍ୱରରେ ସଭିଏଁ ଖୁସିରେ ତାଳିମାରି ଉଠିଲେ ।

ଶାଳନ୍ଦୀଟିକେ ଅଲଗା ରକମର । ତାର ପର ଆପଣା ନାହିଁ । ସବୁଦଳରେ ତା ନିଜ ଲୋକ ଅଛନ୍ତି । ସେ ସବୁଦଳର । କେହିତାକୁ ବିରୋଧ କରିବେ ନାହିଁ । ତା କାମ ନିଶ୍ଚୟ ହବ । କୋପେବର, ନଇଲେ ତପେ ବର ।

ସଭା ସରିଚି କି ନାହିଁ । ସଂଜ ଦିଘଡି ସରିକି କିଛି ଲୋକ ଆସି ଗୋଟେ କ'ଣ ମେସିନ୍ ଆଣି ବସାଇଲେ ଶାଳନ୍ଦୀ ମୂଳରେ। କାଟି ପକାଇଲେ ନିର୍ବିକାର ଭାବେ । ଜୀବନ ମରଣ ବେଳା ସେ ଆଉ କ'ଣ କରନ୍ତା ? ନେତା ହେଲା ବୋଲି ସିନା ତା ଚେରମୂଳ ଉପାଡି ଦେବାକୁ ଲୋକ ଲାଗିଗଲେ । ଅନନ୍ୟୋପାୟ ହୋଇ ସେ ମାଡିବସିଲା ମେସିନ୍ ମାଲିକକୁ। ଯିଏ ଅଦୂରରେ ଠିଆ ହୋଇ ନିର୍ଦ୍ଦେଶ ଦଉଥିଲା କେମିତି ଚଟାପଟ୍ ସଫା କରିଦେବାକୁ ହେବ ଆମ ବଂଶ ପରିବାର ।

ସକାଳର ତାଜାଖବର ବାହାରିଲା ତା'ପରଦିନ ପ୍ରତ୍ୟେକ ସମ୍ବାଦପତ୍ରରେ - "ଜଙ୍ଗଲ ପଦା ! ଗଛପଡି ଜଙ୍ଗଲ ମାଫିଆ ଡନ୍‌ର ଅକାଳ ମୃତ୍ୟୁ । ଅନେକ ଗୋପନ ତଥ୍ୟର ସନ୍ଧାନ। ଏଇକାଠ ଚୋରୀରେ ବହୁ ବଡ ବଡ ନେତାଙ୍କର ହାତଥିବାର ଅନୁମାନ। ପଢନ୍ତୁ ! !"



## ପୁଅ

ଆତ୍ମଶ୍ଲାଘା, ଅବଶୋଷ ଓ ଅସହାୟତା ଲୋକଟାକୁ ଜିଦ୍‌ଖୋର କରିଦେଇଥିଲା । ନିଜଉପରୁ ଭରସା ତୁଟାଇ ସେ ହୋଇସାରିଥିଲା ଚିଡ଼୍ ଚିଡ଼ା ପ୍ରକୃତିର । କଥା କଥାକେ ବାହାରୁଥିଲା ତା' ଭିତରୁ ଉତପ୍ତ ତରଳ ଲାଭା । ପ୍ରତିମୁହୂର୍ତ୍ତରେ ପୋଡ଼ି ପାଉଁଶ କରି ଦେଉଥିଲା ତାର ଯେତେକ ସ୍ୱପ୍ନ, ସମ୍ଭାବନା, ଆଶା ଓ ଆଶ୍ୱସନା ।

ମଣିଷ ଥରେ ବିଶ୍ୱାସ ହରାଇଦେଲେ ତା' ଆଖିରେ ସବୁତୁଚ୍ଛ ହୋଇଯାଏ । ସୁଅ ବେଗରେ ବହିଯାଉଥାଏ ନଈ । ପବନ ବେଗରେ ବହିଯାଉଥାଏ ମୌସୁମୀ ବୟସ ବେଗରେ ବହିଚାଲିଥଯାଏ ଜୀବନ । ସଫଳତାର ମାପ କାଠିରେ ମପା ଚାଲିଥାଏ ସଭ୍ୟତା ।

ତମକୃତି ତମର ପରିଚୟ
ତମ ପରିଚୟ ତମର ପ୍ରତିଷ୍ଠା
ତମ ପ୍ରତିଷ୍ଠା ତମ ବଂଶାନୁଚରିତ
ତମ ଦେଶ, ତମ ଜାତି, ତମ ମାଟିର ତମେହିଁ ଗର୍ବ ଓ ଗୌରବ ।

ଛାତି ଭିତରଟା ଖିନ୍‌ଭିନ୍ ହୋଇଯାଉଥାଏ ଜୀବନର । ଦୁଃଖ ଓ ଅନୁଶୋଚନା ତାକୁ ବାକ୍‌ରୁଦ୍ଧ କରି ଦେଉଥାଏ । ତାକୁ ଦୃଶ୍ୟମାନ ହେଉଥାଏ ।

ଦୀପର ଶିଖା ନିଜେ ଆଲୋକିତ ହେବାଠାରୁ ଲୁଖାକୁବି ଆଲୋକିତ କରେ । ଧୂପ ଦୁର୍ବାସନା ଦୂରକରେ । କୋଠରୀକୁ ବାସନାରେ ଭରି ଦେବାଠୁ ନିଜେ ସୁବାସିତ ହୁଏ । କାଠିକୁ ବି ସୁଗନ୍ଧିତ କରି ପକାଏ ।

ପତ୍ର ଆଉ ଫୂଲ ଚିହ୍ନେଇ ଦିଏ ତାର ଡ଼ାଳ, ଡ଼ାଳ ଚିହ୍ନେଇ ଦିଏ ତାର ମୂଳ ଆଉ ମୂଳ ହିଁ ପରିଚିତ କରାଏ ତା' ମାଟି । ତମେ ସେମିତି ତମପରିବାର , ପିତୃପୁରୁଷ ଓ ବଂଶଧରମାନଙ୍କର ଏକ ପରିଚିତ ସର୍ବନାମ ।

ସୌରଭ ସବା ସାନ ପୁଅ ତା'ର ପରିଚୟ କି ନୁହେଁ ଭାବୁ ଭାବୁ ସେ ନିଜେ ତା' ବାପା ଅଜାମାନଙ୍କର ପରିଚୟ ଭୁଲିଯାଏ । ସନ୍ଦିହାନ ବି ହୋଇପଡ଼େ ।

ତା'ର ଝାପ୍‌ସା ମନେ ପଡୁଥାଏ-ରୋମାନ୍ ସମାଜରେ ବାପାର ଅଖଣ୍ଡ କ୍ଷମତା କଥା । ରାଜ୍ୟରେ ରାଜା ଆଉ ପରିବାରରେ ବାପା ଏକାଧିକାର ପ୍ରାପ୍ତ । ପୁଅ ଉପରେ ବାପରସବୁ ପ୍ରକାର ଅଧିକାର । ବାପ ବିଗିଡ଼ିଗଲେ ପୁଅକୁ ଯେ କୌଣସି ଦଣ୍ଡ ଦେଇ ପାରିବ । ପୁଅ ସବୁବେଳେ ସେଥିପାଇଁ ରହୁଥିଲା ବାପାନୁଗତ ପ୍ରାଣ । ବାପା ଯାହା ଇଛା କରିବ ପୁଅକୁ ସେୟା ହିଁ ହେବାକୁ ପଡ଼ିବ ନଚେତ ରକ୍ଷା ନାହିଁ । ଅପିତୁ ସେ ଭାବୁଥିଲା ଇଂଲଣ୍ଡ କଥା । କୌଣସି ପୁଅ କେବେ ବାପା ନାମରେ ପରିଚିତ ହେବାକୁ ପସନ୍ଦ କରେ ନାହିଁ । ବାପର ଯେତେକ ସ୍ଥାବର ଅସ୍ଥାବର ସମ୍ପତ୍ତି ସେତକ ବଡ଼ ପୁଅର । ଅନ୍ୟ ପୁଅମାନଙ୍କର ଲେଶ ମାତ୍ର ଅଧିକାର ନାହିଁ ତହିଁରେ । ହେଲେ ବଡ଼ ପୁଅବି ବାପର ସମ୍ପତ୍ତି ଭୋଗ କରେ ନାହିଁ । କଲେ ତା' ପାଇଁ ଅପମାନ ଓ ଅସମ୍ମାନ । ଇଂଲଣ୍ଡର ପୁଅ ନିଜ ଗୋଡ଼ରେ ଠିଆ ନ ହେବା ଯାଏଁ, ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି ନ କରିବା ଯାଏଁ , ବସା ବାନ୍ଧେ ନାହିଁ , ତେଲ ଲୁଣ କିଣେ ନାହିଁ , ଘରକରେ ନାହିଁ କି ଘରଣୀ ଆଣେ ନାହିଁ ।

ଆଜି ଭାରତ ବର୍ଷର ପୁଅମାନଙ୍କର ପରିଚୟ କିଏ ? ଧନୁହିଁ ବାଣର ପରିଚୟ ହେଲେ ଧନୁରୁ ବାହାରୁଥିବା ବାଣ ଧନୁର ନୁହେଁ ।

ଅସମାହିତ ପ୍ରଶ୍ନବାଣରେ ଜର୍ଜରିତ ହୋଇ ଉଠୁଥାଏ ଜୀବନ । ଅଧ୍ୟାପକ ଜୀବନ ସରକାର । ବରିଷ୍ଠ ଅଧ୍ୟାପକ । ବେସରକାରୀ ମହାବିଦ୍ୟାଳୟର ଅଧ୍ୟାପକ । ପାଞ୍ଚ ଛଅ ମାସରେ ଥରେ ଖାଇ ଚାତକ ପରି ଶୂନ୍ୟ ଆକାଶକୁ ଚାହିଁ ରହୁଥିବା ଅଧ୍ୟାପକ । ଚାକିରୀକାଳ ମଧ୍ୟରେ କୌଣସି ରୋଗ ବୈରାଗଜରେ ପଡୁନଥିବା ଅଧ୍ୟାପକ । ରୋଡ଼ ସାଇଡ୍ ଟିଚିଂ ସପ୍‌ର ସେଲ୍‌ସମ୍ୟାନ କାମ କରୁଥିବା ଅଧ୍ୟାପକ । ବାକି ମାଗିବାକୁ ଯାଇ ବଜାରରୁ ଖାଲି ବ୍ୟାଗ୍ ନେଇ ଫେରୁଥିବା ଅଧ୍ୟାପକ । ଋଣ ଆଣିବାକୁ ଯାଇ ବ୍ୟାଙ୍କ୍ ଦ୍ୱାରେ ଘଣ୍ଟା ଘଣ୍ଟା , ଦିନ ଦିନ ,ସପ୍ତାହ ସପ୍ତାହ କଟେଇ ନିରାଶ ହୋଇଫେରୁଥିବା ଅଧ୍ୟାପକ । କି' କଷ୍ଟରେ, କି ମାର୍ମାନ୍ତିକ ସନ୍ତୁଳନରେ ବିତେଇ ଆସିଛି ତାର କୂଳ ଲଙ୍ଘୁଥିବା ଉଚ୍ଛୁଳା ଯୌବନର ନଈ , ସେ ଜାଣେ । ଅସହାୟତା , ଅଭାବ ଓ ଆତ୍ମଦହନ ତାକୁ କରି ଦେଇଥାଏ ଗୋଟାଏ ପଶୁ ।, ତାର ବିବେକ ହଜି ସାରିଥାଏ । ନୀରବତାର ଝଡ଼ରେ ସେ ନିଜକୁ ଅଭିସମ୍ପାତ ବାଡୁଥାଏ । ନିତି ପ୍ରତିଦିନ । ମୁହଁ ସାମ୍ନାରେ ସମାଜର ଶୁଖିଲା ସମ୍ମାନ ଓ ପଛପଟେ ଦୟନୀୟ ଜୀବନ ପ୍ରତି ଯେଉଁ ଅପମାନ ସେ ବୁଝି ପାରୁଥିଲା ବଡ଼ ଗୁମରରେ । ତାରି ଭିତରେ ଅଭାବ ଅନଟନର ପଙ୍କ ଫଟାଇ , କାଦୁଅ ଚକଟି ଠେଲି ପେଲି ଗଡ଼ିଚାଲିଛି ତାର ସଂସାରର ଚକ ।

ଅଧ୍ୟାପକ ଜୀବନର ଯେତେକ ସଞ୍ଚିତ ସମୟ, ସ୍ୱାର୍ଥ ଓ ଅର୍ଥ ସବୁତକ ବିନିଯୋଗ କରିଦେବାକୁ ଚାହେଁ ସେ ତା' ପିଲାଙ୍କ ପାଇଁ । କରିଚି ବି ।

ସଫଳତାର ସଢ଼ିରେ ଚଢ଼ିଲାବେଳେ ସେ ଯେତିକି ଆତ୍ମପ୍ରସାଦ ଲଭିଛି ଅସଫଳତାର କଣ୍ଟାରେ ପାଦ ପକାଇ ସେ ସେତିକି ଆତ୍ମସନ୍ତାପ ପାଇଛି । ମନେପଡୁଚି ତାର ସବୁ ଗୋଟି ଗୋଟି ।

ସାମ୍ବାଦିକ, ଶୁଭେଚ୍ଛୁ ଓ ସହୃଦ୍‌ମାନେ ଆସି ବେଢ଼ିଯାଇ ଥିଲେ । ନାନାଦି ପ୍ରଶ୍ନ ପଚାରିଥିଲେ । ଟେଲିଫୋନ୍ ଆଉ ଚିଠିରେ ଶୁଭେଚ୍ଛା ବାର୍ତ୍ତା ମିଳୁଥିଲା ମାଳକୁ ମାଳ ସେଦିନ । ଯେଉଁଦିନ ବଡ଼ପୁଅ ଗୌରବ ବାପ ଅଜାର ନାଁ ରଖି ମାଟ୍ରିକ ପରୀକ୍ଷାରେ ହୋଇଥିଲା ଫାଷ୍ଟ କ୍ଲାସ୍ ଫାଷ୍ଟ୍ । ଗୌତମ ହୋଇଥିଲା ଯୁକ୍ତ ଦୁଇ ବିଜ୍ଞାନ ପରୀକ୍ଷାରେ ଫାଷ୍ଟ୍‌କ୍ଲାସ୍ ସେକେଣ୍ଡ୍ । ଆଉ ଦିହିଁଙ୍କି ଦିହେଁ ଇଂଜିନିୟରିଂ ଓ ମେଡ଼ିକାଲ୍‌ରେ ଦଶଜଣଙ୍କ ମଧ୍ୟରେ ସ୍ଥାନ ଲାଭ କରି ଫ୍ରିରେ ସିଟ୍ ପାଇଥିଲେ । ଭଲ ବି କରି ପୋଷ୍ଟିଂ ପାଇଥିଲେ । ଏବେ ବଡ଼ପୁଅ ବମ୍ବେର ମ୍ୟାରାଇନ୍ ଇଂଜିନିୟର । ମଝିଆଁ ମାଙ୍ଗାଲୋର୍‌ରେ ଡ଼ାକ୍ତର । ଫରେନ ଯିବା ପାଇଁ ଦୁଇଥର ଅଫର ମିଳିଲାଣି ଯାଇ ନାହିଁ । ଆଉ ଦୁଇବର୍ଷ ପରେ ଯିବ । ମୋ କଥା ମାନି ରିଫ୍ୟୁଜ୍ କରି ଦେଇଚି । ତା' ତଳି ପୁଅ ଶ୍ରୀମୟ ହୋଉଚି ଗୋଟେ ରାଜନୀତିକ ଦଳର ନେତା । ଜୀବନରେ କେବେ ସେ ଭଲ ଛାତ୍ର ନ ଥିଲା କି ହୋଇ ପାରିଲା ନାହିଁ । ପିଲାଟି ଦିନରୁ ଦଶଜଣଙ୍କ ମଝିରେ ଜଣେ ହେବା, ଦଳ ଗଢ଼ିବା, ଦଳ ନେଇ ବନ୍ୟା, ବାତ୍ୟା ମରୁଡ଼ିରେ କାମ କରିବା ଲୋକଙ୍କୁ ସାହାଯ୍ୟ କରିବା ଥିଲା ତାର ନିତି ଦିନିଆ ପ୍ରୋଗ୍ରାମ୍ । ଏ ନେଇ ପଢ଼ିପାରିଲା ନାହିଁ ସେ । ଦି' ଦି'ଥର ଫେଲ ହେଲା । ପଢ଼ା ଛାଡ଼ି ଏବେ ସେ ହେଇଚି ଗୋଟେ ନେତା । ରୋଜ୍ ରୋଜ୍ ବାହାରୁଛି ତା ନାଁ ପେପରରେ । ତା ନେଇ ଆମେ ଘରେ ଟିକେ ଶାନ୍ତିରେ ବି ରହି ପାରୁନୁ । । ଫି ଦିନ ଲୋକ । ପାଟିତୁଣ୍ଡ ଝଂକାଜୋରୀ, ଝାମେଲା । କହି ଦେଇଚି ସଫା ସଫା । ଏଠି ଗହଳି କରିବା ଅପେକ୍ଷା ପଳାଇ ଯା ନିଜ କ୍ୱାଟରକୁ । ଚାଲିଗଲା ସେ । କହିବାର ଦି' ତିନିଦିନ ପରେ । ତା'ନେଇ ଦୁଃଖ କି ଅବଶୋଷ କେବେ ଆସି ନାହିଁ ଜୀବନରେ । ସେ ତ ଦେଖୁଛି ଗୋଟାଏ ଏମ୍.ଏଲ୍.ଏ ପୁଅ ଆଗରେ କୁଆଡ଼େ ହଜି ଯାଉଛନ୍ତି ତାର ଇଂଜିନିୟର୍ ଡ଼ାକ୍ତର ପୁଅମାନେ । ସେମାନଙ୍କ ଅଧ୍ୟବସାୟ, ଜ୍ଞାନ ଗାରିମା କୁଆଡ଼େ ଯାଉଚି ଶ୍ରୀମୟର ଜନତାଙ୍କ କୁହାଟରେ ?

ସମ୍ବାଦପତ୍ର ପୃଷ୍ଠରେ । ତା'କୀର୍ତ୍ତି ,କୃତି ଓ କରାମତି ବାହାରୁଚି ଗଦା ଗଦା ସବୁଦିନ । ତା'କଲମ ମୁନରେ ଲେଖା ହେଉଚି କେଇଜଣ ବ୍ରିଲ୍ୟାଣ୍ଟ ଅଫିସରଙ୍କର ଭାଗ୍ୟ । ଦଳୀୟ ଧାରାରେ ଯେ କାମ ନକଲା ତାର ଭାଗ୍ୟ ବାମହେଲା ଜାଣ । ନିଜଦ୍ୱ

ହରାଇ ନିରକ୍ଷର , ମୁର୍ଖ ନେତାଙ୍କ ହଁରେ ହଁ ମିଳାଇଲେ ଯାଇ ତମେ ହେବ ଭଲ ଡ଼ାକ୍ତର, ଭଲ ଇଂଜିନିୟର୍ ଓ ଭଲ ଅଫିସର । ନହେଲେ ତମେ ବୁଲୁଥିବ ଏ ଷ୍ଟେସନରୁ ସେ ଷ୍ଟେସନ୍ । ଏ ବଜାରରୁ ସେ ବଜାର ।

ଜୀବନ ଭାବୁଥାଏ-'ଆରେ ଏକି ଯୁଗ ? ଦେଶରେ ସବୁ କ୍ଷେତ୍ରପାଇଁ କ୍ୱାଲିଫିକେସନ୍ ଦରକାର । ତମେ ଗୋଟେ ପିଅନ ହୁଅ କି ଡ୍ରାଇଭର-ସଭିଙ୍କର ଶିକ୍ଷାଗତ ଯୋଗ୍ୟତା ଦରକାର ପୁଣି ଦକ୍ଷତା ଭିତିରେ ଅଥଚ ଯିଏ ସାରା ଦେଶକୁ, ସବୁ ବିଭାଗକୁ ଚଳାଇବ ତା' ପାଇଁ ଶିକ୍ଷା ଲୋଡ଼ା ନାହିଁ କି ଦକ୍ଷତାର ଆଦୌ ଆବଶ୍ୟକତା ନାହିଁ । ସେଥିରେ ପୁଣି ସେ ଲେଖିବ ଚରିତ୍ର ପଂଜିକା, ଜଣେ ଦକ୍ଷ ଅଫିସରର ?

ତାର ମନେପଡୁଥାଏ-'ଯେଉଁଦିନ ଗାଳିଗୁଲଜ କରୁଥିଲା ଶ୍ରୀମୟ ଜଣେ ସଚ୍ଚୋଟ ଇଂଜିନିୟରକୁ ତା' ସାମ୍ନାରେ ।

'ଠିକ୍ ଅଛି । ପାଣିରେ ରହି କୁମ୍ଭୀର ସଙ୍ଗେ ବାଦ ? ଲୋକେ ଯାହା ଚାହିଁବେ ଆମକୁ ତାହାହିଁ କରିବାକୁ ପଡ଼ିବ । କେହି ଜଣେ ଆପଣଙ୍କ ଫେବରରେ କହୁନାହିଁ । ତା' ହେଲେ ଆପଣ କ'ଣ ପାଇଁ ଏଠି ରହିବେ ? ଦଳୀୟ ଲୋକେ ଆମକୁ କ'ଣ ପାଇଁ ଜିତେଇ ଆଣିଥିଲେ ?'

କାମ ନ କରି ସେମାନେ ମୋତେ ବିଲ ଟାଣିବାକୁ ବାଧ୍ୟ କରୁଛନ୍ତି ସାର । ପଚିଶ କି ତିରିଶ୍ ପର୍ସେଣ୍ଟ ବି କାମ ହେବ ନାହିଁ ? ମୁଁ କଅଣ ଦେଖାଇବି ?

'ଅଯୋଗ୍ୟ କାହାଁକା । ନଦେଖେଇ ପାରିଲେ ଏଠୁ ବେଡ଼ିଂ ବାନ୍ଧ । ମୁଁ ତମ ଚିଫ୍ ଇଂଜିନିୟରକୁ ଡ଼ାକି କହି ଦେଉଚି ।'

ଏଥିରେ କ୍ଷୁବ୍ଧ ହୋଇ ମୁଁ ଶ୍ରୀମୟକୁ ଆକଟ କରିଥିଲି-ଆରେ ପୁଅ ଏଟା ଠିକ୍ ହଉନି ? ଉତ୍ତରରେ ଶ୍ରୀମୟ କହିଥିଲା -ବାବା ଆପଣଙ୍କ ଯୁଗ ଅଲଗା । ଆମେ ତ ପୁଣି ଲୋକଗୁଡ଼ାଙ୍କୁ ନେଇ ଚଳିବୁ ?ନା ପୁଅ ନା। ଏ ହେଉଛି ଦେଶ ପାଇଁ ରୀତିମତ ସଂଗଠିତ ଠକାମୀ। ଦେଶ ଦ୍ରୋହୀ କାମ । ବାହାରକୁ କେହି ଜାଣୁନି ସିନା. ତୋ ବିବେକ ତୋତେ କେମିତି ଅନୁମତି ଦଉଚି ? ଦୁଃଖ ଓ ଅବଶୋଷରେ ଭାରାକ୍ରାନ୍ତ ହୋଇ ଜୀବନ ଛାଡ଼ିଦେଉଥିଲା ସେ ଜାଗା। କେବେବି ଏ ଭଳି କଥା ଶୁଣିବାକୁ ଯତ୍ନ କରୁନଥିଲା । ହେଲେ ତା' ଛାତିରେ ଗୌରବ, ଗୌତମ କି ଶ୍ରୀମୟ ପାଇଁ କେବେ କଣ୍ଟା ଫୁଟିନି। ଯନ୍ତ୍ରଣା ମିଳିନି। ଯାତନା ସହିନି । ଯେତିକି ଫୁଟିଚି ସୌରଭ ପାଇଁ ।

ସୌରଭ ଭଲ ଛାତ୍ର ନହେଲେ ବି ଏକଦମ ମନ୍ଦ ନୁହେଁ । ମଧ୍ୟମ ଶ୍ରେଣୀର । ଜୀବନର ଇଚ୍ଛା ସେ ହେଉ ଜଣେ କଂପାନୀ ମ୍ୟାନେଜର୍ । ମ୍ୟାନେଜମେଣ୍ଟ କୋର୍ସ

ସହିତ ସଫ୍ଟ ୱେୟାର କ୍ୱାଲିଫାଇ କରି ସେ ହେଉ ଜଣେ ଇଣ୍ଟର ନ୍ୟାସନାଲ୍ କଂପାନୀର ଦକ୍ଷ ମ୍ୟାନେଜର୍ । ହେଲା ନାହିଁ ।

ଆଖି ସାମ୍ନାରେ ଚୁରମାର୍ ହୋଇଗଲା ସ୍ୱପ୍ନ ତାର । ଏ ନେଇ କେତେବାର ଉଠିଛି ଝଡ଼ ତା' ଘରେ । ମହାବାତ୍ୟା ଧାରଣ କରିବା ଆଗରୁ ଥମି ଯାଇଛି । ଏ ମହାବାତ୍ୟାକୁ ନିଷ୍କ୍ରିୟ କରିବାରେ ବଂଧୁ ସଂଗ୍ରାମର ଭୂମିକା କମ ନୁହେଁ ।

ସଂଗ୍ରାମ ମୋର ବଂଧୁ, ସହୃଦ, ଶୁଭେଚ୍ଛୁ ଓ ସାଥୀ । ରାଜନୀତି ତାର ପେଶା । ସେ ସ୍ୱପ୍ନ ଦେଖିବାକୁ ଭଲପାଏନା । ସଂଗ୍ରାମ କରିବା ଶିଖିଛି । ସେ କାମରେ ବିଶ୍ୱାସ କରେ। କାମନାରେ ନୁହେଁ । ପିଲାଟି ବେଳୁ ସେ ବୁଝିବା ଶିଖିଛି , ଜୁଝିବା ଶିଖିଛି, ତୁଟିବା ଶିଖି ନାହିଁ । ମୋତେ ବହୁତ ଥର ସେ ବୁଝାଇଛି-

"ଜୀବନ୍ ତୁ ଇମୋଶନାଲ୍ ହୋଇଯାଉଛୁ । ଭୁଲ କରୁଛୁ । ଏ ବୟସ ନୁହେଁ ତୋର ଇମୋଶନାଲ୍ ହେବା । ଆଜିକାଲି କୋଉ ପିଲା କାହାର ନୁହଁନ୍ତି । ତୁ ଯେତେ ଇଚ୍ଛା ସେତେ ପ୍ରେମ ଦେ, ସ୍ନେହ ଦେ, ସାହାଯ୍ୟ ଦେ କି ସହଯୋଗ ଦେ ମାତ୍ର ଆଶା ରଖନା କ'ଣ ଦେଇଥିଲୁ । ତାର ପ୍ରତିଦାନ କ'ଣ ? ତୋ ପ୍ରେମ ଦେଲୁ ବୋଲି ତୋ ବିଚାରଧାରା ତାଙ୍କ ଉପରେ ଲଦି ଦେନା। ତାଙ୍କୁ ତାଙ୍କ ବାଟରେ ଯିବାକୁ ଛାଡ଼ିଦେ । ମୁକ୍ତ ଆକାଶର ବିହଙ୍ଗ ସେମାନେ। ତାଙ୍କ ଶରୀର ତୋର ଅଧୀନ ବୋଲି ମନଟା କ'ଣ ତୋର ଅଧୀନ ?

ସ୍ୱପ୍ନ ଦେଖିବା ସେମାନଙ୍କର କାମ । ତୋର ନୁହେଁ ।

ତୁ ଅଯଥା ମନସ୍ତାପ ଭିତରକୁ ପଶି ନିଜର ମାନସିକ ସ୍ଥିତିକୁ ଅଶାନ୍ତ କରୁଛୁ କାହିଁକି ? ପୁଅ ପଢ଼ିଲେ ପଢ଼ିବ ନହେଲେ ନାହିଁ । ମୋ ପୁଅ ସୁରଜ ପଢ଼ିଲା ନାହିଁ । ବିଜିନେସ କରୁଛି କରୁ । ସାନ ପୁଅ ସଂଗୀତ ଶିଖୁଚି ଶିଖୁ । ମୋର ବି ବହୁତ ବଡ଼ ଖିଆଲ୍ ଥିଲା । ତାକୁ ପିଲମାନେତ ସାକାର କଲେ ନାହିଁ। ମୁଁ କାହିଁକି ବ୍ୟସ୍ତ ହେବି ?

ସେଦିନ ଜୀବନ୍ ବି ଶୁଣେଇ ଥିଲା ସରମନ୍ ସଂଗ୍ରାମକୁ- 'ମୁଁ ତୋ କଥା ବୁଝି ପାରୁଚି ସଂଗ୍ରାମ । ତୋ ଚିନ୍ତାଧାରା ମୋ ଚିନ୍ତାଧାରା ପୁରା ଅଲଗା । ତୁ ଜାଣୁ ଯୁବକମାନେ ସ୍ୱପ୍ନ ପ୍ରିୟ । ସ୍ୱପ୍ନ ପାଇଁ ସେ ଯାହା ତାହା କରିପାରେ । ପାହାଡ଼ ଚଢ଼ିବା,ସମୁଦ୍ର ପହଁରିବା, ଭରା ନଈ ଛାତିରେ ଲମ୍ଫ ପ୍ରଦାନ କରିବା, ଜଳନ୍ତା ନିଆଁ ହୁଳାକୁ ପାଟିରେ ପୁରାଇବା , ହାତରେ ଧରିବାକୁ ପଛାଏ ନାହିଁ ସେ ।

ଯୁବକ କେବେ ପରିଣାମ,ପରିଣତି ଚିନ୍ତେ ନାହିଁ । ସେ ପ୍ରସାରମୁଖୀ ପ୍ରତିଷ୍ଠାକାମୀ । ଆଜିକାଲି ଯୁଗ ବାବତରେ ତୁ ଅଜଣା ନୋହୁଁ ।

ଘରେ ଘରେ ଆଜି ଇଡ଼ିୟଟ୍ ବକ୍ସ । ଘର ବାହାରେ ଟେକା ବାଡ଼ି ଖେଳ । ଯାହାକୁ ଆମେ ପିଲାଦିନେ ଗୁଲି ଦଣ୍ଡା କହୁଥିଲେ । ପ୍ରତି ଛକରେ ଖଟି । ପ୍ରତି ଖଟିରେ ଭାଙ୍ଗ, ଗଂଜା, ଡ୍ରଗ, ପିଲ୍ କାରବାର । ପ୍ରତି ଟୋକାଦଳରେ ମାଫିଆମାନଙ୍କର ଅବାଧ ପ୍ରବେଶ -ପ୍ରସ୍ଥାନ ।

ଯୋଉଠି ଟୋକାଦଳ ସେଠି ରାଜନୀତିକ ଲୋକ । ମହୁମାଛି ଭଅଁର ପ୍ରଜାପତି ପରି ଟୋକାଙ୍କ ଚାରିପଟେ ଚକ୍କର କାଟିବା ସେମାନଙ୍କର କାମ । ମିଥ୍ୟା ପ୍ରତିଶ୍ରୁତି ଦେଇ, ପ୍ରତିଜ୍ଞା କରି ସେମାନେ ପଟେଇ, ପାଳେଇ ଥାନ୍ତି ଟୋକାମାନଙ୍କୁ । ଟାଣି ନେଇ ସମସ୍ୟା ଧରାଇ ଦିଅନ୍ତି । ଚାହୁଁ ଚାହୁଁ ଜୀବନର ବାଟ ଭାଙ୍ଗିଯାଏ ତାଙ୍କର । ଦେଖୁନୁ ଏଇ ଆମ ଶ୍ରୀମୟ କଥା ।

ଯୁବା ବେଳ ଏକ ଉଛୁଳା ନଈ । ଉତୁରା କ୍ଷୀର । ତାକୁ ନଜଗିଲେ ସେ ନଷ୍ଟ ଯିବା ହିଁ ସାର ।

ଜୀବନର ମନେପଡୁଚି ଯେଉଁ ଦିନ ସୌରଭକୁ ଧିକ୍କାର କରିଥିଲା- ଆରେ ସୌରଭ ଖେଳଛାଡ଼ି ପାଠପଢ଼ାରେ ମନ ଦେ । ବିରାଟ ଭବିଷ୍ୟତ ପଡ଼ିଚି ତୋଆଖି ଆଗରେ । ତାକୁ ଫାଙ୍କି ପାରିବୁ ନାହିଁ । ଏବେ ନଜର ନ ଦେଲେ ପରେ ପସ୍ତେଇବୁ ।

ପୁରୁଷର ବଳ ତା'ର ପକେଟ ପଇସା । ତା ମଗଜର ପ୍ରତିଭା । ତା ସମାଜର ପ୍ରତିଷ୍ଠା ।

କେତେ ଦିନ ତୁ ତୋ ବାପା ନାଁରେ ଭାଇମାନଙ୍କ ନାଁରେ ପରିଚିତ ହେବୁ ? କୋଉଯାଏଁ ତୁ ସେମାନଙ୍କଠୁଁ ହାତପାତି ନେଇ ଚଳିବୁ । କ'ଣ ଅଛି ତୋର ଯାହାକୁ ନେଇ ତୁ ଗର୍ବ କରିବୁ ନିଜର ବୋଲି ଦେଖାଇବୁ ତୋ ପୁଅ ନାତିମାନଙ୍କୁ ? ମୁଁ ବୁଝିପାରୁନି ତୁ ପାଠପଢ଼ା ଛାଡ଼ି ଏତେ ଓ୍ୱେ ଓ୍ୱାର୍ଡ୍ ହୋଇଚୁ କ'ଣ ପାଇଁ ? ଭାଇମାନଙ୍କ ପାଖରେ ଛୋଟ ହୋଇଯିବୁନାହିଁ ?

ନୀରବ ଓ ନିଶ୍ଚଳ ମୁଦ୍ରାରେ ଠିଆ ରହିଥିଲା ସେଦିନ ସୌରଭ । ତା ଭିତରେ ଯେ କି ପ୍ରକାର ପ୍ରତିକ୍ରିୟା ସୃଷ୍ଟି ହୋଇଥିବ ସେ ଜାଣେ । ବୁଝା ପଡୁଥିଲା- କଳା ଘୁମନ୍ତ ମେଘ ମେଦୁର ଆକାଶ ବର୍ଷଣ ମୁଖର ହେବା ପ୍ରାକ୍ କାଳରୁ ହିଁ ନିସ୍ତେଜ ହୋଇ ପଡ଼ିଥିଲା । ତୀବ୍ର ବିଦ୍ୟୁତ ଚକ୍ରାଘାତ ଭିତରେ ଚରିଯାଉଥିଲା ଧିକ୍କାରର ମେଘଦୁନ୍ଦୁଭି ପରି ବିଷ । ପ୍ରତ୍ୟୁତ୍ତର ପାଇଁ ଅନେକ ଶବ୍ଦ ଥିଲେ ହେଁ ତା' ଭଣ୍ଡାରରେ ସେ ସେଥିରୁ କାଣିଚାଏ ବିନିମୟ ନ କରି ପ୍ରସ୍ଥାନ ଘେନିଥିଲା ସ୍ୱସ୍ଥାନରୁ । ଜୀବନ ଶଂକି ଯାଇ ଥିଲା । ଏକଥା ଶୁଣି ସଂଗ୍ରାମ ବି ବିଚଳିତ ହୋଇ ପଡ଼ିଥିଲା ପ୍ରତିଧିକ୍କାର

କରିଥିଲା ଜୀବନକୁ-'ଆଘାତ ମଣିଷକୁ ଭାଙ୍ଗିଦିଏ ନହେଲେ ଗଢ଼ିଦିଏ । ତୁ ଛୋଟ ଛୋଟ କଥାରେ ଏତେ ସିରିୟସ୍ ହୋଇ ଯାଉଛୁ । ଏଥି ପାଇଁ ତୋତେ ଦିନେ ମୂଲ୍ୟ ଦେବାକୁ ପଡ଼ି ପାରେ ।

ବଂଧୁ ସଂଗ୍ରାମ ସିକ୍‌ଦାରର କଥା ମୋତେ ସେଦିନ ଚୁପ୍ କରି ଦେଲା । ବୋଡ଼ାସାପ ପରି ନିଜଲାଞ୍ଜ ନିଜେ ଛିଣ୍ଡାଇ ଖାଇଲି ପଛେ କିଛି କହିଲି ନାହିଁ । କବାଟ କିଳି ଭିତରେ ମୁଣ୍ଡ କଚାଡ଼ିଲି । ଅଶ୍ରୁ ଢ଼ାଳିଲି । କେହି ଜାଣିପାରିଲେ ନାହିଁ। ସୌରଭର ଯାହା ଯାହା ଦରକାର ହେଲା ଯୋଗାଇଲି। ତା' ସହ ସାଲିସ୍ କଲି । ତିନିଦିନର ନୀରବତା ପରେ ସେ ଉତ୍‌ଫୁଲ୍ଲିତ ହୋଇ ଉଠିଲା । ଖେଳକୁ ପେଶା କରିନେଲା । ପଢ଼ା ଛାଡ଼ି ଦେଲା । କଠିନ ପରିଶ୍ରମ କଲା । ଦିନ ରାତି ବ୍ୟାଟ୍ ବଲ୍‌ରେ ମାତି ରହିଲା । ଜିଲ୍ଲାୱାରୀ ଲିଗ୍ ମ୍ୟାଚରେ ଭଲ କଲା । ରଣଜୀ ଖେଳିଲା । ଆଜି ତା ଜୀବନର ପ୍ରଥମ ୱାନ୍‌ଡ଼େ ଇଣ୍ଟରନ୍ୟାସନାଲ୍। ଖେଳିବ ଇଂଲଣ୍ଡରେ ।

ଘରେ ସ୍ଥାନୀୟ, ପ୍ରାଦେଶିକ, ଜାତୀୟ, ଆନ୍ତର୍ଜାତୀୟ ସମ୍ବାଦ ପତ୍ର , ଟିଭି, ରେଡ଼ିଓ ଆଦି ବିଭିନ୍ନ ମେଡ଼ିଆର ଲୋକ। ସାରା ଦେଶରେ, ସଭିଙ୍କ ମୁହଁରେ ଗୋଟିଏ କଥା । ସୌରଭ ଆମ ଇଣ୍ଡିଆ ଟୋକା । ଆଜି ମାରି ଗଡ଼େଇ ଦେବ ଚୌକା ଆଉ ଛକା । ରେଡ଼ିଓ ଟିଭିରେ ପ୍ରଚାର ଚାଲିଛି । ପରିବାର ଗୋଟାକର ଫଟୋ ବାହାରିଛି । ଟିଭି ଆଗରେ ଜୀବନ କହୁଛି-ମୁଁ ସୌରଭର ବାପା । ଗୌରବ କହୁଚି - ମୁଁ ସୌରଭର ବଡ଼ ଭାଇ । ଗୌତମ କହୁଚି-ମୁଁ ସୌରଭର ମଝିଆ ଭାଇ ଆଉ ଯେତେ ଯିଏ ରହିଲେ ସଭିଏଁ ଜଣକ ପରେ ଜଣେ ନିଜର ପରିଚୟ ଦେଉଛନ୍ତି - ସେମାନେ ସୌରଭର କେହି ନା କେହି ।

ଲାଗୁଥାଏ, ସୌରଭ ଯେମିତି ତା' ପ୍ରଦେଶ ତା' ଦେଶର ଗର୍ବ, ଗୌରବ ଓ ପରିଚୟ । ଏଇ ଅବସରରେ ସଂଗ୍ରାମ ଟିଭି ସାମ୍ନାରେ ବସି ବଂଧୁ ଜୀବନକୁ ପଚାରୁଥାଏ । ଏବେ ତୁ ତା' ପରିଚୟ ନାଁ ସୌରଭ ତୋ ପରିଚୟ ? କହୁନୁ ? ଠୋ ଠୋ ହସି ଉଠିଲା ଜୀବନ। ଏକ ପରିତୃପ୍ତିର ହସ ।



# ନିଖୋଜ କାଳିଦାସ

ମଣିଷକୁ ପଢ଼ି ବୁଝିବା ପାଇଁ ଏପର୍ଯ୍ୟନ୍ତ କୌଣସି ଶାସ୍ତ୍ର ବାହାରି ନାହିଁ । ମାଟିକୁ ବୁଝିଥାଏ ଯେମିତି କୃଷକ ଓ କୁମ୍ଭାର । ଲୁହାକୁ ବୁଝିଥାଏ, ଯେମିତି କମାର । ସାପୁଆକେଳା ଜାଣିଥାଏ କୋଉ ସାପ ଫଣାରେ କେତେ ବିଷ, ମଣି । ଜଙ୍ଗଲୀ ମଣିଷ ଜାଣେ କେଉଁ ଜଙ୍ଗଲ କେତେ ଶ୍ୱାପଦ ସଂକୁଳ ।

ଆପଣା କର୍ମରେ ମପାହୁଏ ସେମିତି ମଣିଷ କାଳକାଳ, ଅପ୍ରକେତ ଓ ଅନାଗତ କାଳ ।

ଥାନାବାରଣ୍ଡାରେ ବସି କଥା ହେଉଥାନ୍ତି ଦୁଇଜଣ । ଚେହେରା ଆଉ କଥା ଭାଷାରୁ ବୁଝାପଡୁଥାଏ ଶିକ୍ଷିତ। ସଭ୍ୟ। ପରିମାର୍ଜିତ ଓ ସଂଭ୍ରାନ୍ତ ଶ୍ରେଣୀର । ପାୱାର କଟ୍ ହୋଇଥାଏ ବୋଲି ଥାନାବାବୁ ତିଆରି କରିଚାଲିଥାନ୍ତି ଚାର୍ଜସିଟ୍, ମଟ୍ଟଲି ଡାୟରୀ ଓ ଇନ୍‌କ୍ୱାରୀ ରିପୋର୍ଟ ଚାର୍ଜଲାଇଟ୍‌ରେ । ଥାନା ଅଗଣା ଓ ବାରଣ୍ଡା ସାରା ଲୋକଭିଡ। ଘନ ଘନ ଟେଲିଫୋନ୍‌କଲ୍ । ବଜାରଟା ସାରା ଡଠିଆସିଛି ଥାନାଯାଏଁ । ସମସ୍ତଙ୍କର ଅପେକ୍ଷା ଶୁଣିବେ କ'ଣ ଗୋଟେ ମିଳିଚି ସୁରାକ୍ । ପୋଲିସ୍ କହୁନି । ଲୁଚଉଚି । ନହେଲେ ମାସେହେଲା ପୋଲିସ୍ କରୁଚି କ'ଣ ?

ଥାନାରେ ପଞ୍ଝା ପଞ୍ଝା ମୁଦେଇ ମୁଦାଲା । ସଭିଏଁ ଚାହିଁଛନ୍ତି ଆଲୁଅ ଆସିବାକୁ ଡାକରା ପଡିଥିଲା ଆସିଛନ୍ତି ହାଜର ହେବେ। ପାଟିତୁଣ୍ଡ ଚାଲିଚି ଅଗଣାରେ ।

ପାଖ ମକ୍ରାମପୁର ଗାଁରୁ ଆସିଛନ୍ତି ରାମ ଲକ୍ଷ୍ମଣ ଦୁଇଭାଇ । ସାମାନ୍ୟ ଖଣ୍ଡେ ଚାକୁଣ୍ଡା ଡାଳ ପାଇଁ ମୁଣ୍ଡ ଫଟା ଫଟି ।

କିଏ ନେଇ ଯାଇଛି ରାଣ୍ଡି ଛେଉଣ୍ଡି ଗୋଟାଏ ବୁଢ଼ୀର ସବୁତକ ସଂଚିତ ଧନ ଚୋରାଇ । ରଖିଥିଲା ଯୋଡି ଯୋଡି ଝିଅବାହା ଦବ । କାନ୍ଦୁଚି ମୁଣ୍ଡ କଚାଡି କଚାଡି ।

ପଞ୍ଚସ୍ତରୀ ବର୍ଷର ସାହୁକାର । ଗାଁ ମାମଲତକାର ୧୫ବର୍ଷର ଛେଉଣ୍ଡ ଝିଅକୁ କରିଚି ଅନ୍ତସତ୍ତ୍ୱା । ମାତ୍ର କୋଡିଏ ହଜାର ଟଙ୍କା ଦେଇ ଖସିଯିବାକୁ ବସିଚି ଗାଁ ନ୍ୟାୟ କରି । ଧରିଛନ୍ତି ଉନ୍ୟ ଗାଁ ଲୋକେ । ଏତଲା ହେଇଚି ଥାନାରେ । ଧରା ହୋଇ ଆସିଚି ବୁଢା। ତିନି ଚାରି ବିବାହିତ ଅବିବାହିତ ପୁଅଝିଅର ବାପ ।

ବେପରବାୟ ଗାଡି ଚଳାଇ ଧକ୍କା କରିଚି ଟୋକା ଡ୍ରାଇଭର ଚୁଙ୍ଗ ଚୁଙ୍ଗିଆ । ମରିଯାଇଛି ସ୍କୁଲଛାତ୍ର । ସାଇକେଲ୍ ସହ ଚିପିହୋଇ ବାହାରି ପଡିଚି ତା ମୁଣ୍ଡର ଦହି।

ମୋଟା ମୋଟି ବୁଝାପଡୁଚି ସେଇ ଇଲାକା ସାରା ଆଇନ୍‌ଶୃଙ୍ଖଳା ପରିସ୍ଥିତି ଭଲନୁହେଁ । ତା'ସହ କାଳିଦାସ ସ୍ୱାଇଁର ନିଖୋଜ ହେବା । ମାସେହେଲା ଟିକେବି ସନ୍ଧାନ ନ ମିଳିବା ପୋଲିସ୍ ପାଇଁ ହୋଇଚି ମୁଣ୍ଡ ବଥାର କାରଣ ।

କାଳିଦାସକୁ ଫେରିପାଇବା ପଛରେ ହଜାର ହଜାର ଲୋକଙ୍କର ସ୍ୱାର୍ଥ ଜଡିତ । ଜନତାଙ୍କ ତରଫରୁ ଦୃଢ ଦାବୀ ପୋଲିସ୍ କିଛି ଗୋଟେ କରୁ । ଏନେଇ ଅଡି ବସିଛନ୍ତି ଦି'ଜଣ ସ୍ଥାନୀୟ ପଲିଟିକାଲ ଲିଡର । ତୁଙ୍ଗନେତା ।

ଥାନା ଅଧିକାରୀ ପଚାରିଲେ - 'ଆପଣମାନଙ୍କର କାଳିଦାସ ବିରୁଦ୍ଧରେ କି କି ଅଭିଯୋଗ ଅଛି' ?

'ନାଁ ସେମିତି କିଛି ନୁହେଁ । ଜନତାଙ୍କ ଅଭିଯୋଗ ଆମ ଅଭିଯୋଗ' । କହିଲେ ଜଣେ ନେତା ।

ଉଭୟେ ଭାବୁଥିଲେ କିନ୍ତୁ ଅଲଗା । କାଳିଦାସ ବିରୁଦ୍ଧରେ ଅଭିଯୋଗ କଅଣ । କାଳିଦାସ ସପକ୍ଷରେ ଆମର ଆପତ୍ତି ଅଛି । ସେ ନଥିଲେ ଆମେ ଆଗକୁ ଇଲେକ୍‌ସନ୍ ଲଢିବୁ କେମିତି ? ଉପରମୁଣ୍ଡରୁ ଯେତକ ପଇସା ପତ୍ର ଆସେ ସେ ଆମକୁ ଦିଏ । ଇଲେକ୍‌ସନଖର୍ଚ୍ଚ ସ୍ଥାନୀୟ କଣ୍ଟ୍ରାକ୍‌ଟର୍ ,ଡିଲର୍ ଓ ଷ୍ଟୋରେଜ୍ ଏଜେଣ୍ଟଙ୍କଠାରୁ ଯେତେ ସବୁ ତା ହାତରେ ।

ଯିଏ ସରକାରରେ ଆସୁ , ଯୋଉ ସରକାର ଆସୁ । କାଳିଦାସ ଥିଲା ଜଣେ ଅପ୍ରତିଦ୍ୱନ୍ଦୀ ଶିଳ୍ପୀ । ରାଜନୀତିକ କାବ୍ୟ ନାଟିକାର ସଫଳ ଯୋଗସୂତ୍ରକାରୀ । ତଳ ଉପର ଲୋକଙ୍କର । ସେ ନାହିଁ ମାନେ ଇଲେକ୍‌ସନ୍ ଫ୍ଲପ୍ । ଏଇକଥା ଭାବୁଥିଲେ ଦିହେଁ ।

ଏତେବେଳକୁ ଲାଇନ୍ ଆସିଗଲା । ଫ୍ୟାନ୍ ପବନରେ ଉଡୁଛି କାନ୍ଥ କ୍ୟାଲେଣ୍ଡରର ପୃଷ୍ଠା ଓ.ଆଇ.ସି.ଙ୍କର ମୋଟା ନିଶୁଆ ମୁହଁ ବୁଲିଲା ଅଉ ଜଣକ ଆଡେ । ପ୍ରଶ୍ନୀଳ ଦୃଷ୍ଟିରେ ଥିଲା ଅନ୍ତହୀନ ଜିଜ୍ଞାସା ।

ଯୁବକଟି ଲଣ୍ଡଭଣ୍ଡ ହୋଇ ଅଭିଯୋଗ ଆଣିଥିଲା କାଳିଦାସ ବିରୁଦ୍ଧରେ - 'ବାବୁ ଆଜ୍ଞା ! ଆପଣ ସମସ୍ତିଙ୍କର ମା ବାପ । ଆପଣ ନ ବୁଝିଲେ ଆଉ ବୁଝିବ କିଏ ? ପୁଲିସ କନେଷ୍ଟବଳ ଚାକିରୀ କରାଇ ଦେବା ନାଆଁରେ କାଳିଦାସ ମୋଠୁ ନେଇଛି ଚାଳିଶ ହଜାର ଟଙ୍କା । ମୁଁ ବି.ଏ ପାଶ୍ କରିଚି ଆଜ୍ଞା ବେକାର ବୁଲି ବୁଲି ଏଜ୍ ଚାଲିଯାଉଚି ବୋଲି ଟଙ୍କା ଦେଲି । ବାପା, ଅଜାର ଭିଟାମାଟି ଜମି ଖଣ୍ଡକ ବିକ୍ରି ଦେଇ ମୁଁ ଉଚ୍ଛନ୍ନ ହେଇଗଲି ବାବୁ । ତାକୁ ଖାଲି ଧରି ଆଣନ୍ତୁ ମୁଁ ଆପଣଙ୍କ ସାମନାରେ ମୁକାବିଲା କରିଦେବି । କହୁ କହୁ ଯୁବକଜଣକ କାନ୍ଦି ପକାଇଲା ।

ନେତାଙ୍କ ଭିତରୁ ଜଣେ କହିବାକୁ ଲାଗିଲେ-'କାଳିଦାସ ବାବୁଙ୍କର କିଛି ଭୁଲନାହିଁ । ଏ ସବୁ ଶାସକ ଦଳର ମନ୍ତ୍ରୀ ଏମ୍.ଏଲ.ଏ.ଙ୍କ କାମ । ସେମାନେ କାଳିଦାସଠୁ ଟଙ୍କା ନେଇ ଯାଇଥିବେ ଆଉ କରିପାରିନଥିବେ ଭଣ୍ଡୁଥିବେ । ନଚେତ୍ ଆଉ କାହାଠୁ ଅଧିକା ପାଇ ପୋଷ୍ଟଦେଇ ଦେଇଥିବେ । କାଳିଦାସ ବିଚରା ନିରୂପାୟ । ନାଚାର୍ ।

ପ୍ରତିବାଦୀ ନେତା ଆଉ ଚୁପ୍ ବସିପାରିଲେ ନାହିଁ । ମୁହଁ ଖୋଲିଲେ । ଶାସକ ଦଳକୁ ନିନ୍ଦାକରିବା, ଦୋଷ ଦେବା ଆଉ ଦୁର୍ନୀତି ସହିତ ଯୋଡିକହିବା- ଏ ଗୋଟେ ଖୋଇ ହେଇ ସାରିଲାଣି ବିରୋଧୀ ଦଳ ଲୋକଙ୍କର । ହେଇ ଦେଖୁନାହାନ୍ତି- କାଳିଦାସ କିପରି ଝିଅଟାର ସର୍ବସ୍ୱ ନଷ୍ଟ କରି ଫେରାର୍ । କହୁନାହାନ୍ତି ଏଥିରେ ବି ଶାସକ ଦଳର ହାତଅଛି ?

ଝିଅଟି କାନ୍ଦିଲା କଇଁ କଇଁ। ସାହାସବାନ୍ଧି କହିଚାଲିଲା -'ସେ ମୋର ଇହ ଓ ପରର ଦେବତା' । ମୁଁ ତାଙ୍କୁ ବିବାହ କରିଚି ରାମଚଣ୍ଡୀଙ୍କୁ ସାକ୍ଷୀରଖି । ମୋ ମଥାରେ ସିନ୍ଦୁର ଦେଇ ସେ ମୋତେ ତାଙ୍କର ପତ୍ନୀ କଲେ । ଅସ୍ୱୀକାର କରିବାର ଉପାୟ ନଥିଲା ମୋର । ତାଙ୍କ ବିରୁଦ୍ଧରେ ମୋର କୌଣସି ଅଭିଯୋଗ ନାହିଁ । ଟିକେବି ଅମଙ୍ଗଳ ଚିନ୍ତେ ନା ମୁଁ ତାଙ୍କର । ତମେ ବାବୁ ତାଙ୍କୁ କେମିତି ଫେରାଇ ଆଣ । ମୋର ସେତିକି ଲୋଡା । ମୋ ଭବିଷ୍ୟତ କଅଣ ହେବ ?

ବଡବାବୁ ଏ କଥାର ପ୍ରତ୍ୟୁତ୍ତର ମାଗି କହିଲେ - 'ସେତ ବିବାହିତ । ତାର ଗୋଟେ ପୁତ୍ର ଗୋଟେ କନ୍ୟାଅଛି । ବୈଦିକ ରୀତିରେ ତା ବିବାହିତା ସ୍ତ୍ରୀ ମଧ୍ୟ ଏକା ଡାୟରୀ ଲେଖାଇ ଦେଇ ଯାଇଛି । ବରଂ ସେ ଅଭିଯୋଗ କରିଚି ତମ ପରି ଆଉ ଜଣେ ଝିଅ ନାଆଁରେ; ଯିଏ କିମିଆ କରିନେଇ ଯାଇଚି ସ୍ୱାମୀଙ୍କୁ ତାର। ତା ପାଖରୁ ଛଡାଇ । ତମେ କ'ଣ ସେଇ ଝିଅ ?

ତାପରେ କଥାର ଢଙ୍ଗ ବଦଳାଇ ଥାନାବାବୁ ପଚାରିଲେ - ଆଚ୍ଛା ତମ ନାଁ କଅଣ ? କେଉଁଠି ଘର ? କ'ଣ କର ତମେ ?

ଝିଅଟି ଉତ୍ତର ଦେଲା-ମୋ ନାଁ ଆରତୀ ମହାନାୟକ । ଘର ବାଲେଶ୍ୱରର ଗୋଲ ପୋଖରୀ । ପିତା ସରୋଜକାନ୍ତ ମହାନାୟକ । ଜଣେ ସ୍କୁଲ ଶିକ୍ଷକ । ମୁଁ କଲେଜ ପଢା ଶେଷକରି କମ୍ପ୍ୟୁଟରରେ କାମ କରୁଥିଲି । କଟକରେ ତାଙ୍କ ସହ ମୋର ଦେଖା ହୁଏ ଏକ ଛାପା କାମରେ । କେଇ ପୃଷ୍ଠାର ବହିଗୋଟେ ଡିଟିପି ବାହାର କରିବାର ଥିଲା ତାଙ୍କର । ସେ ମୋର ନିକଟତର ହେଲେ । ତାଙ୍କର ସୌମ୍ୟ ଚେହେରା, ମିଷ୍ଟଭାଷା ଓ ପ୍ରତିଦ୍ୱନ୍ଦ୍ୱି ପ୍ରତିଭା ଆଗରେ ମୋ ମୁଣ୍ଡ ନଇଁଗଲା । ଅନେକଙ୍କୁ ପଚାରିବୁଝିଲି - ସମସ୍ତେ ଗୋଟେ ମାତ୍ର ଉତ୍ତର ଦେଲେ - ସମ୍ଭବତଃ ସେ ଅବିବାହିତ । ନଚେତ ଘରଦ୍ୱାରଛାଡି ମୁକ୍ତ ଆକାଶର ପକ୍ଷୀ ପରି ଜଣେ ଏତେଟା ବୁଲନ୍ତା କିପରି ? ପ୍ରାୟ ପ୍ରତି ସପ୍ତାହରେ ଆସୁଥିଲେ ସେ ମୋ ପାଖକୁ କିଛି ନା କିଛି କାମ ବାହାନାରେ। ମୁଁ ରିଜର୍ଭ ରହୁଥିଲି ।

ସଂପର୍କର ଉତ୍ତାପ ଦିନେ ଜମାଟ ବନ୍ଧା କଠିନ ବରଫ ଖଣ୍ଡକୁ ତରଳାଇ ଦେଲା ।

ପଛକୁ ନ ଚାହିଁ କାହାକୁ କିଛି ନକହି ମୁଁ ଉଠି ଚାଲିଲି ତାଙ୍କ ପଛେ ପଛେ । ସେ ମୋତେ କୋଣାର୍କନେଇ ସିନ୍ଦୁର ବୋଳିଲେ ରାମଚଣ୍ଡୀଙ୍କ ଆଗରେ । ମୁଁ ମିଳାଇ ଗଲି ତାଙ୍କ ଭିତରେ । ସେଠୁ ଆଣି ରଖିଲେ ଭୁବନେଶ୍ୱରର ଏକ କ୍ୱାଟରରେ । ଆମେ କଟାଇଲୁ ଆମର ବହୁ ପ୍ରତୀକ୍ଷିତ ସୁଖକର ଦାମ୍ପତ୍ୟ ଜୀବନ । ମୁଁ ଫେରିପାରିଲି ନାହିଁ ବାଲେଶ୍ୱର । ଏବେ ଆପଣ କହନ୍ତୁ ମୁଁ କରିବି କଅଣ ?

ଥାନାଧିକାରୀ ଝିଙ୍ଗାସି କହିଲେ - 'ସେତେବେଳେ ସୁଖ ତମ ଆଖିକୁ ଅନ୍ଧ କରି ଦେଇଥିଲା । କୋଉ ଥାନାବାବୁ ଥିଲା ସେଠି । ଏବେ ଦୁଃଖ ତମ ଆଖି ଖୋଲିଦବ । ନିଜ ବାଟ ଦେଖ । ଏମିତି ଅଭିଯୋଗ ସଂଖ୍ୟା ହେଉଚି ଢେର ତା' ନାଆଁରେ । ତମେ ଚଉଦନମ୍ବର । ଅପେକ୍ଷାରେ ଥାଅ । ତମ ସିରିୟଲ ଆସିଲେ ବୁଝିବା ।

ନେତା ଦ୍ୱୟ ଉଠିବା ପୂର୍ବରୁ କହିଗଲେ - ଆଚ୍ଛା ବଡବାବୁ ଆମେ ଆସୁଛୁ । ଯଦି କିଛି ଖବର ଆସେ ଜଣାଇବେ । ଲୋକଗୁଡାଙ୍କୁ ବିଦା କରିଦିଅନ୍ତୁ । ଡେରି ହେଲାଣି । ଏସ୍.ପି.ସାହେବଙ୍କୁ ଟିକେ କହନ୍ତୁ ତତ୍ପର ହେବେ । କାଳିଦାସ ପାଇଁ । ନହେଲେ ପବ୍ଲିକ୍ ରିଆକ୍ସନ୍ ହବ। ଆଉ ଆମକୁ ଦୋଷ ଦେବେ ନାହିଁ । ଗୋଠମାଡିଲେ ଆମେବି ପାଣି ପାଇବୁ ନାହିଁ । ହଉ ଆଜ୍ଞା ।

ଥାନାବାବୁ ଭାବୁଥାନ୍ତି କାହିଁକି ଯେ ଏମାନେ ଏମିତି ନେତା ହୁଅନ୍ତି ବୁଝି ହଉନି ।

ଆସିଲେ ଦୁଇଜଣ ସାମ୍ବାଦିକ । ଦୁଇଗୋଟି ପ୍ରଭାବଶାଳୀ ସମ୍ବାଦପତ୍ରର ।

ସାର୍ ନମସ୍କାର । କଅଣ କିଛି ମିଳିଲା ? ଆଉ ସେ ଜମି ସ୍କାଣ୍ଡାଲ୍ କ'ଣ ହେଲା ?

"ହବ କଅଣ ? ସେଇ ଖଣ୍ଡିଏ ଜମିକୁ ଦେଖାଇ ସେ ବିକିଚି ସାତଜଣଙ୍କୁ । ବିଭିନ୍ନ ସମୟରେ ବିଭିନ୍ନ ଲୋକଙ୍କ ନାଁରେ ଏକାପ୍ଲଟ୍ ନମ୍ବର ଦେଇ ଦଲିଲ୍ କରାଇଚି । ବଡ ଆଶ୍ଚର୍ଯ୍ୟ, ଯାକୁ ତହସିଲ୍ କି ସବ୍‌ରେଜିଷ୍ଟ୍ରେସନ୍ ଅଫିସ୍ କେମିତି ଜାଣି ପାରିଲା ନାହିଁ ? ଥାନାବାବୁଙ୍କ କଥାମଝିରେ କହି ଚାଲିଲେ ସାମ୍ବାଦିକ ବନ୍ଧୁ" ଆପଣ ଭାବୁଛନ୍ତି ଏଥିରେ ତହସିଲ୍ ଓ ରେଜିଷ୍ଟ୍ରେସନ୍ ବାଲାଙ୍କର ହାତନାହିଁ ବୋଲି ?ଗୋଟେପଟ୍ଟା ରଦ୍ଦ ନ ହେଲା ପର୍ଯ୍ୟନ୍ତ ପୁଣି ନୂଆ ପଟ୍ଟା କେମିତି ? ଥାନାବାବୁ କହିଚାଲିଲେ - ଏବାବତରେ କାଳିଦାସ ସ୍ୱାଇଁ ପାଇଛି ଅନ୍ୟୁନ ୭/୮ ଲକ୍ଷଟଙ୍କା । ଏମିତିକି ସେ ତା ଅନ୍ତରଙ୍ଗ ବନ୍ଧୁକୁ ବି ଚିଟିଂ କରିବାକୁ ପଛାଇ ନାହିଁ । କିନ୍ତୁ ତା' ଘର ଦେଖିଲି ସେମିତି କିଛି ପରିବର୍ତ୍ତନ ହୋଇନାହିଁ । ପୁରୁଣା ଖାନଦାନୀ ଘର ଜେଜେବାପ ଅମଳର । ତା' ରହିବା ଘରୁ ମିଳିଥିଲା ତିନି ଆଲମିରା ବହି । ଦୁଇ ଶହରୁ ଉର୍ଦ୍ଧ୍ୱ କ୍ୟାସେଟ୍। ଦୁଇ ବାକ୍ସ ଇସ୍ତ୍ରିକରା ପ୍ୟାଣ୍ଟ ସାର୍ଟ। ବିଭିନ୍ନ ସିଜିନର । ପାଞ୍ଚଗୋଟି ଆଲବମ୍ । ପଚିଶ ଗୋଟି ବନ୍ଧେଇ ଫଟୋ। ବିଭିନ୍ନ ପୋଜର । ଗୋଟେ ଭିସିଡି। ପନ୍ଦର ଗୋଟିସିଡି। ଗୋଟେ ରଦିଆ ହାରମୋନିୟମ। ତିନିଗୋଟି ବଇଁଶୀ। ହଳେ ତବଲା। ଗୋଟେ ପଖଉଜ ଓ କେତେଟା ଅଏଲ୍ ପେଣ୍ଟିଂ । ତିରିଶଟାରୁ ଉର୍ଦ୍ଧ୍ୱ ଡାୟରୀ । ଗପ, କବିତା, ଫଟୋ, ଠିକଣା, ଟେଲିଫୋନ୍ ନମ୍ବର ଇମେଲ୍ ୱେବ୍ ସାଇଟ୍ ଏବଂ ସଭାସମିତିର ଦିନ ତାରିଖରେ ଭର୍ତ୍ତି ।

ଏତେ ପଇସା ନେଇ ସେ କଲା କଅଣ ? ବ୍ୟାଙ୍କ ଖାତାରେ ଅଛି ଜମା ୪୮୧ ଟଙ୍କା। ଶେଷ ଉଠାଣ ୫୦୦ ଟଙ୍କା । ଉଠିଥିଲା ଦୁଇ ମାସ ତଳେ । ବାପା ତାଙ୍କର କହୁଥିଲେ ସେ ଏବେବି ପଇସା ନିଏ ବୋଉ ପାଖରୁ । ଅଧ୍ୟାପକ ଚାକିରୀରୁ କଅଣ ପାଏ କେଜାଣି ? ମାସକରେ ଦୁଇଦିନ କି ତିନିଦିନ ଖାଏ ଘରେ । ରହେ ରାତିରେ ପନ୍ଦର/ଷୋଳଦିନ । ସବୁଠାରୁ ପ୍ରିୟ ଖାଦ୍ୟ ପଖାଳ ତା ସାଙ୍ଗକୁ ବଡିଭଜା, ଶାଗଭଜା, ଚୂନା ମାଛ । ଯେତିକି ସମୟ ରହେ, ପୁଅ,ଝିଅଙ୍କ ଦୁଃଖ ସୁଖ ବୁଝେ । ଆଣି ଦିଏ ଯାହା ଯାହା ବରାଦ । ଖୁସିଗପ କରେ । ଟେପ୍ ଶୁଣାଏ, ସିଡି ଚଳାଏ ।

ନିଖୋଜ ହେବା ଦିନବି ସବୁଦିନପରି ଭଲ ପ୍ୟାଣ୍ଟ ସାର୍ଟ ହଳେ ପିନ୍ଧି ଘରୁ ଯାଇଥିଲା ।

ଜଣେ ସାମ୍ବାଦିକ ବନ୍ଧୁ ପଚାରିଲେ ଏମିତି ବି ହେଇପାରେ କେହି ଶତ୍ରୁପକ୍ଷ ତାଙ୍କୁ କିଡ୍‌ନାପ କରି ନେଇଯାଇ ଥାଇପାରନ୍ତି । ତାଙ୍କର କେହି ଶତ୍ରୁଥିବାର ଆପଣ ଖବର ପାଇଛନ୍ତି କି ?

ଶତ୍ରୁବୋଲି କାହାର ନାହିଁ ? ହେଲେ ଜୀବନ ନେଲାଭଳି ତାର କେହି ଶତ୍ରୁ ନଥିଲେ । ମୁଁ ଜାଣେ ସେ ଜଣେ ନିଆଶ୍ରୀ ବୁଢ଼ୀର ଦେଖାଶୁଣା କରୁଥିଲା କଟକରେ । ବୁଢ଼ୀ ଖୁସିହେଇ ଲେଖିଦେବାକୁ ଇଚ୍ଛାକରୁ ଥିଲା ତା'ନାଆଁର କୋଠାବାଡ଼ି । ବୁଢ଼ୀର ପୁତୁରାମାନେ ବଚସା କରିଥିଲେ ତାସହ ଥରେ । ସେ ଅତି ସ୍ୱାଭାବିକ୍ ଢଙ୍ଗରେ ବୁଝାଇ ଦେଇ ଥିଲା ବୋଲି ସେମାନେ ଏବେ ତାର ଜିଗିରି ଦୋସ୍ତ । ଫୋନ୍ କରୁଛନ୍ତି ଦିନକୁ ଦି'ଥର। 'କାଳିଦାସ ଆସିଲା' ?

ବାଜିଖେଳ ବା ଭୋଜଖେଳର ଅନ୍ୟନାମ ଜୀବନ । ଯାହା ଚିର ରହସ୍ୟମୟ । ଚିର କୁହେଳିକାଚ୍ଛନ୍ନ, ଚିର ମାୟାବୀ । ରମଣୀୟତା ଏହାର ସ୍ୱରୂପ । ରସମୟତା ଏହାର ପ୍ରାଣ ଅଥଚ ଆପଣା ଭଉଁରୀରେ ପଡ଼ି ଚକ୍କର କାଟିବା ଏହାର ଧର୍ମ । ନିଜ କାମନାର ନିଜେ ଶିକାର । ନିଜ ବାସନାରେ ନିଜେ ବଶୀଭୂତ । ନିଜର ଈର୍ଷାରେ ନିଜେ ପ୍ରଜ୍ୱଳିତ । ନିଜ ଇଚ୍ଛାରେ ନିଜେ ବନ୍ଦୀ। ନିଜ ସ୍ୱାର୍ଥ ସହ ନିଜେ ପ୍ରତିବାଦୀ। ନିଜ ପାଇଁ ନିଜେ ଉଦାହରଣ। ନିଜେ ନିଜର ଭଗବାନ ।

ଦର୍ପଣରେ ନିଜ ମୁହଁ ନିଜକୁ ଭାରି ସୁନ୍ଦର । କିଏ ଜାଣେ କୋଉ ଜୀବନ କେତେ ସଫଳ ବା ବିଫଳ ।

କାଳିଦାସ ଜୀବନ ଏକ ଭସା ବାଦଲ । ବର୍ଷିଲେ ବର୍ଷିବ ନବର୍ଷିଲେ ନାହିଁ । ଭାସିଲେ ଭାସିବ ନଭାସିଲେ ନାହିଁ । ସୂର୍ଯ୍ୟାଲୋକରେ ସେ ଲୁଚି ଯିବ । ଚନ୍ଦ୍ରାଲୋକରେ ସେ ପ୍ରକାଶିବ । ଯେଉଁଠି ଜହ୍ନରାତି, ସେଠି ବାଦଲ । ଯେଉଁଠି ଫୁଲବନ, ସେଠି ଭଅଁର । ଯେଉଁଠି ମହୁଫେଣା, ସେଠି କାଳିଦାସର ମନ୍ଦିର । ମହୁତାର ଦେବତା । ମହକତାର ବିଧାତା ।

ତପସ୍ୟାରତ ସନ୍ୟାସୀର ଜଟା ଭିତରୁ ବାଟଖୋଜି ମୁକୁଳି ଆସୁଥାଏ ଜଞ୍ଜାଳ ଆଉ ଗୃହ । କାଳିଦାସର ପୋଷାକ ଭିତରେ ଲୁଚିବାକୁ ଚେଷ୍ଟା କରୁଥାଏ ସନ୍ୟାସ ।

ଥାନାବାବୁଙ୍କ ମିଜାସ୍‌ରୁ ଗୋଟିଏ କଥା ଓହ୍ଲାଇପାରୁନଥାଏ । କାଳିଦାସ ସନ୍ୟାସୀ ନୁହେଁ କି ଗୃହୀ ନୁହେଁ, ତାହେଲେ ସେ କ'ଣ ? ନିଜ ସ୍ତ୍ରୀ ପିଲାଙ୍କ ଠାରୁ ଆରମ୍ଭକରି ପରିବାର, ବନ୍ଧୁ , ସୋଦର ଓ ରକ୍ତ ସଂପର୍କ ପ୍ରତି ସେ ଯେତିକି ଅବିଚାର, ଅପରାଧ କରିଛି ତାର କାରଣ କଅଣ ?

ଅପରନ୍ତୁ ଅନେକଙ୍କର ସେ ପ୍ରତ୍ୟକ୍ଷ ଅପ୍ରତ୍ୟକ୍ଷରେ ଅନେକ କ୍ଷତି ଘଟାଇଛି । କାହାକୁ ଠକିଛି, କାହାକୁ ପ୍ରତାରିତ କରିଛି, କାହାର ଋଣ ପରିଶୋଧ କରିନାହିଁ । ଦେୟ ଦେଇ ନାହିଁ । ବଂଧୁତାରେ ବିଷ ଢାଳିଛି । ବିଶ୍ୱାସରେ ବିଶ୍ୱାସ ଘାତକତା କରିଛି । ଏସବୁତ କମ ବଡ ବଡ ଅପରାଧ ନୁହେଁ । ଏ ଅପରାଧ ଆଚରଣର କାରଣ କଅଣ ?

ଥାନାବାବୁ ନିଜ ଚେୟାରରୁ ଉଠିଲେ । ସେତେବେଳକୁ ରାତି ଏଗାର । କିଏ କୁଆଡେ ଗଲେଣି ଥାନା ଅଗଣା ଛାଡି । ଅବଶିଷ୍ଟ ଯେତେଜଣ ଥିଲେ ସେମାନଙ୍କୁ ଶୁଣାଇଲେ "ଆପଣମାନେ ଯାଆନ୍ତୁ ଆଜି ଆଉ କିଛି ଖବର ମିଳିବାର ସମ୍ଭାବନା ନାହିଁ । ଖବର ଆସିଲେ ଆମେ ଡକାଇବୁ ।

ଥାନା ଭିତରୁ ଜନତାଙ୍କ ଭିଡ କମିନି । ବିଳମ୍ବିତ ରାତ୍ରିରେ ବାଜିଉଠିଲା ଟେଲିଫୋନ୍ । ଖୋଦ୍ ଏସ୍.ପି. ସାହେବଙ୍କର ମେସେଜ୍ ଆସିଲା - କାଳିଦାସ ଆଲିଭ୍ । ତାର ସନ୍ଧାନ ମିଳିଛି ସେ ଅଛି ହୁକିଟୋଲାରେ । ବସି ଲେଖୁଚି ଉପନ୍ୟାସ । **ଜଣେ ପ୍ରତାରକର ଆତ୍ମକାହାଣୀ ।**

ପଚାରିଲେ କହୁଚି-ମୁଁ ତ ମୋର ଅଛି । ଆପଣମାନେ କାହିଁକି ଏତେବ୍ୟସ୍ତ ହୋଇ ପଡୁଛନ୍ତି ? ଟିକେ ଶାନ୍ତିରେ ରହିବାକୁ ଦେବେନି ଏମାନେ । ତାଦୃଷ୍ଟିରେ ଏମାନେ ହେଉଛନ୍ତି - ନେତା, ସାମ୍ବାଦିକ ଓ ପୋଲିସ୍ ।

ପବ୍ଲିକ୍ ଆର୍‌ବିଟ୍ରେସନ୍ ମାମଲା ତା' ନାଁରେ ରୁଜୁ ହୋଇଚି କହିଲେ ସେ କହୁଚି - ମୁଁ ବି ସେମାନଙ୍କ ନାଁରେ ପରସନାଲ୍ ଅର୍‌ବିଷ୍ଟ୍ରେସନ୍ ମାମଲା କରିବି । ମୁଁ ଆସୁଚି ।

ଖବର ପାଇ ଅଭିଯୋଗ କାରୀମାନେ ଯେଝା ଘରକୁ ତୁନ୍ ତାନ୍ ଫେରିଗଲେ । ଏକମାସ ତଳେ ଯେଉଁ ସାମ୍ବାଦିକ ମାନେ ଲେଖିଥିଲେ - "ହଜାର ହଜାର ଲୋକଙ୍କ ଦ୍ୱାରା ଅଭିଯୁକ୍ତ କାଳିଦାସ ସ୍ୱାଇଁ ଫେରାର୍ ।" ସେଇମାନେ ଆଜି ଲେଖିଛନ୍ତି ମୁଖ୍ୟମୁଖ୍ୟ ସମ୍ବାଦପତ୍ରର ଫ୍ରଣ୍ଟପେଜ୍‌ରେ - ଓଡିଶାର ଗର୍ବ ଓ ଗୌରବ କବି, କଳାକାର ଓ ସମାଜସେବୀ କାଳିଦାସ ସ୍ୱାଇଁ ରାଜ୍ୟସଭାକୁ ମନୋନୀତ । ଆସନ୍ତା କାଲି ସୂଚନାଭବନରେ ତାଙ୍କୁ ସମ୍ବର୍ଦ୍ଧିତ କରାଯିବ । ଏଥିପାଇଁ ବହୁସଂଖ୍ୟାରେ ଯୋଗଦେବାକୁ ଅନୁରୋଧ ।

ସକାଳର ସମ୍ବାଦ ପଢି ଆରତୀ ଆଖିର ଲୁହ ଅମାନିଆ ହୋଇ ଉଠୁଥିଲା । ଅଭିଯୋଗକାରୀମାନେ କଥା ହେଉଥିଲେ । ଆସଯିବା । ଆଉ କିଛି ହେବାର ନାହିଁ ।



## ମାୟା

୨୦୦୪ ମସିହା  ଅଗଷ୍ଟ ୨୧ ତାରିଖ ଦିନ ପୁରୀ ହାଓଡ଼ା ଏକ୍‌ସ୍‌ପ୍ରେସ୍ ଲାଗିଲା ନିର୍ଦ୍ଧାରିତ ସମୟ ପନ୍ଦର ମିନିଟ୍ ଆଗରୁ । ଏତେ ଶୀଘ୍ର କେବେବି ଲାଗେନା । ହାଓଡ଼ାର ନୂଆ ଷ୍ଟେସନ୍ ଅଠର ନମ୍ବର ପ୍ଲାଟଫର୍ମରୁ ଓହ୍ଲାଇ ପୁରୁଣା ଷ୍ଟେସନର ଛଅ ନମ୍ବର ପ୍ଲାଟଫର୍ମକୁ ଯିବା କମ୍ କଷ୍ଟକର ନୁହେଁ । ହାତରେ ଆଟାଚି ଆଉ କାନ୍ଧରେ ବ୍ୟାଗ ଝୁଲାଇ ଏକା ଲହସରେ ଯାଇ ପହଞ୍ଚିଲି ଛ ନମ୍ବର ପ୍ଲାଟ ଫର୍ମରେ। ମୋର ବୋଲପୁର ଯିବାରଥିଲା ।

ସେତବେଳକୁ ଛଅନମ୍ବରରେ ଲାଗି ସାରିଥିଲା । ଗଣଦେବତା ଏକ୍‌ସ୍‌ପ୍ରେସ୍ । ଛାଡ଼ିବ ଛଅଟା ପାଞ୍ଚମିନିଟ୍‌ରେ । ଦଶ-ପନ୍ଦର ମିନିଟ୍ ର ଏପଟ ସେପଟ। ହେଲେ ଆଉ ଯିବା ସମ୍ଭବ ନୁହେଁ । ଅପେକ୍ଷା କରିବାକୁ ପଡ଼ିବ ନଅଟା ତିରିଶ । ଅଛି 'ବିଶ୍ୱ ଭାରତୀ ଏକ୍‌ସ୍‌ପ୍ରେସ୍' ।

ରିଜର୍ଭେସନ୍ ବଗି ଖୋଜୁଖୋଜୁ ମୋର ଚାଲିଗଲା କୋଡ଼ିଏ ମିନିଟ୍ । ସବୁଠି ଚାର୍ଟ, ନବେ ଜଣଙ୍କ ନାଁ । ଚେୟାର କାର୍ । ସିଟ୍ ଫୁଲ । ତେବେ ମୋର ରିଜର୍ଭେସ୍‌ନଟା କୋଉଠି ? ପାଇବାର ଅବସର ମିଳିଲା ନାହିଁ । ଗାଡ଼ି ହର୍ଣ୍ଣଦେଇ ଗଡ଼ିବା ଆରମ୍ଭ କଲା । ସେତବେଳକୁ ଲୋକଭିଡ଼ କଥା ନ କହିଲେ ଭଲ । ଚଟାପଟ୍ ଉଠିପଡ଼ି ମୁଁ ଶହେପାଞ୍ଚ ନମ୍ବର ସିଟ୍‌ରେ ବସିଗଲି । ଖାଲିପଡ଼ିଥାଏ ଶହେ ଛଅନମ୍ବର। ବସିଥିବା ଲୋକମାନଙ୍କୁ ପଚାରିଲି । ଏଥିରେ ନବେଜଣଙ୍କର ରିଜର୍ଭେସନ ଚାଟ୍ ବାହାରିଛି, ସିଟ ଅଛି ଶହେ ଛ ? ମାନେ ଆହୁରି ଷୋହଳଟି ସିଟ୍ କ'ଣ ପାଇଁ ଖାଲି ପଡ଼ିଛି।

କେହି ଜଣେ ବୁଝେଇ ଦେଲେ । ୟାର ସିଷ୍ଟମ ହେଲା ଫାଷ୍ଟ୍‌କମ୍ ଫାଷ୍ଟ୍ ସର୍ଭିସ୍ । ଗାଡ଼ି ବଦଳାଉ ଥିବା ଯାତ୍ରୀ ବା ଅଧିକ ରିଜର୍ଭେସନ କରିଥିବା ଯାତ୍ରୀଙ୍କ ସୁବିଧା ପାଇଁ ଏହା କରାଯାଇଛି। ବ୍ୟସ୍ତ ନ ହୋଇ ବସ । ରିଜର୍ଭେସନ୍ ଆଛେତ ?

'ହଁ କହି ଏକ ଆଶ୍ୱସ୍ତିର ନିଶ୍ୱାସ ନେଲା ବେଳେ ଜଣେ ଭଦ୍ର ମହିଳା ତାଙ୍କ ବସିଥିବା ସ୍ଥାନରୁ ଉଠି ଆସି ପଚାରିଲେ-"ଏଖାନ୍ କେ ଆଛେ ?

'ନା । ଉତ୍ତର ଦେଲି । କାହିଁକି ବା ହଁ କହିବି ।

ଆମି ବସ୍‌ତେ ପାରି ? ପଚାରିଲେ ଭଦ୍ରମହିଳା ।

ଟିକେ ଘୁଞ୍ଚିଆସି ଜାଗାଛାଡ଼ି ଦେଇ ମୁଁ ତାଙ୍କୁ ଅନୁମତି ଦେବା ଢ଼ଙ୍ଗରେ କହିଲି-ବସୁନ । ବସୁନ ।।

ଭଦ୍ର ମହିଳା ହ୍ୟାଣ୍ଡ ବ୍ୟାଗଟିକୁ ସିଟ୍ ଉପରେ କଣକୁ ଥୋଇ ଦେଇ ମୋ ପାଖକୁ ଲାଗି ବସିଲେ ଓ ମୁରୁକି ହସିବା ଆରମ୍ଭ କଲେ ?

ଜାଣେନା, ସେ ଭଦ୍ର ମହିଳା ଜଣକ କିଏ ? କାହିଁକି ଉଠି ଆସିଲେ ? ମୋ ପାଖ ସିଟ୍‌ରେ ବସିବାକୁ ପସନ୍ଦ କଲେ । ପୂର୍ବରୁ ବସିଥିବା ସିଟ୍ ତାଙ୍କର ମନ୍ଦ ନଥିଲା । ଝରକା ପାଖରେ ଥିଲା । ଅନ୍ୟ ସ୍ତ୍ରୀ ଲୋକମାନେ ବି ଥିଲେ । ସେଇ ସିଟ୍‌ରେ ।

ମନ ଭିତରେ କେତୋଟି ପ୍ରଶ୍ନର ଝଡ଼ ମୁଣ୍ଡ ଟେକିଲା । ଆଗରୁ କୋଉଠି ଦେଖା ହୋଇଚି କି ? କୋଉ ସାହିତ୍ୟ ସଭା ? ବାହାଘର ? କି ପିକ୍‌ନିକ୍ ପାର୍ଟି ? ଯେତେ ସ୍ମୃତିଚାରଣ କଲେ ବି ସେଭଳି ଏକ ଚେହେରା କାହିଁ ମୋ ଆଖିରେ ଦିଶୁନାହିଁ । ବଙ୍ଗାଳୀ ସ୍ତ୍ରୀ ଲୋକ ସହିତ ଦେଖା ହେବାର ଚାନ୍ସ କାହିଁ ?

'ସ୍ତ୍ରୀଲୋକଟି ଜଣେ ଚିଟ୍ ନୁହେଁତ ? ହସେଇ, ମଜେଇ କଥା କହି ତମ ଭିତରକୁ ପଶି ତମ ଜିନିଷତକ ଧରି ଚଲ୍ । ନିଜ ସନ୍ଦେହକୁ ଦୂରିଭୁତ କରିବା ପାଇଁ ମୁଁ ମୋ ବ୍ୟାଗ ଓ ଆଟାଚ ଉପରେ ସତର୍କ ଦୃଷ୍ଟି ରଖିଲି । ଚେଷ୍ଟା କଲି ଯେମିତି ଭଦ୍ରମହିଳାଙ୍କ ସହିତ ମୋର କୌଣସି କଥାଭାଷା ହବନାହିଁ । ମୋର ଆଡ଼ହେବା ଢ଼ଙ୍ଗ ଦେଖି ମୁରୁକି ହସି ଭଦ୍ରମହିଳା ପଚାରି ବସିଲେ 'ଅପନି କୋଥାଏ ଯାବେନ୍ ?'

'ବୋଲ୍‌ପୁର୍' । ସଂକ୍ଷିପ୍ତ ଉତ୍ତର ଦେଇ ନୀରବ ରହିଲି । ଭାବିଲି ଆଉ ଯାହା ବି ପଚାରିଲେ ଉତ୍ତର ଦେବି ନାହିଁ ।

'ଓଃ । ଆମି ବିତ ବୋଲପୁର ଯାଛି' । କଥା ସହିତ କଥା ମିଳାଇ କହିଲେ ଭଦ୍ର ମହିଳା-ଆପନାର୍ କି ଏକଟୁ କାଜ୍ ଆଛେ ଓଖାନ୍ ? ଭାବିଲି କେଡ଼େ ଜବର ଏ ମାଇକିନା । ଭାବୁଥିଲି କହିଦେବି କାଜ୍‌ଫାଜ୍ କିଛି ନାହିଁ । ଏତେ କଥାର ଉତ୍ତର ମୁଁ ଦେଇ ପାରିବି ନାହିଁ । ଖାଲି ସରଳ ହଁ ଟିଏ କହି ରହିଗଲି ।

ଆଜିକାଲି ଯୁଗ ଯାହା ହେଲାଣି । ଭାରତୀୟ ଦଣ୍ଡବିଧି ଆଇନ ବଳରେ ସ୍ତ୍ରୀଲୋକ ଗୁଡ଼ା ପୁରୁଷଙ୍କୁ ଯେମିତି ଚାହିଁଲେ ସେମିତି ନିର୍ଯ୍ୟାତିତ କରିପାରୁଛନ୍ତି । ଏକେ ତ ଏ ମୋ ପାଇଁ ଅପରିଚିତ ଜାଗା , ତା ଉପରେ ପୁଣି ଏ ଜଣେ ସ୍ତ୍ରୀ ଲୋକ । ସାବଧାନ ନ ରହିଲେ କଥା କୁଆଡ଼ିକି ଯିବ କହିହବ ନାହିଁ ।

ଭଦ୍ର ମହିଳାଙ୍କ ହସ ହସ ଚେହେରାରୁ ଲାବଣ୍ୟ ଫୁଟି ଉଠୁଥାଏ । ଘନକୃଷ୍ଣ କବରୀ ଓ ଆଖିର ଗଠନ ଏତେ ଆକର୍ଷଣୀୟ ଯେ ଯେତେ ଚେଷ୍ଟା କଲେବି ଆଖି ଫେରାଇ ହେଉନି । ଥରେ ଅଧେ ବୁଲି ଆସୁଚି ଈଶ୍ୱର ସୃଷ୍ଟିର ଲାବଣ୍ୟମୟ ପରିଧି ଆଡ଼େ । ମୁଁ ନୁହେଁ, ସବୁ ଆଖି ସେଠି ଠୁଳ । ଆଖିରୁ ଝରୁଛି ମଧୁ। କଥାରୁ ଯାଦୁ । ଆଖିତଳ,ପାଦ-ପାପୁଲି ଓ ନିତମ୍ବକୁ ନେଇ ତଉଲିଲେ ବୟସ ଚାଳିଶ ପାଖାପାଖି ହୋଇଥିବ ବୋଲି ବିଶ୍ୱାସ । ହେଲେ ସାଧାରଣ ଦୃଷ୍ଟି ଦେଖି ଦେଇ କହିବ ତିରିଶ ପଇଁତ୍ରିଶ ବର୍ଷର ଯୁବତୀ କନ୍ୟା। ଚଳଚଞ୍ଚଳ ଓ ମୁଖର । ପାଖକୁ ଉଠି ଆସିବାର ଆଉ କ'ଣ କାରଣ ହୋଇପାରେ ?

ମୋତେ ଆଗରୁ କୋଉଠି ଦେଖି ଚିହ୍ନିଛି ? ସେବି କିଛି ମିଳୁନି । ବେଳକୁ ବେଳ ସଂଦେହ ପାହାଡ଼ ରୂପଧରି ମୋ ଉପରେ ଯେତିକି ଯେତିକି ଚାପି ହୋଇ ପଡୁଥାଏ, ମୁଁ ସେତିକି ସେତିକି ବ୍ୟତିବ୍ୟସ୍ତ ଓ ଅତିଷ୍ଠ ହୋଇ ଉଠୁଥାଏ । ଲାଗୁଥାଏ ଅଣନିଶ୍ୱାସୀ ହୋଇଯାଉଛି ମୁଁ । ମୋ ରାଇଜ ଥିଲେ ମୁଁ ଆହୁରି ପାଖକୁ ଲାଗି ବସିଥାନ୍ତି। ଭଲ ଆଳାପ କରୁ କରୁ ତାର ସମସ୍ତ ଠିକଣା ପତ୍ର ବୁଝି ନେଇଥାନ୍ତି । ଯାତ୍ରା ଅତି ସ୍ମରଣୀୟ ଓ ସୁଖକର ହୋଇଥାନ୍ତା ।

କି ଯୋଗରେ ଏ ଜନ୍ତୁ ଆସି ପହଞ୍ଚିଲା ମୋତେ କେମିତି ଭାରି ଭାରି ଲାଗୁଚି । ଯାତ୍ରାଟା ବିଷାକ୍ତ ହୋଇଗଲା ଜାଣ। ଯେକୌଣସି ଆସନ୍ନ ବିପଦ ଆଶଙ୍କା କରି ମୋତେ ଶେଷଯାଏଁ ଯିବାକୁ ପଡ଼ିବ ।

କମ୍ପାଟ୍ମେଣ୍ଟ୍‌ରେ ବସିଥିବା ଲୋକମାନଙ୍କର ଏଆଡ଼କୁ ଆଦୌ ନଜର ନାହିଁ। ଦଳେ ବସି ନାନା ଟୀକାଟିପ୍ପଣୀ କାଟି ଠୋ ଠୋ ହସରେ କମ୍ପାଉଛନ୍ତି କମ୍ପାଟ୍ମେଣ୍ଟ୍ ।

ଇଚ୍ଛା ହେଉଥିଲା ଏଠୁ ସିଟ୍ ଚେଞ୍ଜ୍ କରି ଆଉ କୋଉ କମ୍ପାଟ୍ମେଣ୍ଟ୍‌କୁ ଚାଲିଯିବି । କୋଉଠି ବି ଖାଲି ନାହିଁ । ପିମ୍ପୁଡ଼ି ମନ୍ଦାପରି ଖୁନ୍ଦାଖୁନ୍ଦି ହୋଇ ଠିଆ ହୋଇଛନ୍ତି ଯାତ୍ରୀଦଳ । ଉଠିଲ ମାନେ ଆଉ ସିଟ୍ ପାଇବ ନାହିଁ । ଛାଡ଼ !

ଭଦ୍ରମହିଳାଙ୍କ ସହିତ ମିଶି ଏକାକାର ହୋଇଯିବାକୁ ପଡ଼ିବ । ଆପଣା ପରିମିତ ସୀମାକୁ ଜଗି ଅନ୍ତତଃ ହାଲକା ମନରେ ଯାତ୍ରାଟା ସୁଖକର ହୋଇପାରିବ । ପୀଡ଼ାଦାୟକ ହେବ ନାହିଁ ।

ନିଜ ଭିତରେ ଆପୋଷ ବୁଝାମଣା କରି ମୋତେ ଶେଷକୁ ମୋ ନିଷ୍ପତ୍ତିରୁ ଓହରିବାକୁ ପଡ଼ିଲା ।

ଥରେ କମ୍ପ୍ରୋମାଇଜିଂ କରିବା ଆରମ୍ଭ କରିଦେଲ ମାନେ ଟେନ୍‌ସନ୍ ଗଲା ବୋଲି ଜାଣ । ମଣିଷ ଭିତରେ ଏପରି ଏକ ଅହଂକାର ଅଛି ଯାହା କେବେବି ତାକୁ କମ୍ପ୍ରୋମାଇଜିଂ ଟେବୁଲ୍ ଉପରକୁ ଟାଣିନେଇ ଯାଏ ନାହିଁ । ଫଳରେ ଅନେକ ସମସ୍ୟାର ଶିକାର ହୋଇଯାଏ ମଣିଷ ।

ସମସ୍ୟା ମଣିଷର ମଣିଷପଣିଆକୁ ଖାଇଯାଏ ।

ସମସ୍ୟା ମଣିଷ ପ୍ରାଣ ସତ୍ତାକୁ ଶୋଷିନିଏ ।

ସମସ୍ୟା ମଣିଷକୁ ଆଗକୁ ଯିବାକୁ ଦିଏ ନାହିଁ ।

ଗୋଟିଏ ସମସ୍ୟ ସୃଷ୍ଟି କରିଚାଲେ ସମସ୍ୟା ପରେ ସମସ୍ୟା ।

ଯୋଉଠି ଟେନ୍‌ସନ୍ ଶେଷ୍ , ସେଠି ସମସ୍ୟାର ଶେଷ୍ । ଭାବି ସ୍ଥିରକଲି ଭଦ୍ରମହିଳାଙ୍କ ଅତି ଅନ୍ତରଙ୍ଗ ଜଣେ ଭଳି ହୋଇ ଯାତ୍ରାଟିକୁ ବିତେଇବାକୁ ପଡ଼ିବ ।

ଭାବନାକୁ ରଙ୍ଗ ଦେବାକୁ ଯାଇ ଭଦ୍ରମହିଳା ପଚାରିଲେ '-ବୋଲ୍‌ପୁରେର୍ କୋଥାଏ ଥାକ୍‌ବେନ୍ ? କତଦିନ୍ ?

'ଜାନିନା' । ଖଣ୍ଡିଉଡ଼ା ଦଉଥିବା ବଙ୍ଗଳାଭାଷାରେ ବୁଝାଇ ଦେଲି-'କାମ ସରିବା ଯାକେ ରହିବି । ସରିଗଲେ ଗୋଟାଏ ଯୋଡ଼ାଏ ଦିନ କଲିକତାରେ ରହିବି ତାପରେ ଫେରିଯିବି ନିଜ ସହରକୁ । ଛୁଟିଆଣିଛି ଅଗଷ୍ଟ ମାସ ୨୮ ତାରିଖ ଯାଏ । ଦରକାର ହେଲେ ବଢ଼ାଇବି । ରିଜରଭେସନ୍ ବି ଅଛି ୨୮ତାରିଖ ପାଇଁ । ଆବଶ୍ୟକସ୍ଥଳେ ଟିକେଟ୍ କ୍ୟାନ୍‌ସଲ୍ କରି ଜେନେରାଲ୍ ବଗିରେ ଦିନବେଳେ ଯିବି ।

ଦେଖିଲି ଏ ମହିଳା ଜଣକ ମୋ ପିଛାରେ ଲାଗି ଗଲାଣି । ଏହାର କୌଣସି ଗୋଟେ ବଡ଼ ସାଜିସ୍ ଅଛି । ନଚେତ ଏତେ କଥା ପଚାରୁଚି କାହିଁକି ? ମୁଁ ବି ତାକୁ ଛାଡ଼ିନି । ଓଲଟା ପ୍ରଶ୍ନ କଲି -

ଆପଣ ମ୍ୟାଡ଼ମ ମୋତେ ଏତେକଥା ପଚାରିବାର କାରଣ କଅଣ ? ଆପଣ କଅଣ ବୋଲ୍‌ପୁରରେ ରହନ୍ତି ?

'ନା ! ନା ! ଆମି ଏକଟୁ କାଜ୍‌ନିଏ ଏସେଛି । ଥାକବେ ଦୁଚାର୍ ଦିନ । ମନ୍ ହଲେ ଥାକ୍‌ବି । ନା ହଲେ ଚଲେ ଯାବି ।'

'ଆମାର୍ ପ୍ରଶ୍ନର ବୁରା ମାନ୍‌ବେନା । ଆମି ଏକଟୁ ଏମନି ଜିଗେସ କରେ ଦିୟେଛେନ୍ । ହୟତ ଆମ୍‌ରା କିଛୁଟା ହେଲପ୍ କରେଦିତେ ପାରି।' ଏକଥା ଶୁଣି ମୋତେ ରାଗ ମାଡ଼ିଲା। ମୁଁ ଝଟ କିନେ କହି ପକାଇଲି ।

'ନାନା! ଥ୍ୟାଙ୍କ ୟୁ ! ଆମ୍‌ରା କିଛୁ ହେଲ୍ପ ଚାଇନା ।

ଯାତ୍ରା ସରି ଆସୁଥାଏ ମାତ୍ର ବୋଲ୍‌ପୁରର ସମସ୍ୟା ମୋର ବଢ଼ିଚାଲିଥାଏ । ଭାବିଲି ଷ୍ଟେସନ୍‌ରେ ୟାକୁ ଲୁଚି ଓହ୍ଲାଇଯିବି । ପ୍ରଥମେ ଗାଡ଼ିରହିବା ଆଗରୁ ପଳେଇବି ଆଗଡ଼ବା ଆଡ଼େ । ତା'ପରେ ଅନ୍ୟ ଏକ ଡ଼ୋର୍‌ରେ ଓହ୍ଲାଇ ଷ୍ଟେସନରେ ଲୁଚି ବସିବି । ସମସ୍ତେ ଚାଲିଯିବା ପରେ ବାହାରି, ଏକୁଟିଆ ରିକ୍ସା ଧରି ଯିବି, ୟୁନିଭର୍‌ସିଟି । ସେଠି ଦେଖିବି ଗେଷ୍ଟ୍ ହାଉସ ନଚେତ କୋଉ ସୁବିଧାଜନକ ଲଜ୍ । ଏ ମହିଷାମର୍ଦ୍ଦିନୀ ମହିଳା ମୁହଁରୁ ନ ବର୍ତ୍ତିଲେ ପୈତୃକ ପ୍ରାଣଟି ଏ ବିଦେଶ ମାଟିରେ ଗଲାବୋଲି ଜାଣ।

ଗାଡ଼ି ଲାଗିଲା ବୋଲପୁରରେ । ମୁଁ ପୂର୍ବପ୍ରସ୍ତୁତ ଯୋଜନା ମୁତାବକ କାମକଲି । ମହିଳା କୁଆଡ଼େ ଚାଲିଗଲା । ଛାତିରେ ନିଶ୍ୱାସ ପଶିଲା। ମୁଣ୍ଡଟିକେ ହାଲକା ଲାଗିଲା । ମୁଁ ଦେଖିଲି ବାରମ୍ବାର ଏଣେ ତେଣେ ଚାହିଁ ଚାହିଁ ସେ ମୋତେ ଖୋଜୁଥିଲା । ଆଉ ସାମନାରେ ଅଛି ଯେ ପାଇବୁ ?

ଥା ! ଦେଇଚି ପାନେ । ଆରେ ବାପରେ ବାପ୍ ଗୋଟା ପଣେ ଶିକାର ସଂଧାନୀ ସିଂହୀ ?

ପୁଣିଥରେ ପରଖ କରିନେଲି ଚାରିଆଡ଼ ଚାହିଁ। ସେବି ହୁଏତ ମୋତେ ଛକି କୋଉଠି ମୋରି ପରି ଲୁଚିବସିଥିବ । କ'ଣ ଗୋଟେ ବଡ଼ ମତଲବ୍ ଅଛିନା ତାର। ଯାହା ହେଉ ରକ୍ଷା ହୋଇଗଲା । ପିଲାଛୁଆ ସଂସାର ଉଚ୍ଛନ୍ନ ହୋଇଯାଇଥାନ୍ତା । ଅଳ୍ପକେ ରକ୍ଷା ପାଇଗଲା ।

ପାଦ ଚିପି ଚିପି ପଦାକୁ ବାହାରିବା ମାତ୍ରେ ସ୍ତ୍ରୀ ଲୋକଟି କୋଉଠିଥିଲା କେଜାଣି ଆସି ହାଜର। 'କୋଥାଏ ନେମେ ଗେଲେ ଆପନି ? ଆମି ଏକ୍‌ବାର୍ ହତାଶ୍ ହୟେ ଗିୟେ ଛିଲାମ୍ । ନୟାଲୋକ୍ ସ୍ଥାନ୍ ବି ନତୁନ୍' ପ୍ରଥମବାର ଏସେଛି । ଆପ୍‌ନାର୍ ଏକଟୁ ସମସ୍ୟା ହବେ ନା ?

ଆଉ କ'ଣ କହିବାକୁ ଚାହୁଁଥିଲା ସ୍ତ୍ରୀଲୋକଟା ମୁଁ ପୁଣିଥରେ ଥ୍ୟାଙ୍କ୍ ୟୁ କହି ଗୋଟେ ରିକ୍‌ସାକୁ ଡ଼ାକିଲି । ଅପରିଚିତ ପରି ଅଭିନୟ କରି ରିକ୍‌ସାବାଲା ଆଡ଼େ ଚାଲିଲି ।

ଦେଖିଲି କାର୍‌ଟି ମୋ ଆଡ଼େ ମାଡ଼ିଆସୁଛି। ଆଡ଼େଇ ଯିବାର ଉପକ୍ରମ କରୁଚି, ସ୍ତ୍ରୀ ଲୋକଟି କହିଉଠିଲା '-ମସେ ଓଇ ଗାଡ଼ିତେ ବସୁନ୍ । ଆମି ଆପନାର୍

ସବ୍ କିଛୁ  ବ୍ୟବସ୍ଥା କରେ ଦିଏଛି ।  କିଛୁ ମନେ କରବେନ୍ନା । ଏଇ ଏକଟୁ ମାନବିକ୍ ସାହାଯ୍ୟ ଆମ୍‌ରା । ନମସ୍କାର୍ । ଆସ୍‌ଚି ।

ଡ୍ରାଇଭର ଗାଡ଼ି କବାଟ ଖୋଲି ମୋଠାରୁ ବ୍ୟାଗ୍ ନେଇଥୋଇ ଦେଲା ଗାଡ଼ି ପଛପଟ ଡ଼ିକିରେ। ଆପେ ଆପେ ହାତରୁ ଖସିଗଲା ଆଟାଚ୍  । ମୁଁ ସୁନାପିଲା ପରି ବସିଗଲି ଗାଡ଼ି ଭିତରେ । ଗାଡ଼ି ଚାଲିଲା  । ସ୍ତ୍ରୀ ଲୋକଟି ଆଉ ଏକ ଗାଡ଼ିରେ ମୋତେ ଶୁଭ ଅଭିବାଦନ ଜଣାଇ ମୋ ନଜରରୁ ଦୂର ହୋଇଗଲା । ଗାଡ଼ିଲାଗିଲା ବୋଲପୁର୍ ସର୍କିଟ ହାଉସ୍ କ୍ୟାମ୍ପସ୍‌ରେ । ଏକ ନମ୍ବର ଏସି ରୁମ୍ ମୋ ପାଇଁ ବ୍ୟବସ୍ଥା ହୋଇସାରିଥିଲା । କେୟାର୍ ଟେକ୍‌ର୍ ମନାନ୍ ଏବଂ ପରେଶ୍ ଦୁହେଁ ଆସି ବୋହି ନେଇଗଲେ ମୋର ବ୍ୟାଗ ଓ ଆଟାଚ୍ ।  ବହୁ ଭଦ୍ର ବ୍ୟବହାର ପ୍ରଦର୍ଶନ କଲେ। ଭକ୍ତିମତାରେ ତରଳିଗଲେ। ମୋର କି କି ଦରକାର, ଯେତେବେଳେ ଯାହା ଦରକାର କହିବି। ବେଲ୍ ବଜାଇ ଡ଼ାକିବି। କିଛି ଅସୁବିଧା ହେଲେ ଡ଼ାକି ଦେବି । ଖାଇବି କି ନାହିଁ । କ'ଣ କିଛି ଆଣି ଦେବିକି  ? ଇତ୍ୟାଦି ପଚାରିଗଲେ ଦି'ଜଣ ।  ବୋକା ପାଲଟି ମୁଁ କେବଳ ତର୍ଜମା କରୁଥାଏ ଘଟଣା ପ୍ରସଙ୍ଗକୁ । ଏତେଗୁଡ଼େ ଆତିଥ୍ୟ ଅଭିବାଦନ, ଅଭିନନ୍ଦନ ପଛରେ କ'ଣ ଯେ କାରଣ  ଥାଇପାରେ ତାର ସାମାନ୍ୟତମ ସୂତାଖିଅ ପାଇ ପାରୁ ନଥାଏ ମୁଁ ।

ବେଳେ ବେଳେ ମଣିଷ ସ୍ୱପ୍ନ ଦେଖେ । ସ୍ୱପ୍ନ ସତ ହୁଏନା। ଅଥଚ ମୁଁ ସ୍ୱପ୍ନ ଦେଖି ନଥିଲେ ବି ଏହା କିପରି ସତ୍ୟ ହୋଇ ପାରୁଚି  ? ମୋତେ ସ୍ୱପ୍ନ ଦେଖିବାକୁ ପ୍ରଲୋଭିତ ଓ ପ୍ରଭାବିତ କରିପାରୁଚି ? ତାହା ଭାବି ଠିକ୍ କରିବା ପାଇଁ ଅନ୍ତତଃ ଆଉ କିଛିଦିନ ଲାଗିବ । ମୋର ମନେପଡ଼ିଗଲା ଆରେ ମୁଁ ତ ଆଉଗୋଟେ ବୋକା କାମ କରିଛି । ସ୍ତ୍ରୀ ଲୋକଟାର ନାଁ ଗାଁ ଠିକଣା ପଚାରି ରଖିନଥାନ୍ତି ? ଟେଲିଫୋନଟା ହେଲେ ଥାନ୍ତା ଯଦି ପଚାରି ବୁଝି ନେଇଥାନ୍ତି କେୟାର ଟେକର୍ ମନାନ୍ ଆଉ ପରେଶକୁ ?

ପରିସ୍ଥିତିକୁ ମୁକାବିଲା କରିବାକୁ ଯାଇ ନିଜକୁ ଆଶ୍ୱାସନା ଦେଲି ଓ  ଦମ୍ ଧରିଲି "ଦେଖାଯାଉ କଅଣ ହେଉଛି  ? ଯାହା ହବ ହବ ଆଉ କ'ଣ  ?"

ଶୀତତାପ ନିୟନ୍ତ୍ରିତ ଏକନମ୍ବର ରୁମ୍‌ରେ ପଶି ଗାମୁଛା ଲୁଙ୍ଗି ବାହାରକରି ଗାଧୁଆ ପାଧୁଆ କଲି । ଟିଫିନ୍ ଆସି ସଜଡ଼ା ହୋଇ ଥୁଆ ହୋଇଥାଏ । ପଚାରିଲି କିରେ ମନାନ୍! ଏ ଟିଫିନ୍ ଆଣିବା ପାଇଁ କିଏ କହିଲା  ? ମୁଁ ତ କହିନାହିଁ  ? ଆଣିଲୁ କେମିତି  ?"

ମନାନ୍ ଉତ୍ତର ଦେଲା । "ବଡ଼ ସାବ୍ ବୋଲେଛି ତୁମି ଆମାର୍ ଗେଷ୍ଟ୍ । ତୋମାର ସବ୍ ଖାତିରି ତାଜିମ୍ ଆମାକେ କର୍‌ତେ ହବେ । କିଛି ମନେ କରବେନା । ଖିଏ ନିନ୍। ଆମାର୍ ସାବ୍‌ଯେ ଏକଟା ପକ୍‌କା ମାନୁଷ। ତାର୍ ହ୍ରିଦୟଟା ଅନେକ ବିଶାଲ୍ । ଖିଏ ନିନ୍ ଆଗେ । ତାର୍‌ପର୍ ଆମି ଆସିଛି। ଆର୍ କି କି ଚାଇ ବୋଲବେ ।"

ବଡ଼ ମୁସ୍କିଲ୍‌ରେ ପଡ଼ିଲା ମଣିଷ । ଅପରିଚିତ ଜାଗାରେ ଅପ୍ରତ୍ୟାଶିତ ଆତିଥ୍ୟ । ଈଶ୍ୱରଙ୍କର ଲକ୍ଷ ଲକ୍ଷ କୃପା । ଧନ୍ୟତୁମେ ଧନ୍ୟ ମୋର ପ୍ରଭୁ । କ'ଣ ଯା ପଛରେ ରହସ୍ୟ ମୋତେ କହିଦିଅ ।

ତଣ୍ଟିରେ ପଶୁନଥିଲେ ବି ସେଓ ଖୁଣ୍ଡ ହଳଦୀ ଗରଗର ପାଚିଲା ପାଟକପୁରା କଦଳୀ , କାଜୁ,ଛେନାକେକ୍ ଆଉ ଅଙ୍ଗୁରତକ ଉଦରସ୍ଥ କରି ସାରିଲା ବେଳକୁ ମନାନ୍ ଆସି ହାଜର୍ ।

ଭାବୁଥିଲି ପଚାରିବି ସାହେବ୍ କିଏ ? ମୋତେ ତ ଚିହ୍ନି ନାହାନ୍ତି । ମୋ ପାଇଁ ପୁଣି କାହା ନିର୍ଦ୍ଦେଶରେ ଏତେ ବ୍ୟବସ୍ଥା କଲେ ?ସେ ପୁଣି ସାହେବଙ୍କର ସଂପର୍କରେ କଅଣ ?

କେୟାର ଟେକର ଦି'ଜଣ ଡ଼ରଡ଼ର ହଉଥିଲେ । ଆଦୌ ପାଖ ପଶୁନଥିଲେ ।

ପଚାରିବି କାହାକୁ । ମୋ ଓଦା ଲୁଙ୍ଗି ଗାମୁଛା ନେଇ ଶୁଖାଇ ଦେବା । ଘରେ ମଶା ଲିକ୍ୟୁଡ଼୍ ଲଗାଇବା । ଏସି ଚଳାଇ ଦେବା । ରୁମ୍ ସ୍ପ୍ରେ ମାରିବା । ଟେଲିଫୋନ୍‌ଟା ନେଇ ମୁଣ୍ଡପାଖ ଷ୍ଟୁଲ୍ ଉପରେ ଥୋଇବା । ଡ଼ାଇନିଂ ଟେବୁଲକୁ ପୋଛିପାଛି ପରିଷ୍କାର ପରିଚ୍ଛନ୍ନ କରିବା । ଯୋତା ପଲିସ୍ କରିବା ଆଦି କାମରେ ଲାଗିପଡ଼ିଥାନ୍ତି ଉଭୟେ । ମୁଁ ୟୁନିଭରସିଟି ବାହାରିବି କହିବା ମାତ୍ରେ ଗୋଟେ ଇଣ୍ଡିକା ଗାଡ଼ିଆସି ପହଞ୍ଚିଗଲା । ଫାଇଲ ପତ୍ର ହାତରେ ଧରି ମନାନ୍ ଗାଡ଼ିର ଡ଼ୋର ଖୋଲିଦେଲା । ମୁଁ ଗଲାବାଟରେ ପୁଣିଥରେ ଭଗବାନଙ୍କୁ ଧନ୍ୟବାଦ ଦେଲି ଯେ- କୋଉ ଜନ୍ମରେ ମୁଁ କୋଉ ପୁଣ୍ୟ କି କଣ ସୁକୃତ କରିଥିଲି ଯାହାର ଫଳ ଆଜି ଅଯାଚିତ ଭାବେ ମିଳି ଚାଲିଛି । ନତୁବା ଯା ପଛରେ ଆଉ କିଛି ପେଞ୍ଚପାଞ୍ଚ ଅଛିକି ? ସର୍କିଟ୍ ହାଉସରେ ରଖିଦେଇ ଗଲାଦିନ ବିଲ୍‌ଚାର୍ଜ କରିଦେବେ ଏକାବେଳକେ ପାଞ୍ଚହଜାର କି ଆଠ ହଜାର ? ତେବେ ଗୋଟେ ଦୃଷ୍ଟିରୁ ଏଇ ସଂଦେହ ସତ ହୋଇ ନପାରେଯେ-ମୁଁ ପଶ୍ଚିମ ବଙ୍ଗଳାର କୌଣସି ଆଇ.ଏ.ଏସ, ଆଇପି ଏସ୍ କମି ଆ. ଇ. ଇ.ଏସ୍ ଅଫିସର, ମନ୍ତ୍ରୀ କି ସାଂସଦ ନୁହେଁ । ନହେଲେ କୋଉ ଡ଼୍ୟୁଟି ଦେଖାଇ ସର୍କିଟ୍ ହାଉସ୍‌ର ଟଙ୍କା ଦେବି । ତେବେ ଚିଟିଂରେ ପଡ଼ିବାର ଆଶଙ୍କା କୋଉଠି ରହିଲା ? ଆଉ କିଛି ନିଶ୍ଚୟ ଅଛି ।

ୟୁନିଭରସିଟି କାମ ସାରି ମୁଁ ଠିକ୍ ଫେରିଆସିଲି ଦିନ ଗୋଟାଏ ବେଳେ । ପରେଶ ମନ୍ତବ୍ୟଟିଏ ପାଶ୍ କଲା ମନାନ୍ ଆଗରେ 'ଅତୋ ଦୀର୍ଘ କାଲ ପରେ ବି ସାବ୍ ଆମରା ସମୟ ଜ୍ଞାନ ଛୋଡ଼େନା । ଏକ୍‌ଟାଇ ତ ଏକ୍‌ଟାଇ ।

ମୋତେ ଖାଦ୍ୟ ପେୟ ଯାହା ଦିଆଗଲା । ଯେଉଁ ପ୍ରକାର ଭକ୍ତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରାଯାଉଥିଲା ଏଥିରୁ ମୋର ଅନୁମାନ ହେଉଥାଏ ଯେ-ମୁଁ ଯେମିତି

ସେମାନଙ୍କର ଜଣେ  କେହି ବଡ଼ ଅଫିସର । ମୋ କଲମ ଗାରରେ ସେମାନଙ୍କ ଭାଗ୍ୟ ବଦଳିଯିବ। ଭଲ ସେବା ଭକ୍ତି ଦେଇ ସେତକ ମୋଠୁ ହାସଲ କରିନେବେ। କାଳେ ଆଉ ଥରେ ଦେଖା ହେଲାବେଳକୁ ଅନେକ ଦିନ ଗଡ଼ିଯିବ ?

ରହସ୍ୟମୟ ସଂସାରକୁ ପଢ଼ିବା ସାଧାରଣ ମନୁଷ୍ୟ ପକ୍ଷେ ସମ୍ଭବ ନୁହେଁ । ଘଟଣାର ଥଳକୂଳ କିଛି ମିଳୁନଥାଏ । ରହିବା ଆଜକୁ ଚାରିଦିନ ହୋଇଗଲା। କୌଣସି କଥାରେ ଊଣା ନାହିଁ । ମୋ କାମ ସରିଗଲା । ଏଯାଏଁ  ସେ ଭଦ୍ରମହିଳାଙ୍କର କିଛି ଖବର ପାଇ ହେଲାନାହିଁ । ଏସବୁ  ଘଟଣା ପଛରେ ସେଇ ଏକା ସ୍ତ୍ରୀଲୋକଟିର ହାତଥିବ ବୋଲି ମୁଁ ନିଃସନ୍ଦେହ ହେଲି ।  ତେବେ ସେ  କିଏ ? ମୋତେ କାହିଁ କି ଏତେ ସୁବିଧା ସୁଯୋଗ ଯୋଗାଇ ଦେଲେ  । ମୋଠୁ ତ ତାଙ୍କର କିଛି ପାଇବାକୁ ନଥିଲା କି ନାହିଁ । ତେବେ କୋଉ ହେତୁରୁ ସେ ଏପରି ବ୍ୟବସ୍ଥା କଲେ ? ଅସରନ୍ତି ପ୍ରଶ୍ନ । ଅସରନ୍ତି ଉତ୍ତର । ଅସମାହିତ ତର୍ଜମା । ଅଧୁରା ଅନ୍ୱେଷଣ । ଅନାମିକାର ଆଖିପରି ଅତି ଭାବ ଗମ୍ଭୀର ଓ ତାତ୍ପର୍ଯ୍ୟ ପୂର୍ଣ୍ଣ ଏ ଘଟଣା ଚକ୍ର ।

ଆଜି  ଫେରିଯିବାକୁ ହେବ ମୋତେ କୋଲ୍‌କାତା। ସେଠୁ ଫେରିବାକୁ ହେବ ଆସନ୍ତା ୨୮ ତାରିଖ ରାତିରେ। ହାତରେ ଆଉ ମାତ୍ର ଦୁଇଦିନ। ନିୟମିତ ବ୍ୟବସ୍ଥାରୁ ଟିକେ ବି ଏପଟ ସେପଟ ନାହିଁ । ମନ୍ତ୍ରୀ ସାଂସଦଙ୍କ ଗସ୍ତକାର୍ଯ୍ୟକ୍ରମ, ସଭାସମିତି ର ସବୁକାମ ଠିକ୍‌ଠିକ୍, ଫୁଲ୍ ପଙ୍କଚୁଆଲିଟି ।

ଗାଡ଼ି ଲାଗିଲା । ମନାନ୍ ଓ ପରେଶ୍ ଆଟାଚ୍ ଆଉ ବ୍ୟାଗ୍ ଧରି ଧାଇଁଲେ ଗାଡ଼ି ଆଡ଼େ । ଡ଼ିକିଖୋଲି ରଖିଲେ । କୃତ୍ୟକୃତ୍ୟ ହେବା ଭଙ୍ଗୀରେ ମୋଠୁ କଅଣ ଗୋଟେ ଆଶ୍ୱାସନା ପାଇବାକୁ ଅପେକ୍ଷା କଲେ । ମୁଁ ଦିହିଁଙ୍କ ହାତରେ ଶହେଟଙ୍କିଆ ଦିଖଣ୍ଡ ଗୁଂଜି ଦେଲି। ଟଙ୍କା ନ ନେଇ ଆଉ କ'ଣ ଶୁଣିବାକୁ ଯେମିତି ଦିହିଁଙ୍କର କାନ ଠିଆ ହୋଇଥିଲା । ଗାଡ଼ି ଚାଲିଲା। ମୁଁ ଦେଖିଲି ସେମାନଙ୍କ ମୁହଁ ଶୁଖିଗଲା  । ଟଙ୍କା ତାଙ୍କପାଇଁ ଖୁସିର ଉପହାର ନଥିଲା  । ଦିହେଁ କାନ୍ଦି ପକାଇଲେ । ମୋ ମନ ଶୀତେଇ ଉଠିଲା। ପହଞ୍ଚିଲି ବୋଲ୍‌ପୁର ଷ୍ଟେସନ ।

ଡ୍ରାଇଭର ଗାଡ଼ିରୁ ମାଲ୍‌କାଢ଼ି ପ୍ଲାଟ୍‌ଫର୍ମର ଦଶନମ୍ବର ବଗି ରହିବା ଥାନରେ ଥୋଇ ସାଷ୍ଟାଙ୍ଗ ନମସ୍କାର ଜଣାଇ ଫେରିଗଲା । ଦେଖିଲି ପୁଣି ସେଇ ଭଦ୍ର ମହିଳା ମୋ ବଗିରେ ବୋଧେ ହୁଏ ତାଙ୍କର ଉଠିବାର ଥିଲା ।

ଏଠି ଆଶ୍ଚର୍ଯ୍ୟ ହେବାର ଗୋଟିଏ କଥା ଥିଲା ଯେ-ଟିକେଟ୍ ତ ମୋ ପାଖରେ, ରିଜର୍ଭେସନ୍‌ତ ମୁଁ କରିଛି । ଦଶନମ୍ବର କୋଚ୍‌ରେ ସିଟ୍ ଅଛି ବୋଲି ଡ୍ରାଇଭର ଜାଣିଲା କେମିତି ? ପୁଣି ଏ ଭଦ୍ର ମହିଳାବି ସେଇ କୋଚ୍‌ରେ ?

"ଆରେ । ଆରେ !'ଡ୍ରାଇଭରଟା ପଇସା ନେଇନି ପଳେଇଲା । ଉଚ୍ଚସ୍ୱରରେ ଡ଼ାକ ଛାଡ଼ିଲି - "ଡ୍ରାଇଭର ! ଡ୍ରାଇଭର !। ଶୁଣିଲା ନାହିଁ କି ଶୁଭିଲା ନାହିଁ ଜାଣେନା ।

ମୁଁ ନିଜକୁ ଖୁବ୍ ଦୋଷୀ ମନେକଲି । ଜିନିଷ ଧରି ପୁଣି ଥରେ ଓଭରବ୍ରିଜ୍ ଚଢ଼ି ସେପଟ ଏପଟ ହେଲାବେଳକୁ ଟ୍ରେନ ଚାଲିଯିବ ଭାବି ନିଜ ବିସ୍ମୃତିକୁ ଖୁବ୍ ଗୁଡ଼ାଏ ଗାଳି ଗୁଲଜ୍ କଲି ।

ବୋଲ୍‌ପୁରରେ ମୁଁ ଏତେ ଋଣୀହୋଇ ଗଲି ଯେ ଜୀବନସାରା ତାକୁ ଆଉ ଶୁଝିପାରିବି ନାହିଁ । ଭଦ୍ର ମହିଳା ମୋତେ ଦେଖିବାର ଅଭିନୟ କଲେ । "ହ୍ୟାଲୋ ! କେମନ୍ ଆଛେନ୍ ? କିଛୁ ସମସ୍ୟା ହଏନା ତ ? କାଜ୍ ଗୁଲୋ ହୟେ ଗାଲୋ ?"

'ହାଁ' । ଆଜ୍‌କେ ଆମି କୋଲ୍‌କତା ଜାବୋ ଓଖାନ୍ କାଲ ଥାକ୍‌ବୋ । ତାର୍ ପର ରାତ୍ ଗାଡ଼ିତେ ଆମରା କାଛେ ଚଲେ ଯାବୋ । ଆପନି କୋଥାୟ ଛିଲୋ । ଆପନାର୍ କାଜ୍‌ଟା ହୟଗାଲୋ ତ ? ବୋଲ୍‌ପୁରେ ଆମି ଅତୋ ଘୁରେଛି କାଇଁ ଦେଖ୍‌ତେ ପାରିନା ତୁମାକେ । କୋଥାୟ ଥାକ୍‌ତେ ଛିଲୋ ?' ଯାହା ଖଣ୍ଡି ମଣ୍ଡି ବଙ୍ଗଳା ଆସୁ ମୁହଁକୁ, କହି ଦେଇ ଟ୍ରେନ୍ ଆସିବା ଲକ୍ଷ୍ୟକଲି ।

ପୁଣିଥରେ ଟ୍ରେନଯାତ୍ରା ମୋର ଫୁଲ୍‌ଟେନ୍‌ସନ୍ ହୋଇଗଲା । ବଡ଼ ନିର୍ବିକାର ଜଣା ପଡୁଥାଏ ସ୍ତ୍ରୀ ଲୋକଟି । ତାର ଇଚ୍ଛା ମୋତେ ସେ ବାରମ୍ବାର ଦେଖିବ । କ'ଣ ଖୋଜୁଛି ସେ ମୋ ପାଖରୁ କେଜାଣି ?

ଏଥର ବି ଟ୍ରେନରେ ତା' ସିଟ୍ ଥିଲା ମୋ ପାଖରେ । ସେଇ ଝରକାକୁ ଲାଗି । ହେଲେ ଶହେ ପାଞ୍ଚ ଛଅ ନ ହୋଇ ଥିଲା ଚଉବନ ପଞ୍ଚାବନ । ଏଥିରୁ ଲାଗୁଛି ସ୍ତ୍ରୀଲୋକଟିର କିଛି ଗୋଟେ ଖୁବ୍ ବଡ଼ ପ୍ରଭାବ ଅଛି । ସବୁକିଛି ମ୍ୟାଜିକ୍ ପରି ଲାଗୁଛି । ଗୋଇନ୍ଦା ଗପ ଯେମିତି ଯେତିକି ସସ୍‌ପେନ୍‌ସିଭ ସେତିକି ରୋମାଞ୍ଚକର ।

ହାଓଡ଼ା ପର୍ଯ୍ୟନ୍ତ ସେଇ ଏକା ଢ଼ଙ୍ଗରେ ମୋତେ ଆପଣେଇ ନେବାକୁ ପଡ଼ିଲା ମୋ ନିଜର ଭାଗ୍ୟ ।

ଗାଡ଼ି ରହିବା ମାତ୍ରେ ମହିଳା ଜଣକ ଧରି ପକାଇଲେ ମୋ ଆଟାଚର ହ୍ୟାଣ୍ଡଲ । ବଡ଼ ନର୍ମାଲ୍ ଢ଼ଙ୍ଗରେ କହିଲେ ଆସ ବ୍ୟାଗଧରି ଆସ । ମୁଁ ବି କଥାମାନି ଚାଲିଲି । ଏଇଠି ମୋର ଧାରଣା ସ୍ପଷ୍ଟ ହୋଇଗଲା ଯେ ମୁଁ ନିଶ୍ଚୟ ଆସନ୍ନ ସଂକଟରେ ପଡ଼ିଗଲି । ଭାଗ୍ୟରେ କି ଦୁର୍ଯୋଗ ଅଛି କେଜାଣି ? ଭାବୁଚି ଆଟାଚ୍ ଛଡ଼ାଇ ନେଇ ଧାଇଁବି । ପୁଣି ସଚେତନ ହୋଇ ଚିନ୍ତାକଲି ଏମିତି କଲେ ହଜାର ହଜାର ଲୋକ ମୋ ପିଠିରେ ଆଳୁ ଚାଷ କରିଦେବେ । ଚୋରଟିଏ ହୋଇ ଜେଲ୍ ଭିତରକୁ ପଶିବା ଅପେକ୍ଷା ବରଂ ଆଟାଚ୍‌ର ମୋହଟା ଛାଡ଼ିଦେଲେ ଚଳିବ । କେବଳ ଦୁଃଖ ଏତିକି ଯେ-ମୋ ରିସର୍ଚ୍ଚ ଫାଇଲଟା ରହିଗଲା ତା' ଭିତରେ ଓ ତା' ସହିତ କିଛି କିଣାକିଣି କରିବା ପାଇଁ ଥିବା ଟଙ୍କା । "ବିପଦ୍‌କାଳ ସମ୍ପ୍ରେ ଅର୍ଦ୍ଧଂ ତ୍ୟଜ୍ୟତି ପଣ୍ଡିତଃ" । ଛାଡ଼ିଦେବି । ଯାଉ ଆଟାଚ୍‌ଟା । ଗଲେ ଯିବ । ଆଉ କ'ଣ କରିବି ? ଉପାୟହୀନ ।

ଗେଟ୍ ପାରହେଲାପରେ ମୁଁ ପ୍ରିପେଡ୍ କାର୍ ଷ୍ଟଲ୍‌କୁ ଚାଲିଲି । ସେବି ଆସୁଥାଏ ମୋ ସହିତ । କାର୍ ବୁଝା ସରିଥାଏ । ଡ୍ରାଇଭର ଆସି ହାତରେ ଧରି ଆଟାଚ୍ ଓ ମୋ କାନ୍ଧରୁ ଓହ୍ଲାଇ ବ୍ୟାଗ ନେଇଗଲା । ମୁଁ ଇଚ୍ଛା ନକଲେ ବି ବସିଲି କାର୍ ଭିତରେ । ଏଥର ଭଦ୍ରମହିଳା ମୋ ପାଖରେ କାର୍‌ର ପଛସିଟ୍‌ରେ । ଦେହକୁ ଦେହ ଲଗାଲଗି । କ୍ଷତାକ୍ତ ହୃଦୟରେ ପ୍ରଲେପ ଟିକିଏ ଲାଗିଲେ ଯେମିତି ଶୀତଳେଇ ଯାଏ ଯନ୍ତ୍ରଣା ; ଠିକ୍ ସେମିତି ଭଦ୍ରମହିଳା ମୋତେ ସ୍ପଷ୍ଟ କରି ଦେଲେ ମାତ୍ର କେତୋଟି ଶବ୍ଦରେ । ମନ ତାଙ୍କର ଖୁସ୍ ଜଣା ପଡୁଥିଲା ।

'ସନ୍ଦେହ କର୍‌ବେନ୍‌ନା । ଆମିକୋନୋ ଦଲାଲି କି ହେରାଫେରିବାଲି ମହିଲା ନୟ ।' ଆମି ଏକ ଖାନ୍‌ଦାନୀ ପରିବାରେର୍ କନ୍ୟା । ଆଉକ୍ ଏକ୍ ଉଚ୍ଚଶିକ୍ଷିତ ପରିବାରେର୍ କୂଲ୍ ବଧୂ । ଆମାର୍ ଏକଟା ସ୍ୱତନ୍ତ୍ର ପରିଚୟ ଆଛେ ଏ ପଶ୍ଚିମବଙ୍ଗ ପ୍ରଦେଶ ଥେକେ । ଆମାର୍ କଇ ଏକ୍ ଜନ୍ ଲୋକ୍ ଆଛେ ଏଇ ସରକାର୍‌ତେ । କିଛୁ ଭାବ୍‌ବେନ୍‌ନା । ଆଜ୍‌କେ ଆପନି ଆମାର୍ ଗେଷ୍ଟ୍ ହଲେବଲେ ଥାକ୍‌ବେ ।'

ମଣିଷର ରହସ୍ୟ ଭେଦ କରିହେଉନି । ଭଗବାନଙ୍କ ରହସ୍ୟ ଭେଦ କରିବ କେମିତି ? ଗୋଟାଏ ପରେ ଗୋଟାଏ ବିପଦ । ଦେଖିବା କ'ଣ ହଉଚି ।

ଗାଡ଼ି ଲାଗିଲା ଭି.ଆ.ଇ.ପି ରୋଡ୍ କୋଇଲା ବିହାର ଫ୍ଲାଟ୍‌ରେ । ସେଠିଅଛି 'ହଳଦୀରାମ ଭୁଜିଆବାଲା' । ଦୋକାନରୁ ପେଟେ ଖାଇ ପିଇ ଘରେ ପହଞ୍ଚିଲୁ । ଏତେବଡ଼ ଘର । କେହି ନାହାନ୍ତି । ତାଲାଖୋଲି ପଶିଲୁ ଭିତରକୁ । ଚାକର ଟୋକା କୋଉଠି ଥିଲା ଆସି ଓଳାଇ ପକାଇଲା ଭିତର ବାହାର ସବୁ । ମୁଁ ଅପ୍ରସ୍ତୁ ହୋଇଗଲି ।

ସାଜସଜା-- ଆସବାବ ପତ୍ର ଖାନଦାନୀ ସବୁକୁ ନେଇ ତଉଲିଲେ ମୂଳରୁ ମଣ୍ଡଧରି ଆସୁଥିବା ଧାରଣାଟି ସଂପୂର୍ଣ୍ଣ ବଦଳିଯିବ ସ୍ତ୍ରୀଲୋକଟି ଉପରୁ । ମୁଣ୍ଡ ନଇଁ ଯିବ ।

ଏ ଯୁଗରେ ଯେ-ଦେବୀ ଦୁର୍ଗାଙ୍କ ପରି କରୁଣାମୟୀ ଜଗଜନନୀ ମାଆମାନେ ବି ବଞ୍ଚି ରହିଛନ୍ତି ସମାଜରେ, ଭାବିବା ଭୁଲ୍ ହେବ ନାହିଁ ।

ସର୍କିଟ୍ ହାଉସ୍ ଅପେକ୍ଷା ଏଠି ଆତିଥେୟତାର ପରିମାଣ ଖୁବ୍‌ବେଶୀ । ଏଥର ମୁଁ ସ୍ପଷ୍ଟ ହେଲି ଯେ-ମହିଳା ଜଣକ ଆଦୌ ମନ୍ଦ ଶ୍ରେଣୀର ନୁହ କି ଏତେ ଅଯାଚିତ ସେବା, ଭକ୍ତି ଓ ସମ୍ମାନ ଦେବା ପଛରେ ତା'ର କୌଣସି ମନ୍ଦ ଅଭିଳାଷ ବି ନାହିଁ ।

ପରସ୍ପରର ହୃଦୟ ଭିତରେ ଥିବା ଲୁହାର ପାଚେରୀ ମହମପରି ତରଳି ଭାଙ୍ଗିଗଲା । ଉଭୟେ ଖୋଲି ହୋଇଗଲେ ବଣ୍ଡଲ୍‌ର ସୂତାପରି । ଦେଖାଗଲା ଦି ତିନିଟା ଗୁଡ଼ୀ ଉଡୁଚି ଆକାଶରେ । ଫର୍ ଫର୍ । ମନଖୋଲା କଥାଭାଷା । ଆବିଳତାହୀନ । ନିଜ ଘରର । ପରିବାରର ସଦସ୍ୟ ପରି ।

ମୋ କାମ ସରିଯାଇଥାଏ । ଦି'ଦିନ କେତେବେଳେ ଚାଲିଗଲା ବୁଝା ପଡ଼ିଲା ନାହିଁ । ଟ୍ରେନ୍ ଛାଡ଼ିବାକୁ ସମୟ ହାତରେ ଆଉ ମାତ୍ର ତିନି ଘଣ୍ଟା । ମହିଳାଙ୍କ ଅନୁରୋଧ ମୁଁ ଆଉ ଦିନେ ଦି'ଦିନ ପରେ ଯାଏଁ । ମୋତେ ଦୁଇଥର ଟେଲିଫୋନ୍‌ରେ ଡ଼କା ହେଲାଣି ଘରଆଡୁ । ଜରୁରୀ କାମ ଅଛି ଯିବାକୁ ହବ । ଆଉ ରହିପାରିବି ନାହିଁ । ଇଚ୍ଛା ଜମାଟବାନ୍ଧି ଆସୁଥିଲେ ବି ?

ଯିବା ପୂର୍ବରୁ ଅନ୍ତତଃ ପଚାରି ବୁଝିବି – 'ଆପଣ ମୋତେ୍ ଏତେ ଅଯାଚିତ ସ୍ନେହ, ସହାନୁଭୂତି, ସେବା, ଭକ୍ତି ଓ ସମ୍ମାନ ଦେଲେ କାହିଁକି ? ମୁଁତ ଆପଣଙ୍କର କେହି ନୁହେଁ ? ତା'ଛଡ଼ା ଆପଣଙ୍କର ଯା' ପଛରେ କୌଣସି ମତଲବ୍ ନଥିଲା ? ମନ୍ଦ ଅଭିଳାଷ ବି ନାହିଁ । ତା' ହେଲେ କୋଉ କାରଣ ମୋତେ ଆପଣଙ୍କ ଆଖିରେ ଏତେ ପ୍ରିୟ କରାଇ ଦେଲା ? ମହାନ୍ ଦିଶିଲି ମୁଁ ଆପଣଙ୍କୁ ?

'ଦେଖନ୍ତୁ ମ୍ୟାଡ଼ାମ୍' ଏତକ ନ କହିଲେ ମୁଁ ଜୀବନସାରା ସନ୍ତୁଳି ହେଉଥିବି । ମଲାବେଳେ ଅବଶୋଷ ରହିଯିବ । ଏଇ ଯିବା ବାଟରେ ମୋତେ ଅନ୍ତତଃ ସେଥିରୁ କିଛି ସୂଚନା ଦେଇପାରିଲେ ଭଲ ହୁଅନ୍ତା ।'

ଭଦ୍ରମହିଳାଙ୍କ ମୁହଁ ଛଳ ଛଳ ହୋଇ ଉଠିଲା । ଦି' ଆଖିକଣରେ କୋଉଠି ଥିଲା ଶ୍ରାବଣର ଅସରା, ଝରିବାକୁ ଲାଗିଲା । ଅସରନ୍ତି । ଅବିରତ । ରୁମାଲ୍‌ରେ ଆଖି ପୋଛୁ ପୋଛୁ ସେ ମୋତେ ଯାହା କହିଲେ ମୋ ମୁଣ୍ଡ ଚକ୍‌କରୁ ଖାଇଗଲା ।

ଆମେ ପହଞ୍ଚି ସାରିଥାଉ ଷ୍ଟେସନ୍‌ରେ । ଏକୋଇଶି ନମ୍ବର ପ୍ଲାଟଫର୍ମ ପାଖରେ ନିଜ କାରଟା ଥୋଇ ଦେଇ ମୋ ବ୍ୟାଗ୍ ହାତରେ ଧରି ଉଠିଆସିଲେ ମୋ' କୋଚ୍ ମଧ୍ୟକୁ । ଟ୍ରେନ୍ ଲାଗି ସାରିଥାଏ । ଛାଡ଼ିବାକୁ ସମୟ ଅଛି ଆଉ ମାତ୍ର କୋଡ଼ିଏ ମିନିଟ୍ । ମହିଳା କହୁଥାନ୍ତି ।

'ଆଜ୍ଞା ! ମୋ ସ୍ୱାମୀ ଥିଲେ ପଶ୍ଚିମବଙ୍ଗ କ୍ୟାଡ଼ରର୍ ଜଣେ ପୋଖତ ଆଇ.ଏ.ଏସ୍ ଅଫିସର । ସେକ୍ରେଟାରୀ ହୋମ୍ । ତାଙ୍କ ଆଜ୍ଞାରେ ଚାଲୁଥିଲା ଏ ରାଜ୍ୟ । ସେ ଚାହିଁ ଦେଲେ ଅନ୍ୟମାନେ ତାକୁ ଆଦେଶ ମନେ କରୁଥିଲେ । କେମ୍‌ବ୍ରିଜ୍ ୟୁନିଭରସିଟିର ସେ ଥିଲେ ଗୋଲଡ୍ ମେଡ଼ାଲିଷ୍ଟ । ଜ୍ଞାନ ଯେମିତି, ବୁଦ୍ଧି ବିବେକ ଚତୁରତା ସେମିତି । ସ୍ନେହ କରୁଥିଲେ ସେ ମୋତେ ଗାଈ ତା'ର ଛୁଆକୁ ଯେମିତି ସ୍ନେହ କରେ । କେବେ ବି ତାଙ୍କ ଠାରୁ ପଦେ କଡ଼ା କଥା ଶୁଣିବାର ମୋର ମନେ ନାହିଁ । ଯାଇଥିଲେ 'ରୁରାଲ ଡ଼େଭଲପ୍‌ମେଣ୍ଟ' ଉପରେ ରିସର୍ଚ୍ଚ କରିବା ପାଇଁ ହାରଭାର୍ଡ଼ । ଆଉ ଫେରିନାହାନ୍ତି । ମସ୍ତିଷ୍କ ବିକୃତି ଘଟିଲା । ସେ ରହିଲେ ସେଇ ଆଡ଼େ । ଆମେ କେବଳ ଖବର ପାଇଲୁ 'ତାଙ୍କୁ ଭାରତ ଛଡ଼ା ଯାଇପାରିବ ନାହିଁ । ତା'ପରେ ଦିନେ ଖବର ଆସିଲା ସେଇଠୁ –ପାଗଳଗାରଦରୁ ଡ଼ଃ ହିରେନ୍ ମୁଖାର୍ଜୀ କୁଆଡ଼େ ପଳାଇଛନ୍ତି । ତାଙ୍କର ପତ୍ତା ମିଳୁନି । ମୁଁ ଦିନ ଗଣୁଚି ସେ କେବେ ଫେରିବେ । ଆଜକୁ ଦଶ ବର୍ଷ ବିତିଗଲାଣି ।

ବୋଲ୍‌ପୁରରେ ତାଙ୍କ ନାମରେ ଆମର ଜମିଦାରୀ ଥିଲା । କୋଲ୍‌କତାରେ କୋଟି କୋଟି ଟଙ୍କାର ଆକାଉଣ୍ଟ୍ । ଆମ ପରିବାରର ସଭିଏଁ ସାଉଣ୍ଡ୍ । କେହି କାହା ଆଡ଼ିକି ଚାହିଁ ନଜର ଦେବାକୁ ସେମାନଙ୍କର ସମୟ ନାହିଁ ।ଘରେ ମୁଁ ଏକୁଟିଆ । ଶୂନ୍ୟ ଘରର ଛାତ ଭିତରେ ଲେଖା ହେଇଥିବ କୋହଭରା ଗୀତ । ତା ଛଡ଼ା ମୋର ଆଉ ଶୁଣିବାର କଅଣ ଅଛି ।

ବିଗତ ଚାରିପାଞ୍ଚ ଦିନ ହେଲା ଆପଣଙ୍କୁ ଦେଖି ମୁଁ ଫେରିପାଇଥିଲି ମୋର ପୂର୍ବଜୀବନ । ଯେଉଁ ମୁହୂର୍ତ୍ତରୁ ମୁଁ ଆପଣଙ୍କୁ ଦେଖିଲି ସେତିକି ବେଳୁ ଭାବି ସ୍ଥିର କଲି ଆପଣଙ୍କୁ ଜଣାଇ ଦେବି ଯେତକ ଦୁଃଖ ଓ ଅବଶୋଷ ଅଛି ମୋର । ଭିତରେ ଭିତରେ ଦଳି ଚକଟି ହୋଇ ମରୁଥିଲି ମୁଁ ।

ମୁମୂର୍ଷୁପ୍ରାଣ ପାଇଁ ବୁନ୍ଦେ ଜଳ ହୋଇପାରିବେନି ଆପଣ ? ଟ୍ରେନ୍ ଛାଡ଼ିବା ସମୟ ହୋଇଯାଇଥିଲା । ଏଥିଲା ଶେଷ ଘୋଷଣା । ଭଦ୍ର ମହିଳା ସତେ ଯେମିତି ଅପେକ୍ଷା କରୁଥିଲେ ମୁଁ କହେଁ ଆସୁ ନ ମୋ ସାଥୀରେ ଯିବ ଆମ ଘର ? କେମିତି କହିବି ? ଏତିକି ପଚାରିଲି- "ମୁଁ କଅଣ ପାଇଁ ଆପଣଙ୍କ ଆଶ୍ୱାସନାର କାରଣ ହେଲି ?"

ତଳକୁ ଓହ୍ଲାଇ ଝରକା ପାଖରେ ମୁଣ୍ଡ ରଖି କଇଁକଇଁ କାନ୍ଦିକାନ୍ଦି ଭଦ୍ରମହିଳା କହୁଥିଲେ- 'ତୁମି ଏକ୍‌ବାର୍ ଅବିକଲ୍ ନକଲ୍ ଆମାର୍ ହୃତ ସ୍ୱାମୀଦେର୍ । ତୋମାକେ ପେଏ, ଆମି ଭେବେଛି କିଛୁ ହାରିଏ ଯାଏନି ଆମାର୍ । ତୋମାର୍ କି ଚାଇ । ଏଖାନ୍ ଚଲେଏସୋ । ଆମି ସବାଇଦିଏ ଦିବୋ ତୋମାକେ । ଏକ୍‌ଟୁ ବଂଚିତେ ଚାଇ ଆମସ୍ମୃତିକେ ସଜଲ୍ କରେ । ନିସ୍ପ୍ରାଣ ଟ୍ରେନ ଗଡ଼ିବା ଆରମ୍ଭ କଲା । ମୋ ହାତର ଦୂରତ୍ୱ ପର୍ଯ୍ୟନ୍ତ ମୁଁ ତାଙ୍କୁ ଧରିଥିଲି । ସେବି । କାଳକ୍ରମେ ଦୁଇଟି ହାତ ଅଲଗା ହୋଇଗଲା । ଦୂରତ୍ୱ ବଢ଼ିବାକୁ ଲାଗିଲା । ଅନେକ ଦୂରରୁ ମୁଁଦେଖିପାରୁଥିଲି ମହିଳା ଜଣକ ଦିଶୁଥିଲେ ଯେମିତି ଏକ ପଥରମୂର୍ତ୍ତି । ପଥରମୂର୍ତ୍ତିରୁ ଏକ ଅସ୍ପଷ୍ଟମଣିଷର ଛାଇ । ବାସ୍ ! ଲିଭିଗଲା ଆଖିର ଉହାଡ଼ରୁ ହୃଦୟର ଭାଷା । ଅନ୍ଧାର ଭିତରେ ହଜିଗଲା ଚଳମାନ ଜୀବନ୍ତ ବାସ୍ତବତା । ଏଇମାତ୍ର ମୁହୂର୍ତ୍ତକ ଭିତରେ ଏକ ସ୍ୱପ୍ନମୟ କାହାଣୀ ପରି ।

ମୋ ଭିତରଟା କିଏ ଯେମିତି ଭାଙ୍ଗିରୁଜି ଚୁରମାର୍ କରିଦେଉ ଥିଲା ହାତୁଡ଼ିରେ ।

ନିଶାର୍ଦ୍ଧର ନୀରବତା ଭେଦ କରି ଗାଡ଼ିଚାଲିଥିଲା ଧକ୍ ଧକ୍, ଧକ୍, ଧକ୍ ।



## କାଚ ପଥର

"ପାଇବାର ଅଦ୍ୟମ ଉତ୍ସାହ ଅନ୍ଧ କରିଦିଏ ବୋଲି ନ ପାଇବାର ସାମାନ୍ୟ ସୂଚନା ବି ମଣିଷକୁ ଭାଙ୍ଗି ପକାଏ । ପଶୁ , ପକ୍ଷୀ ଓ ଉଦ୍ଭିଦ ଭିତରେ ପାଇବାର ଆଶାଥାଏ କି ନା, ଆଦୌ ବୁଝା ପଡ଼େନା । ଦେବା ପାଇଁ ତାଙ୍କର ଜନ୍ମ । ଏଇ ହେତୁ ସେମାନଙ୍କ ମଧ୍ୟରେ ଥିବା ପାରସ୍ପରିକ ସମ୍ପର୍କ ଅତୀବ ମହାନ , ପବିତ୍ର ଓ ସ୍ୱର୍ଗୀୟ ।"

ଦେବା ପାଇଁ ତୟାର ଥାଏ ଅଶ୍ୱ ତା' ସବାର୍ ପାଖରେ । ଦୁଗ୍ଧବତୀ ଗାଭୀ ତା' ଖାମିନ୍ଦ ସମ୍ମୁଖରେ । ଶ୍ୱାନ ତା ପ୍ରଭୁ ଦୁଆରରେ । ସାରା ପ୍ରକୃତି ଦେବାର ମନ୍ତ ବୋଲୁଥିଲା ବେଳେ, ଏକମାତ୍ର ମଣିଷ କେବଳ ନେବାର ସ୍ୱପ୍ନରେ ବିଭୋର । ସ୍ୱପ୍ନ ଭାଙ୍ଗିଗଲେ ତାର ହୃଦୟ ଭାଙ୍ଗିଯାଏ । ପିତା ପିତା ଲାଗେ ସବୁ । ଘର , ଦୁଆର, ବାପା, ଭାଇ, ମାଆ, ମାଉସୀ । ଏପରିକି ତାର ଅତି ସ୍ନେହା ହସକୁରୀ ସାନ ଭଉଣୀ । ନିରସ ଓ ପ୍ରେମହୀନ ହୃଦୟ ତା'କୁ ଯନ୍ତ୍ରବତ୍ ଟାଣି ନେଇଯାଏ ଶୁଷ୍କ, ମରୁମୟ ପ୍ରାନ୍ତର ଆଡ଼େ । ତା' ଜୀବନର ମାନେ ବୁଝାଇ ଦେବା ଆଗରୁ ଏକ ଶକ୍ତ ଧକ୍କା ଦିଏ । ମୁହଁମାଡ଼ି ତଳେ ପଡ଼ି ସେ ଆଉଟୁ ପାଉଟୁ ହୋଇ ଖୋଜୁଥାଏ ମୋର କିଏ ? ମୋର କିଏ ? କେହି ତାକୁ ନିଜର ଦିଶନ୍ତି ନାହିଁ । ସବୁଥାଇ ତାକୁ ଲାଗେ ତାର କିଛି ନାହିଁ । ସମସ୍ତଙ୍କ ମଝିରେ ଥାଇ ସେ ଭାବୁଥାଏ ତାର କେହି ନାହିଁ ।

ଆକାଶ ଛୋଟ ହୋଇଯାଏ । ମାଟି ଓ ସମୁଦ୍ର ଅତି ସଙ୍କୁଚିତ ଦିଶେ । ସେ ବିଶ୍ୱ ବ୍ୟାପକତାରୁ ଜାକିଜୁକି ହୋଇ ପହଞ୍ଚେ ଗୋଟିଏ ବିନ୍ଦୁରେ । ଏଇଠି ଜୀବନ ତାକୁ ଉପହାସ କରେ । ଚିଡ଼ାଏ । ଅପଦାର୍ଥ ବୋଲି ଗାଳିଦିଏ । ସବୁ ସନ୍ଦେହର କେନ୍ଦ୍ରବିନ୍ଦୁ ପାଲଟିଗଲା ପରେ, ମଣିଷ ନିଜ ଭିତରୁ ବିଶ୍ୱାସ ଟିକକ ହରାଇ ବସେ । ଆଉ ଯେଉଁଦିନ ନିଜ ଉପରୁ ବିଶ୍ୱାସ ତୁଟିଯାଏ, ତାପରେ ମଣିଷ ଜନ୍ମର ଅର୍ଥ କଅଣ ଯେ ! ବଞ୍ଚିବା-ମରିବା ଦି'ଟା ଏକାକଥା ହୋଇଯାଏ ।"

ଆଜି ତମର ସେଇ ଅବସ୍ଥା ହୋଇଛି । ତମେ ବିଶ୍ୱାସ ରଖ। ଜୀବନ ମହାନ । ଏଇ ଜୀବଦ୍ଦଶାରେ ସବୁ ସମ୍ଭବ । ଜୀବନ ପରେ ନୁହେଁ ।

ତମେ ଏ ବିରାଟ ସମୁଦ୍ରର ନୀଳ ବକ୍ଷକୁ  ଦେଖିପାରୁଚ ? ଦେଖ ! ଆଉଥରେ ଆଖି ଖୋଲି ନିରେଖି ଦେଖ । ସୁଦୂର ସମୁଦ୍ରରୁ ଗଭୀର ବକ୍ଷ କିପରି ପ୍ରଶାନ୍ତିର ପ୍ରଶ୍ୱାସ ନେଉଛି ଓ ତା' ଭ୍ରୂକୁଟିରେ ଉକୁଟି ଉଠୁଛି ସ୍ୱପ୍ନପରି ସହସ୍ର ଫେନୀଳ ଲହରୀମାଳ । ମୁଣ୍ଡ ପିଟୁଛି ବେଳାଭୂଇଁ ପରେ । ଖୋଜୁଛି ଥରକୁ ଥର । ଶତକଡ଼ା କେତେ ଭାଗ ସ୍ୱପ୍ନ ତାର ସତହୁଏ, ତମେ ଜାଣ ? ଗୋଟିଏ ବି ନୁହେଁ ।  ହେଲେ ସେ ସ୍ୱପ୍ନ ଦେଖେ । ମଥା ପିଟେ । ଅସ୍ଥିର ହୁଏ । ଥକି ପଡ଼େନା ।

ଘାତ-ପ୍ରତିଘାତ ବିଫଳତାରେ ଜୀବନ ଶକ୍ତ ହୋଇଯାଏ । ଜୀବନଏକ ନଈ । ବହୁଥାଏ ନିଜ ଇଚ୍ଛାରେ । ଯେଉଁଠି ପ୍ରତିବନ୍ଧକ ଦେଖେ, ବାଟଭାଙ୍ଗି ଗତି ବଦଳାଏ । ପୁଣି ପୂର୍ବପରି ବହିଚାଲେ । ଥକି ପଡ଼େନା । ପ୍ରବହମାନତାର ଅନ୍ୟନାମ ନଈ ।

ସାମାନ୍ୟ ଗୋଟେ ଛୋଟ ଧକ୍କାରେ ତମେ ଥକି ପଡ଼ିଲ ?

ଅଭିଷେକ ଚାହିଁଥିଲା ସମୁଦ୍ର ଆଡ଼େ ।

ହୁଏତ ସମୁଦ୍ର ହସୁଥିଲା ଫିକ୍‌ଫିକ୍ ତା' ଆଡ଼େ ଚାହିଁ ।

ଛାତିରେ ବୋଳି ହୋଇଥିଲା ସୁନେଲୀ ଆଭା । ଚିକ୍‌ମିକ୍ ।

ବସାକୁ ଫେରୁଥାନ୍ତି ମାଛରଙ୍କା, କାକତୁଆ ଦିନଯାକର କାମସାରି । ଦିଗ୍‌ବଳୟରେ ମିଟ୍ ମିଟ୍ କରୁଥିବା ତାରାମାନେ ଅଭିଷେକ କରୁଥିଲେ ଯୌବନର ।

ଅନ୍ଧାର  ଓ ନିର୍ଜନତା ହାତ ଧରାଧରି ହୋଇ ଚାଲିବା ଆରମ୍ଭ ଦେଇଥିଲେ । ସମୁଦ୍ର ବେଳାରୁ ଅଧିକାଂଶ ଭ୍ରମଣକାରୀ ପ୍ରସ୍ଥାନ ନେଇ ସାରିଥିଲେ ।  କିଏ କେମିତି ଯିବା ଆସିବା ବାଟରେ ଦିଶୁଥିଲେ ଯୁଗଳବନ୍ଦୀ ରୂପରେ ଝାପ୍‌ସା ଆଲୁଅରେ ।

ପାଖରେ ବସିଥିଲେ ଶର୍ମାଜୀ । ଅଭିଷେକର ଶର୍ମା ଅଙ୍କଲ ।

ସେ ଆଡ଼ିକି ନଜର କରି ସ୍ମିତ ହସୁଥିଲେ ।

ହଠାତ୍ ଗମ୍ଭୀରତା ପ୍ରକାଶ କରି କହି ଉଠିଲେ – "ବୁଝିଲ ବାବା ! ଏଇ ବୟସଟା ବଡ଼ ଡ଼େଞ୍ଜର୍ । ବଡ଼ ବିପଦ ସଂକୁଳ । ବଡ଼ ମୁସ୍କିଲ୍ । ବଡ଼ ଅନ୍ଧ । ହରିବ୍ଲ ।"

ମୋର ବି ଦିନେ ଏଇ ବୟସ ଥିଲା । ପଢୁଥିଲି ତମପରି କଲେଜରେ । ସାଇନ୍‌ସ କଲେଜ ପାଟନାରେ । ସ୍ନାତକ ଶ୍ରେଣୀରେ ଭରଣା ହେଲା ପରେ ମୋ ନାଁ ପ୍ରଚାର ହୋଇ ସାରିଥାଏ କଲେଜରେ । ଦଶଜଣ ଟପରଙ୍କ ମଧ୍ୟରୁ ମୁଁ ଥାଏ ଜଣେ । ମେନ୍‌ଗେଟ୍ କି କରିଡ଼ରରେ  ଗଲାବେଳେ, ଉପର ମହଲା ପାହାଚ ଉଠିଲା, ଓହ୍ଲେଇଲା ବେଳେ, ଲାଇବ୍ରେରୀ, କାଉଣ୍ଟର ସାମାନାରେ ଥିଲେ ମୋ ଆଡ଼େ ବି ତିନି ଡ଼ଜନ ଆଖି ପହଁରି ଆସେ । ଲାଜରେ ମୁଁ ଶଙ୍କି ଯାଏ ।  ମୋର ତ ପିଲାଦିନରୁ ସହଜେ

ଝିଅମାନଙ୍କ ପ୍ରତି ଟିକେ ଆଲର୍ଜି ଥାଏ । ପ୍ରାଥମିକ ଶ୍ରେଣୀରେ ପଢୁଥିଲା ବେଳେ ମୋ କ୍ଲାସରେ ପଢୁଥିଲା ଜଣେ ଅତି ସୁନ୍ଦରୀ ଝିଅ । ସବୁଦିନ ମୋତେ ସେ ଚାହି ଟାପରା କରେ । ଦିନକର ସେ ଗୋଟେ ଗୀତ ଫାନ୍ଦିଲା ମୋ ନାମରେ-

"ହଇରେ ଓଲୁ , ହଇରେ ଓଲୁ
ପଇସାକ ଚିଜ ଟଙ୍କାରେ ନେଲୁ
ବୁଢ଼ିମାଇପକୁ ତୁ ବାହାହେଲୁ
ବେଏଶେ କଲୁ ବେଏଶେ କଲୁ
ଆମକୁ ଟିକିଏ ନାହିଁ କହିଲୁ ?

ଏ ଗୀତ ଶୁଣି ମୁଁ ତାକୁ ନିର୍ଘାତ ପିଟିଲି । ସେ ନିର୍ଧୁମ୍ କାନ୍ଦିଲା । ସେଇ ଦିନଠାରୁ ମୁଁ କଲେଜ ପଢ଼ିବା ଯାଏଁ ଝିଅ ମାନଙ୍କ ପାଖ ମାଡ଼େ ନାହିଁ । କେହି ବି ସାହାସ କରି ଆସି ମୋ ହାତରେ ରାକ୍ଷୀ ବାନ୍ଧି ଦିଅନ୍ତି ନାହିଁ । ସ୍ନାତକ ଶ୍ରେଣୀରରେ ଘଟିଥିବା ଏକ ଦୁର୍ଘଟଣା ମୋ ଧାରଣାକୁ ସମ୍ପୂର୍ଣ୍ଣ ବଦଳାଇ ଦେଲା ।

ନୂଆ ନୂଆ କ୍ଲାସ ସାରି ଯିବା ପାଇଁ ଠିଆ ହୋଇଥାଏ । ମୋ ସହିତ ଠିଆ ହୋଇ ଥାଆନ୍ତି ତିନିଜଣ ନୂଆସାଙ୍ଗ । ପାଖ ରାସ୍ତା ଦେଇ ପାଶ୍ କଲେ ଆମ କଲେଜର କେଇଜଣ ଝିଅ । ଆମ ଭିତରୁ ଜଣେ ଗୋଟେ କମେଟ ମାରିଦେଲା - "Red Rose ! Hallow Red Rose !! !! ଆଓନା ସର୍‌ମାଓନା ଓ ମେରି ଓ ମେରି ସର୍‌ମିଲି ।" ନାଲି ଡ୍ରେସ ପିନ୍ଧି ସାଧବ ବୋହୂ ସାଜିଥିବା ଝିଅ ବୁଲିପଡ଼ି ଦେଖିଲା, କିଏ ? ତା' ଆଡ଼େ ଚାହିଁ, ମୁଁ ଟିକେ ହସିଦେଲି । ମନେ ମନେ ଭାବିଲି ଭଲ ହେଇଛି । ବେଏଶ ହୋଇଛି । ଝିଅ ଗୁଡ଼ା ଆଜିକାଲି ଭାରି ଫୁଲେଇ । ଗୋଟାଏ ଶବ୍ଦରେ କହିଲେ 'ନଖରି' ।

ତା' ପରଦିନ କ୍ଲାସରୁ ବାହାରିଲା ବେଳେ ଦୁଇଜଣ ଜବର ଜବର ଟୋକା ଆସି ମୋ କଲର ଧରି ଟେକିନେଲେ । ମୁଥାମାରି ମୋର ଯୋଗ୍ରାଫି ବଦଳାଇ ଦେଲେ। ସେମାନଙ୍କୁ ମୁଁ ଯେତେ ବୁଝାଇଲି- 'ମୁଁ କମେଟ୍ ମାରି ନାହିଁ' ସେମାନେ ବୁଝିଲେ ନାହିଁ ।

ଏଇ ଘଟଣା ପରେ କଲେଜରେ ଛାତ୍ର ଆନ୍ଦୋଳନ ହୋଇଗଲା । ଦୁଇଜଣ ଆଉଟ୍ ସାଇଡ଼ର ଆସି କଲେଜ କ୍ୟାମ୍ପସରେ ଆମ ଛାତ୍ରବନ୍ଧୁଙ୍କୁ କାହିଁକି ମାଡ଼ ମାରିଲେ ପ୍ରିନ୍‌ସପାଲଙ୍କୁ ଦାବୀପତ୍ର ଦିଆଗଲା । ଏ ନେଇ ଏକ ତଦନ୍ତ କମିଶନ୍ ବସିଲା । ମୁଁ ନିର୍ଦ୍ଦୋଶ ପ୍ରମାଣିତ ହେଲି । ଝିଅଟିର ସମ୍ପୂର୍ଣ୍ଣ ଭୁଲ୍ ହେଲା । ମୁଁ ମାଫ୍ କରିଦେଲି । ବିପଦ ଟଳିଗଲା ।

ଘଟଣାର ଦୁଇ ଚାରି ଦିନ ଯାଇଛି । କ୍ଲାସ୍ ସାରି ମୁଁ କରିଡ଼ର ପାଖରେ ଏକୁଟିଆ ଆସିଲା ବେଳେ ଦେଖିଲି ସେଇଝିଅ ଠିଆ ହୋଇଛି । ଏକାକିନୀ ।

ନିକଟତର ହେଲା ଓ ମାଡ଼ି ଆସିଲା ମୋ ଆଡ଼େ । ମୁଁ ହଡ଼ ବଡ଼େଇ ଗଲି । ବାଟଭାଙ୍ଗି ଚାଲିବାକୁ ଉଦ୍ୟତ ହେଲି । ସେ ମୋତେ ହାତଯୋଡ଼ି ଅନୁନୟ କଲା । କ୍ଷମା ମାଗିଲା । ସବୁ ଭୁଲ୍ ତାର ବୋଲି ସ୍ୱୀକାର କଲା । କ୍ଷମା ନଦେଲେ ତାକୁ ଆଉ ଜୀବନରେ ଦେଖିବାକୁ ମିଳିବ ନାହିଁ, କହିଲା । ମୁଁ ସମସ୍ୟାରେ ପଡ଼ିଗଲି । ଏତେବଡ଼ ପ୍ରଶ୍ନର ଉତ୍ତର ଦେବା ପାଇଁ ମୋ ମୁଣ୍ଡ ଘୁରିଗଲା । ମୋ ଭିତରର ରାଗ, ଦ୍ୱେଷ, କଠୋରତା, ଅହଙ୍କାର, ଘୃଣା ସବୁ କ୍ଷଣକରେ ମିଳାଇଗଲା । ସେଇ ମୂହୁର୍ତ୍ତରେ ମୁଁ ଅତ୍ୟନ୍ତ ଦୁର୍ବଳ ହୋଇଗଲି । ପାଦତଳେ ମାଟି ଖସିଗଲା । ହାତଗୋଡ଼ ଶୀତଳ ହୋଇଆସିଲା ।

ଡ଼େଣା ଭାଙ୍ଗି ଗଲେ ପକ୍ଷୀ ଯେମିତି ଉଡ଼ି ପାରେନା । ଶିଉଳିରେ ପାଦଖସିଗଲେ ବୟସ ପାଦ ଯେପରି ସ୍ଥିରରହି ପାରେନା । ନିଶା ଯେମିତି ମଣିଷକୁ ସମ୍ପୂର୍ଣ୍ଣ ଅବଶ କରିପକାଏ । ମୁଁ ମିଳେଇଗଲି ।

ମୋ ଦେହ ସାରା ଦୁର୍ବଳତାର ବିଷ ଚରିଗଲା । ମୁଁ ଥକ୍କା ମାରି ରହିଗଲି । ଅନ୍ୟମାନଙ୍କ ଉପସ୍ଥିତି ଜାଣି ସେ ସ୍ଥାନ ପରିତ୍ୟାଗ କଲା । ମୁଁ ଲାଚାର୍ ସିପାହୀ ପରି ଦୀର୍ଘ ବାଟ ପର୍ଯନ୍ତ ଠିଆହେଇ ତାକୁ ନିରେଖିଲି । ଖୋଜିଲି, ସବୁଦିନ ତା ବାଟ ଛକିଲି । କଥା ହେବା ପାଇଁ ମଉକା ଉଣ୍ଡିଲି । ହେଲେ ତାର ଦେଖା ମିଳିଲା ନାହିଁ । ମୁଁ ଭୁଲିଗଲି ।

ଇତି ମଧ୍ୟରେ ଚାଲିଗଲା ଚାରିମାସ । ଏତେ ଦିନ ଅନ୍ତରରେ ଯେଉଁ ଦିନ ଦେଖାହେଲା ପ୍ରଥମ କରି ତା ସହ, ସେ ନାଚିଗଲା ଏକ ମୃଗାହରିଣୀ ପରି । ଫିଟିଗଲା ଝରଣା ମୁହଁର ପଥର । ଉଚ୍ଛ୍ୱସିତ ଆନନ୍ଦରେ ଉତ୍‌ଫୁଲ୍ଲ ତରଙ୍ଗ ଧରି ବହିଗଲା ଝରଣା । କଣ୍ଠରୁ ଝରିଆସିଲା କଳକଳ ନିନାଦ । କଣ କହିବାକୁ ଚାହେଁ । ବୁଝିବାର ଔଚିତ୍ୟ ପରଖ କରିବା ଆଗରୁ ସେ କଣ ଗୋଟେ କହୁଥିଲା । ଆଖି ଆଗରେ ଉଛୁଳା ନଈର ଦୃଶ୍ୟ । ମୁଁ ବୁଡିଗଲି ।

ସେଇ ଦିନଠାରୁ ସେ ମୋର ବାଟ ଜଗିଲା । ମୋ ପ୍ରଶଂସା ଗାଇ ବୁଲିଲା । ତା ସାଙ୍ଗମାନଙ୍କ ଆଗରେ ଛାତି ପିଟି ପିଟି ମୋତେ ଦେଖାଇ କହିଲା- 'ଏ ମୋ ଲୋକ । ମୁଁ ନିଜକୁ ସମର୍ପି ଦେଇଛି । ତୁମେ କେହି ଆଖି ଦବ ନାହିଁ । ନଜର ଲାଗିଯିବ ।' ସେ କଥା କାନରୁ କାନ ହୋଇ ଆସି ପହଞ୍ଚିଲା ମୋ କାନରେ ।

ମୋ ଭିତରେ ଗୋଟେ ବ୍ୟତିପାତ ଘଟିଗଲା । ରୁକ୍ଷ ମରୁମୟ ଭୂଇଁରେ କଅଁଳ ପତ୍ରର କୋରସ ଶୁଭିଲା । ସବୁଦିଗ ସବୁଜିମାରେ ଭରିଗଲା । ମୁଁ ବେହୋସ ହୋଇଗଲି ତା କଥା ଭାବି ।

ତା ଚେହେରା ହେଲା ମୋର ସୁନ୍ଦର ଦୃଶ୍ୟ । ତା ମଧୁର କଣ୍ଠ ହେଲା ମୋର ସଙ୍ଗୀତ । ତା ଇଚ୍ଛା ହେଲା ମୋର ଏକମାତ୍ର ସ୍ୱପ୍ନ । ତା ସଦିଚ୍ଛା ହେଲା ମୋର

ଜୀବନ। ତା କାହାଣୀ ଶୁଣି ମୁଁ ଉନ୍ମତ୍ତ ହେଲି। ତା କାର୍ଯ୍ୟ କଳାପ ମୋତେ ସଂସାର ଆଡ଼େ ମୁହାଁଇ ଦେଲା । ତା ଲାଗି ମୁଁ ଉଡ଼ା ଚଢେଇ, ବସା ବାନ୍ଧିବାର ଯତ୍ନ କଲି। କୁଟାକାଠି ଦାନା ସଂଗ୍ରହରେ ମନ ଦେଲି। ସବୁ ଠିକ୍‌ଠାକ୍ ହୋଇସାରିଲା। ପିଞ୍ଜରା ତିଆରି ହୋଇଗଲା। ସେଥିରେ ପଶିବା ଆଗରୁ ପକ୍ଷୀ ଉଡ଼ିଗଲା। ସାତ ସମୁଦ୍ର ତେର ନଈପାରି। ଦୂର ବିଦେଶ। ମୁଣ୍ଡ କଚାଡ଼ି ଅନେକ କାନ୍ଦିଲି। ରକ୍ତ ନିଗାଡ଼ିଲି। କେହି ଶୁଣିଲେ ନାହିଁ । ମନଭାଙ୍ଗି ଗଲା।

ଥରେ ମନଭାଙ୍ଗିଗଲେ ଆଉ କି ଯୋଡ଼ି ହୁଏ ?

ପୁରୀ ପଳାଇ ଆସିଲି । ସେଇ ସମୁଦ୍ର କୂଳକୁ ଅନାଇ, ସାତ ସମୁଦ୍ର ସେପାରିକୁ ଅପେକ୍ଷା କରି ରହିଲି ପୁରୀରେ। ପୁରୀର ପ୍ରଲେପ ଦେଇ ଯୋଡ଼ି ଦେଲି ଭଙ୍ଗା ମନ। ସେଇ ଦିନଠାରୁ ଏଇ ସମୁଦ୍ର କୂଳରୁ କେତେ ଯେ ଭଙ୍ଗା ହୃଦୟ ଗୋଟାଇ ନେଇଛି,ତାର ହିସାବ ରଖିନି। ଯଥାସାଧ୍ୟ ଯୋଡ଼ିଯାଡ଼ି ନୂଆକରି ଦେଇଛି। କେତେଟା ସେମିତି ପଡ଼ିଛି ତମପରି। ଉଦ୍ୟମ କରୁଛି ଯୋଡ଼ିବାକୁ। ଦେଖାଯାଉ। କାଠ ପିତୁଳା ପରି ନୀରବି ଯାଇଥିବା ଅଭିଷେକ ମୁଖର ହୋଇଉଠିଲା- 'ଶର୍ମା ଅଙ୍କଲ୍ ମୋତେ ତମେ କାହିଁକି ବଞ୍ଚାଇଲ ? ସବୁ ହରାଇଲା ପରେ କେମିତି ମୁଁ ଆଉ ନିଜ ଉପରେ ବିଶ୍ୱାସ ରଖିଥାନ୍ତି ? ଅନିଶା ପରି ଝିଅ ମୋତେ ଧୋକା ଦେଇ ଚାଲିଗଲା। କହିଗଲା- ତମଠାରୁ ଅଭିଜିତ୍ ଢେର୍ ପାରିବାର। ଡ଼ଲାର୍ ଆଗରେ ଟଙ୍କାର ମୂଲ୍ୟ କଣ ଅଛି ? ଯା ଠୁ ବଳି ମୋର ବଡ ଦୁଃଖ କଣ ଅଛି ?'

ଦିନଥିଲା। ଯେଉଁଦିନ ଅନିଶା ଥିଲା ଗୋଟାପଣେ ମୋର। ଆଉ କିଏ ତା ନାଁ ଧରିଲେ ମୁଁ ଜଳି ଯାଉଥିଲି। ରକ୍ତ ମୋର ତାତି ଉଠୁଥିଲା। ବାମ୍ଫ ହୋଇ ଉଡୁଥିଲା ମୋ ମୁଣ୍ଡ ଚାରିପଟ। ତାକୁ ସବୁ ପ୍ରକାର ସୁଖ ସୁବିଧା ଓ ସୁରକ୍ଷା ଦେବା ସତେ ଯେମିତି ମୋର ସବୁଠୁ ମୁଖ୍ୟ କାମ ହୋଇ ଯାଇଥିଲା। ମୁଁ କାଇଁ ଅନଧିକାର ଚର୍ଚ୍ଚା କାରିଥାନ୍ତି। ତା ସହିତ ମୋର କୋଉ ପରିଚୟ ଥିଲା ଯେ।

ବାବା ତାର କୋଟିପତି -କଣ୍ଟ୍ରାକ୍ଟର୍ । ଅଲିଅଳି ଝିଅକୁ ରଖିଥିଲେ ଅତି ଗେହ୍ଲାରେ। ସଅଁପି ଦେଇଗଲେ ମୋତେ ସେଦିନ ପ୍ରଥମ ଦେଖାରେ- 'ଅଭିଷେକ। ଝିଅ ତମକୁ ଲାଗିଲା। ତମେ ମଝିରେ ମଝିରେ ଟିକେ ହଷ୍ଟେଲ୍ ଆଡ଼େ ଆସୁଥିବ। ତା କଥା ବୁଝୁଥିବ। ନଜର ରଖୁଥିବ ସବୁଆଡ଼େ। ଅଜିକାଲି ଟୋକା ଗୁଡ଼ା ଭାରି ବଦମାସ୍। ବାଟରେ ଘାଟରେ ହଇରାଣ କରିବେ। କମେଣ୍ଟ୍ ମାରିବେ। ଦରକାର୍ ହେଲେ ମୋତେ ଖବର ଦବ। ନହେଲେ ଜଣାଇବ ତମ ଏଠା ଏସ୍.ପି ସହେବଙ୍କୁ । ସେ ମୋର ସାଙ୍ଗ। ମୁଁ କହି ଦେଇଥିବି। ଛୁଟିହେଲେ ଘର ଆଡେ ଆସିବ ଅନିଶା ସାଙ୍ଗରେ । କଲେଜ୍ ଗୋଟାକରେ ଅନିଶା ପିତାଙ୍କର ଏକମାତ୍ର ପରିଚିତ ବ୍ୟକ୍ତିଥିଲି ମୁଁ ।

ଅଭୟ ମୁଦ୍ରାରେ ପହାଚ ଉଠିବାର ଯୋଉ ସାହାସ ଓ ଆତ୍ମବିଶ୍ୱାସ ଜାତ ହୁଏ; ସେଥିରେ ମଣିଷର ଉତ୍ତରୋତ୍ତର ଉନ୍ନତି ଘଟେ ସିନା, ଅବନତି ଘଟି ନଥାଏ। ମୁଁ ଅନିଶାକୁ ସୁରକ୍ଷା ଦେବାର ଶପଥ ନେଇ ହେଲି କଲେଜ୍ ପ୍ରେସିଡ଼େଣ୍ଟ । ସୁଖ ଦେବାର ଯତ୍ନକରି ହେଲି ଲିଟ୍‌ରାରୀ ଚମ୍ପିୟାନ । ଫାଷ୍ଟ୍ କ୍ଲାସ ଫାଷ୍ଟ୍ । ସୁବିଧା ଦେବାର ଚେଷ୍ଟାରେ ନିରତ ମାତି ଭୁଲିଗଲି ନିଜର ସୁବିଧା ସୁଯୋଗ । ଆତ୍ମହରା ହୋଇ ପଡ଼ିଲି । ଭାବିଲି ଅନିଶା ହୋଇଗଲା ଗୋଟାପଣ ମୋର ।

ବାଇ ଚଢ଼େଇ ବସାକୁ ଅନାଇ ମୁଁ ତିଆରି କଲି ବସା । ଗଢ଼ିଲି ନିଜ ସଂସାର । ସୁନ୍ଦର ଶିଶ୍ ମହଲ । ପଥର ଖଣ୍ଡେ ବାଜି ଭାଙ୍ଗିଯିବ, ଜାଣି ନଥିଲି ।

ଦୀର୍ଘ ତିନିବର୍ଷର ଘନିଷ୍ଠ ସମ୍ବନ୍ଧରେ କେତେ ଲାଭ, କେତେ କ୍ଷତି ମୁଁ ତଉଲି ପାରିନି । ଅନିଶା ଯେ ମୋର ନୁହେଁ ମୋତେ ଭଲ ପାଏ ନାହିଁ , ଏଥିରେ ତିଳେମାତ୍ର ଅବିଶ୍ୱାସ ନଥିଲା । ତାଙ୍କ ଘରେ ଏକା ଡ଼ାଇନିଂ ଟେବୁଲ୍‌ରେ ଏକାଠି ଖାଇବା ପଛରେ ଅନିଶାର ମତଲବ ଅବୁଝା ରହିନଥିଲା । ହେଲେ କ'ଣ ପାଇଁ ସେ ବାଛି ନେଲା ଅଭିଜିତ୍‌କୁ ।

ଅଭିଜିତ୍ ମୋ ସାଙ୍ଗ । ମୋର ସମ୍ପୂର୍ଣ୍ଣ ବିପରୀତ । ମୋ ରାଇଭାଲ୍ । ଛକରେ ବସି ଗୁଲିଖଟି କରେ। ସୁନ୍ଦରୀ ଝିଅମାନଙ୍କ ପିଛା କରେ। ସେମାନଙ୍କ ବିଷୟରେ ବାଜେ ମନ୍ତବ୍ୟ ଦିଏ । କଲେଜ୍ ଭିତରେ ଶସ୍ତା ଦାଦାଗିରି କରେ, ଅନ୍ୟମାନଙ୍କୁ ଭୟ ଦେଖାଏ । ଯାହା ମୁଁ ଆଦୌ ପସନ୍ଦ କରେନା । ବାପର ପଇସା ଅଛି, ଗାଡ଼ି ଅଛି, ତାକୁ ନେଇ ପାଠନପଢ଼ି ମସ୍ତ ହେବାରେ ଦିନ ଯାଏ । ଶତକଡ଼ା ନବେ ଭାଗ ଝିଅ ତାର ଏ ଆଚରଣରେ ତାକୁ ଘୃଣା ଓ ଭୟ କରନ୍ତି । ହେଲେ ଅନିଶା ମୋତେ ଶେଷଯାଏ ସନ୍ଦେହରେ ରଖି ତାକୁ ସିଲେକ୍ଟ କଲା କେମିତି ?

ଆଗରୁ ଜାଣିଥିଲେ ମୁଁ ତାଠୁ ଅଧିକ ଦାଦାଗିରି କରି ସେମାନଙ୍କ ତାଲିକାର ଶୀର୍ଷରେ ରହିଥାନ୍ତି । ଏବେ ବହୁତ ଆଗକୁ ପଳାଇ ଆସିଛି, ଆଉ ଫେରିପାରୁନି । ଅଙ୍କଲ୍ । ମୁଁ ହାରିଗଲି । ମୁଁ ଏକ ଅସଫଳ ମଣିଷ । ଆଇ ଆମ୍ ଏ ଗ୍ରେଟ୍ ଫେଲୁଅର୍ ।

ପରାଜିତ ମଣିଷର ଆଉ କି ଅଧିକାର ଅଛି ବଞ୍ଚିବାର ? ଏକଥା ଶୁଣି । ଶର୍ମା ଅଙ୍କଲ୍ ସିରିୟସ୍ ହେବା ଅପେକ୍ଷା ହସୁଥିଲେ ଠୋ ଠୋ । ହସର ଲହର ଛିଣ୍ଡୁ ନଥିଲା । ତାରି ଭିତରେ କହି ଚାଲିଥିଲେ- 'ବୋକା ! ନିପଟ ବୋକା । ଏକ ନମ୍ବର୍ ବୁଦ୍ଧୁ । ଷ୍ଟୁପିଡ୍ ।' ।

ଅଭିଷେକ୍ ତମେ ଏକବିଂଶ ଶତାବ୍ଦୀର ଯୁବକ । ତମ ଚିନ୍ତା ଆଉ ଚେତନା ହେବା ଦରକାର ଆଗୁଆ । ଯେମିତି ତମର ଚଳଣି ଓ ଜୀବନଧାରା । ବସ୍ତୁତାନ୍ତ୍ରିକ ସଭ୍ୟତାରେ ମୂଲ୍ୟବୋଧର ଘୋର ଅଭାବ । ଯେଉଁଠି ଜୀବନର ମାନେ ଖୋଜିବା

ବୃଥା । ସେଠାରେ ପ୍ରେମକୁ ଜୀବନ ଭାବିବା ଏକ ରୂଢ଼ିବାଦୀ ଚେତନାର ପରିଚାୟକ । ଆମ ସମୟର ଯୁବକ ଯୁବତୀ ଏଇ ଭାବନାରେ ଉଦ୍‌ବୁଦ୍ଧ ଥିଲେ ଓ ଏହାକୁ ଉପାସନା ମନେ କରୁଥିଲେ । ଆଜି ପଶ୍ଚିମା ପବନ ବାଜି ସେ ସବୁ ଭୁଲ୍ ପ୍ରମାଣିତ ହୋଇ ସାରିଲାଣି । ତମ ପରି ପୁଅଝିଅ ଏବେ ମୂଲ୍ୟବୋଧକୁ ସମ୍ମାନ ଦେବାକୁ ପ୍ରସ୍ତୁତ ନୁହଁନ୍ତି । ୟୁରୋପୀୟ ଢ଼ାଞ୍ଚାରେ ସେମାନଙ୍କ ଦୃଷ୍ଟିରେ ଲଭ ଇଜ୍ ଏ ଗେମ୍ । ଫୁଟବଲ୍, କ୍ରିକେଟ୍ ଓ ଟେନିସ୍ ଭଳି । ତମେ, ପ୍ରେମକୁ ଏକ ଗେମ୍ ବୋଲି ବୁଝ । ନଚେତ୍ ଅଶ୍ରୁ ଢ଼ାଳିବା ସାର । ପ୍ରେମ ରୂପକ ଖେଳର ବାର୍ତ୍ତା ହେଉଛି- ଡ଼ିଲ୍ ଇଟ୍ ସ୍ପୋଟିଭ୍‌ଲି । ଖେଳ ସରିଗଲା, ପଡ଼ିଆ ଛାଡ଼ିଦିଅ ।

ପାଶ୍ଚାତ୍ୟ ରାଷ୍ଟ୍ରରେ ପ୍ରେମ ନେଇ ହୁଏତ ଏତେ ହତାଶା , ବ୍ୟର୍ଥତା, ଛଳନା, ହିଂସା, ପ୍ରତିଶୋଧ ଆଉ ରକ୍ତପାତ ନାହିଁ ; ଯେତେ ଅଛି ଭାରତରେ । ତମେ ଜାଣ, ଆମ ଦେଶର ଯୁବକମାନେ ସୁରା ଆଉ ସାକୀ ପାଇଁ କେତେ ଉନ୍ମାଦ, କେତେ ଅନ୍ଧ ଆଉ କେତେ ଉତ୍ସୁକ ? ସେଥିପାଇଁ ଯେତିକି ସମୟ, ଶକ୍ତି ଓ ଅର୍ଥର ଅପଚୟ ଘଟେ ତାର ହିସାବ ତମେ ରଖିଛ ?

ଗୋରା ମୁହଁର ଭେଳିକିରେ ପାଗଳ ପ୍ରାୟ ଯୁବକ ହିଁ ଶିକାର ହୋଇଯାଇଥାଏ ପରିଣତିରେ । ଡ଼ାଳି ଶିକାରୀ ପରି ରୋଷଣୀର ମାୟା ଭିଆଇ ଆଜିକାଲି ଝିଅମାନେ ଶୋଷିଯାଆନ୍ତି, ତାଙ୍କର ସୁନ୍ଦର ଭବିତବ୍ୟ ଓ ଭାଗ୍ୟ ।

ପାଉଁଶ ତଳେ ନିଆଁ ଅଛି କି ନା ଠିକ୍ ଭାବରେ ପରଖ ନକରି ଯିଏ ପାଦ ପକାଏ, ତା ପାଦ ନିଆଁରେ ପୋଡ଼ି ହେବା ଛଡ଼ା ଉପାୟ କ'ଣ ? ସେକ୍‌ସ୍‌ପିୟର ପରା କହିଥିଲେ- ଛଳନା, ପ୍ରତାରଣାର ଅନ୍ୟନାମ ନାରୀ । Frelity thy name is woman.ଏହା ଭାରତରେ ଶତକଡ଼ା ଶହେଭାଗ ସତ ।

ପୁରୀ ସ୍ୱର୍ଗଦ୍ୱାର ପଶ୍ଚିମ ପଟ ସମୁଦ୍ରକୂଳରେ ବାଲି ଉପରେ ବସିଥାନ୍ତି ଶର୍ମା ଅଙ୍କଲ ଓ ଅଭିଷେକ । ତାର ଅନତି ଦୂରରେ ବସିଥାଏ ଜଣେ ବିଦେଶିନୀ ଯୁବତୀ । ଉଦ୍‌ଭିନ୍ନ ଯୌବନା । ଲାଗୁଥାଏ ପୂରା ଅପରିଚିତା । ପୁରୀ ବୁଲି ଆସିଛି ।

ଜୁଆରିଆ ସମୁଦ୍ର ଅଶାନ୍ତ ହେବାରେ ଲାଗିଥାଏ । ଅମାବାସ୍ୟାର ଅନ୍ଧାର ଘନୀଭୂତ କରୁଥାଏ ଆକାଶ ।

ଶର୍ମା ଅଙ୍କଲ କିଛି ସମୟ ରହି ଡ଼ାକିଲେ- "ଆସ" ।

ଅଭିଷେକ ଉଠି ଚାଲିଲା ପଛେ ପଛେ -ଅପରିଚିତା ବିଦେଶିନୀ ପାଖରେ ପହଞ୍ଚି ଶର୍ମା ଅଙ୍କଲ କହିଲେ- "ବସ" ।

ବିଦେଶିନୀ ଭାରତୀୟ ମୁଦ୍ରାରେ ହାତଯୋଡ଼ି ନମସ୍କାର କଲା । ପାଖରେ ଦୁହିଁଙ୍କୁ ପାଇ ଖୁସି ହେଲା ।

ତା' ଉତ୍କଣ୍ଠା ଭାଙ୍ଗି, ଅଭିଷେକକୁ ଦେଖାଇ ଶର୍ମା ଅଙ୍କଲ କହିଲେ-" ତମ ପରି ଏ ବି ଜଣେ ଭିକ୍ଟିମ୍ । ବିଦେଶିନୀଙ୍କ ସହିତ ଶର୍ମା ଅଙ୍କଲଙ୍କର ପରିଚୟ କିଛି

ଅବୁଝା ରହିଲା ନାହିଁ। ବିଦେଶିନୀ ପ୍ରଶ୍ନ କଲା କଣ ସୁଇସାଇଡ଼ାଲ୍ ? -ହଁ ହଣ୍ଡ୍ରେଡ଼ ପରସେଣ୍ଟ୍ । ମୁଁ ତାକୁ ରେସ୍କ୍ୟୁ କଲି-ଉତ୍ତରରେ କହିଲେ ଶର୍ମା ଅଙ୍କଲ୍।

କଣ କାହାରି Expiry ?

No ! Exploitation, expultion, exit.

My God ଭାରତରେ ବି ଆଜିକାଲି ପ୍ରେମରେ ଧୋକାବାଜି ? ରାଧା-କୃଷ୍ଣ, ଦଷ୍ମନ୍ତ-ଶକନ୍ତୁଳା, ପୃଥ୍ୱୀରାଜ-ସଂଯୁକ୍ତା, କେଦାର ଓ ଗୌରୀଙ୍କ ସାଧନା, ସଂଯମ ଓ ସମର୍ପଣର ଭାରତ ବର୍ଷ ଆଜି ଆଉ ନାହିଁ ? ?

ଦୀର୍ଘ ପ୍ରଶ୍ନବାଚୀରୁ ବୁଝି ହେଉଥିଲା ବିଦେଶିନୀ ବୋଧହୁଏ ନିଜକୁ ପଚାରୁଥିଲା- ତେବେ ମୁଁ କାହିଁକି ଆସିଲି ଭାରତ ? ମୋତେ ତାହେଲେ ଫେରିଯିବାକୁ ହେବ।

ଶର୍ମା ଅଙ୍କଲ୍ ବିଦେଶିନୀର ମୁଖ ମଣ୍ଡଳ ଚାହିଁ ବୁଝିଗଲେ ଓ ଏତେ ବଡ଼ ସମସ୍ୟା ଥୋଇଥିବା ପ୍ରଶ୍ନର ଉତ୍ତର ଦେଲେ।

ଅଛି - ଜୀବୀକା ଭିତରେ ଜୀବନ ଯେତେବେଳେ ଅଣନିଶ୍ୱାସୀ ଓ ଅର୍ଦ୍ଧମୃତ; ସେତେବେଳେ ପ୍ରେମ ଏକ ପଣ୍ୟଦ୍ରବ୍ୟ ରୂପେ ବିବେଚିତ। ତଥାପି ଯେ ଶତକଡ଼ା କେଇଭାଗ ସଚ୍ଚାପ୍ରେମ ନାହିଁ, କହିବା ଠିକ୍ ନୁହେଁ । ହେଲେ ପ୍ରେମରେ ଛଳନା ଭାଗ ଖୁବ୍ ଅଧିକ । ଜୀବନ ପଦ୍ଧତି ଭୌତିକ ଯନ୍ତ୍ରା ଭିତରେ । ସବୁ କଥାରେ ଲାଭ କ୍ଷତି ହିସାବ ।

ଦାନାବାନ୍ଧି ଆସୁଥିବା ଅଭିଷେକର ଅସନ୍ତୋଷ ମିଳାଇବା ଆରମ୍ଭ କଲା ଓ ସେ ନିଜକୁ ନେଇ କିଛିଟା ଭାବିଲା ।

ଶର୍ମା ଅଙ୍କଲ୍ ତା ଅନ୍ତଃ ପ୍ରତିକ୍ରିୟାକୁ ଲକ୍ଷ କରି କହିଲେ- "ଏ ଝିଅ କିଏ ଜାଣ ?

'ଲିରା ! ଲିରା ଉଇଲିୟମସ୍ । ଘର ୟୁ.କେ.ର ଏଡ଼ିନ୍‌ବରା। ଜଣେ ଡ଼ିଜାଇନ୍ ଇଂଜିନିୟର୍। ୟୁରୋପର ପ୍ରଖ୍ୟାତ ପୁଞ୍ଜିପତି ଡେରିକ୍ ଉଇଲିୟମସ୍‌ଙ୍କର ଏକମାତ୍ର ଅଲିଅଳ କନ୍ୟା । ଗୋଟେ ମନଲାଖି ମନ ଖୋଜିଖୋଜି ସେ ଆସି ପହଞ୍ଚିଛି ପୁରୀରେ । ସହୃଦୟତାର ଅପୂର୍ବ ପୁଲକ ତାକୁ ଆତ୍ମହରା କରିଛି। ଧନ

ଉର୍ଦ୍ଧ୍ୱରେ ସେ ଖୋଜିଛି ଗୋଟେ ପବିତ୍ର ଓ ସ୍ୱର୍ଗୀୟ  ମନଟିଏ। ୟୁରୋପ,ଅଷ୍ଟ୍ରେଲିଆ, ଅମେରିକା ଓ ଜାପାନ ଗଳିକନ୍ଦି ବୁଲି ସେ ଖୋଜିଛି ସଚ୍ଚାପ୍ରେମ । ସବୁଠି ସେ ହାରିଯାଇଛି। ପ୍ରତାରିତା ହୋଇଛି। ଧନ ପାଇ ଧାଡ଼ି ବାନ୍ଧିଥିବା ଯୁବକମାନଙ୍କ ମଧ୍ୟରୁ ତିନି ଜଣଙ୍କୁ ସେ ଭଲ ପାଇ ମନ ଦେଇ ହତାଶ ହୋଇଛି। ସବୁଠି ପାଇଛି ବ୍ୟଥା ଓ ବେଦନା । ସବୁଠି ଦେଖିଛି ପ୍ରତିଦ୍ୱନ୍ଦିତା ଓ ପ୍ରତିହିଂସା । ପବିତ୍ର ହୃଦୟର ବାସନା ଖୋଜି ଖୋଜି ସେ ଧାଇଁ ଆସିଛି ପୁରୀ ନୋଳିଆ ସାହି। ରହୁଛି ନୋଳିଆ ବସ୍ତିରେ।

ବିଗତ ନଅ ବର୍ଷ ତଳେ, ଯେତେବେଳେ ତାକୁ ବୟସ ହୋଇଥିଲା ଷୋହଳ, ଆସିଥିଲା ପୁରୀ ଶ୍ରୀକ୍ଷେତ୍ର ବୁଲି । ପିତାମାତା ପରିବାର ଅନ୍ୟମାନଙ୍କ ସହ ସେ ଅବସ୍ଥାନ କରୁଥିଲା ପୁରୀରେ ପ୍ରାୟ ଏକସପ୍ତାହ । କଞ୍ଚା ବୟସ । ନୂଆ ଡ଼େଣା ଲାଗିଛି । ଆଖିରେ ଅଯୁତ ସ୍ୱପ୍ନ ଧରି ସମୁଦ୍ର ଉପରେ ଚଢ଼େଇ ପରି ଉଡ଼ିଯିବା ପାଇଁ ମନ ବ୍ୟାକୁଳ । ସମୁଦ୍ରର ଗଭୀର ଓ ଗମ୍ଭୀର ରୂପ ଦେଖିବା ପାଇଁ ଢେର୍ ଉତ୍ସୁକତା । ସ୍ୱପ୍ନକୁ ସାକାର କରିବାକୁ ଅଧିକ ସମୟ ଲାଗିନଥିଲା ତାକୁ । ନୋଳିଆ ବସ୍ତିର ସବୁଠୁ ଚତୁର, ସାହାସୀ, ଶକ୍ତିଶାଳୀ ଓ ସମୁଦ୍ର ସଂପର୍କରେ ଯଥେଷ୍ଟ ଜ୍ଞାନ ଓ ଦକ୍ଷତା ହାସଲ କରିଥିବା ଶାଳୁଆ ଗଜାପରି ଭେଣ୍ଡିଆ ଜୁଆନ ଟୋକା ରାମୁଡୁ ସହିତ । ମାଛୁଆ ଡ଼ଙ୍ଗାରେ ଯିବାର ଠିକ୍‌ହେଲା । ନିର୍ଦ୍ଧାରିତ ସମୟରେ ଲିରା ବାହାରିଗଲା ସମୁଦ୍ର ବୁଲି । କୂଳରେ ପ୍ରିୟ ପରିଜନ । ପାହାଡ଼ ପରି ଢେଉ ଭାଙ୍ଗି ଭାଙ୍ଗି ରାମୁଡୁ ସହିତ ସମୁଦ୍ରରେ ବୁଲିଲା ଗୋଟାଏ ଦିନ । ଓଦା ସଡ଼ସଡ଼ ଲିରା ମନପୁରାଇ ଖୁବ୍ ଖୁସିହେଲା । ରମୁଡୁକୁ ହାତରେ ଛନ୍ଦି ପିଠିପଟେ  ଜାବୁଡ଼ି ଧରିଲା । ସତେ ଯେପରି ତିମିମାଛ ସାଜି ରାମୁଡୁ ଲିରାକୁ ପିଠିରେ ଧରି ପହଁରୁଛି ସମୁଦ୍ରସାରା ।

ସ୍ଥଳ ଭାଗରୁ ଖୁବ୍ ଦୂର । ଜନଗହଳିରୁ ସମ୍ପୂର୍ଣ୍ଣ ମୁକ୍ତ । ଜୀବନର ସବୁ ସମସ୍ୟା ଓ ବନ୍ଧନରୁ ପୁରା -ସ୍ୱାଧୀନ । ତେଲଲୁଣ , ଜୟପରାଜୟ , ଲାଭକ୍ଷତି ଓ ନିଜପର ସବୁଭୁଲି ଦୁଇଟି ପ୍ରାଣ ଯେଉଁଗୀତ ବୋଲୁଥିଲା, ତାହା ଶୁଣି ପାରୁଥିଲା କେବଳ ନୀରବ ସମୁଦ୍ର । ଲେଖି ହୋଇ ଯାଉଥିଲା  ସେ ଗୀତ ଲହରୀ ମାଳାରେ ।

ସମୟ ଓ ସମୁଦ୍ର ସେଦିନ ଫେରି ଯାଇଥିଲା ପଛକୁ । ଉର୍ମି ମଥାପିଟି ବେଳାଭୂମିରେ କହିଯାଇଥିଲା ସମୁଦ୍ରର ବାର୍ତ୍ତା । ଯାହା ସ୍ମୃତି ହୋଇ ରହିଯାଇଥିଲା ଲିରା ହାତରେ ।

ରାମୁଡୁ ଦେଇଥିଲା ଗୋଟେ କାଚପଥର ଲିରାକୁ । ଶ୍ରଦ୍ଧାରେ । ବିଦାୟ ବେଳାର । ଉପହାର କରି । ଲାଗୁଥିଲା ସେଟା କାଚପଥର ନଥିଲା । ଥିଲା ରାମୁଡୁର ହୃଦୟ । ଯାହା ଭିତର ଦେଇ ପ୍ରତିବିମ୍ବିତ ହୋଇ ଉଠୁଥିଲା ଲିରାର ମୁହଁ । ଲିରା କାନ୍ଦୁଥିଲା । ରାମୁଡୁ ବି ଅଖିରୁ ଲୁହ ପୋଛୁଥିଲା ।

ଅଶ୍ରୁରେ ମାପିଥିଲେ ଉଭୟେ ଉଭୟଙ୍କ ଅନ୍ତରର ଝଡ଼ । ଲିରା ଧରିଥିବା କାଚପଥରରେ ଝଲସି ଉଠୁଥିବା କଳାଡିମି ପରି ରାମୁଡୁର ଜୀବନ୍ତ ଚେହେରା । ସ୍ମୃତିଖିଅ ହୋଇ ଲମ୍ବିଗଲା ପୁରୀର ବେଳା ଭୂଇଁରୁ ଏଡ଼ିନବରା ।

ତମେ ଜାଣ ଅଭିଷେକ! ଲିରା ଏବେ ସେଇ ରାମୁଡୁକୁ ଖୋଜି ଖୋଜି ଆସି ପହଞ୍ଚିଛି ପୁରୀରେ । ସାଇତି ରଖିଛି ସେଇ କାଚ ପଥର। ଅତିଯତ୍ନରେ । ରଖିଛି ଛାତିରେ ପଦକ କରି । ଦେଖୁଛି ବାରମ୍ବାର। ମନେ ପକାଉଛି ରାମୁଡୁକୁ । କାନ୍ଦୁଛି ନିଜକୁ ଅଭିସମ୍ପାତ ଦେଇ ।

ଗତ ମହାବାତ୍ୟାରୁ ରାମୁଡୁ ଯାଇଛି ସମୁଦ୍ରକୁ ମାଛଧରି । ଆଉ ଫେରିନି । କେହି ତା ମରିବା ଖବର ପାଇ ନାହାନ୍ତି ଏଯାଏଁ । ଏଇ ଅପେକ୍ଷାରେ ଲିରା ବସୁଛି ଦିନ ଦିନ ସମୁଦ୍ର କୂଳରେ ।

ଏତେବେଳକୁ ଅଭିଷେକ ଆଖିରେ ଦେଖା ଦେଲାଣି ଅମାନିଆ ଲୁହର ଝଡ଼ । ମୃତ୍ୟୁ ଅପେକ୍ଷା ଜୀବନ ଯେ କେତେ ମହତ୍ ମୂଲ୍ୟବାନ ଓ ମଧୁର ସେ କଥା କଳ୍ପନା କରିପାରୁନି ଅଭିଷେକ ।

ଅଗ୍ନି ଶଳାକାରେ ଜର୍ଜରିତ ଆତ୍ମାଟାର ଶୋକାକୁଳ ହୋଇ ଉଠିଲା । ଏତେବଡ଼ ଭୁଲ୍ ପାଇଁ ସେ ଶତଜିହ୍ୱ ହୋଇ ଉଠୁଥିଲା ଶର୍ମା ଅଙ୍କଲ ପ୍ରତି । ତା' ଚେତନାର ଗ୍ରନ୍ଥି ମୋଚନ କରି ଶର୍ମା ଅଙ୍କଲ ତା ଭିତରେ ବଞ୍ଚିବାର ବିଶ୍ୱାସ ଜଳ ସିଞ୍ଚନ କଲେ –

"ଅଭିଷେକ! ତମେ ଲିରାର ରାମୁଡୁ ହୋଇ କଣ ଫେରି ଆସିପରିବ ?" ତୃଷାତୁର ଓ ମୁମୂର୍ଷୁ ପଥିକ ପ୍ରାଣରେ ଟୋପାଏ ଜଳ ଯେଉଁ ଜୀବନ୍ୟାସ ପ୍ରଦାନ କରେ, ଶର୍ମା ଅଙ୍କଲଙ୍କ ପଦିଏ କଥା ସେଇ ଆନନ୍ଦ ଆଣି ଦେଲା ।

ଅଭିଷେକ ଅତି ଉଲ୍ଲାସରେ କାନ୍ଦିପକାଇଲା–ଭୋ ଭୋ ।

ଲିରା ବୁଝିଗଲା– "ଏ ନିଶ୍ଚୟ କେହି ତାର ଆପଣାର ।"

କାଚ ପଥର ଧରି ଦେଖିଲା- "ସେ ଅଭିଷେକ ନୁହେଁ । ତା ହଜିଲା ରାମୁଡୁ ।" ଗଦ୍‌ଗଦ୍ କଣ୍ଠରେ ସେ କହି ଉଠିଲା - ଓ ଗଡ୍ ।

ହାଓ ଗ୍ରେଟ ୟୁ ଆର୍ ?

ଶର୍ମା ଅଙ୍କଲ୍ ଡ଼ାକି ଦେଇ ଚାଲିଲେ ଆଗେ ଆଗେ -

"ଆସ ଯିବା ।"

ଝାପ୍‌ସା ଅନ୍ଧାରରେ ଦେଖାଗଲା ଧାଇଁ ଧାଇଁ ଦୁଇଟା ଛାୟା ମୂର୍ତ୍ତି ମିଶିଗଲା ଆଉ ଏକ ଛାୟା ମୂର୍ତ୍ତିର ଦୁଇ ପଟେ । କ୍ରମେ ତିନୋଟି ମୂର୍ତ୍ତି ପରସ୍ପର କାନ୍ଧରେ ହାତ ପକାପକି ହୋଇ ସମୁଦ୍ର ଆଡୁ ଆସୁଥିଲେ ବେଳାଭୂମି ରାସ୍ତା ଉପରକୁ ।

ଶୁନ୍‌ଶାନ୍ ରାସ୍ତା ସେମାନଙ୍କ ପାଇଁ ଫିଟି ଯାଉଥିଲା ରିବନ୍ ପରି ।



## ମେଘର ମୁଦ୍ରାରେ ବର୍ଷାର ସଂଗୀତ

ଖୋଲା ଝର୍କାରେ ବାହାର ଦୁନିଆଁ ଦୃଶ୍ୟମାନ। ସ୍ୱଚ୍ଛ। ପ୍ରାଞ୍ଜଳ।

ସାମ୍ନାଘର ଚୌଧୁରୀ ବାବୁଙ୍କର। ମଝିରେ ଦାଣ୍ଡ। ଠିଆ ରହିଥିବା ଅଦରକାରୀ ଛାମୁଣ୍ଡିଆ। ଠାଏ ଠାଏ ବାହୁଙ୍ଗି ଖସିପଡ଼ିଲାଣି। ଚିତା ଛାଡ଼ି ଯାଇଥିବା ବେଦୀ। ଚାରିକରେ ଚାରିଟା କଦଳୀ ଗଛ। ଛିଣ୍ଡା ଛିଣ୍ଡା ନାଲିନେଳୀ ପତାକା। କାନ୍ଥରେ ବାହାଘର ଚିତା। ଏଣେ ତେଣେ ପଡ଼ିଥିବା ଅଇଁଠା ଖଲିପତ୍ର ଥାଳି। କେଇଟା ବାରବୁଲା କୁକୁର। କାମୁଡ଼ା କାମୁଡ଼ି।

ଆକାଶରେ କଳାହାଣ୍ଡିଆ ମେଘ।

ବାହାଘର କାଲି ସରିଲା । ଚୌଧୁରୀ ବାବୁଙ୍କ ସାନ ଝିଅର। ବର କନ୍ୟା ବିଦାହେବା ପରେ ସଭିଏଁ ପ୍ରାୟ ଏକବାର ନିସ୍ତେଜ। ହାଲିଆ। ପଡ଼ିଥିବା ଜିନିଷ ଉଠାଇବାରେ ଇଛା ନାହିଁ। ଉତ୍ସାହ ନାହିଁ। ନାହିଁ ତତ୍‌ପରତା। ଜୁ ନାହିଁ କହିଲେ ଚଳେ।

ଝଡ଼ ପରେ ସବୁ ଶାନ୍ତ ହେଲା ପରି। ଯୁଦ୍ଧ ପରେ ସବୁ ନିସ୍ତେଜ ଧରିଲା ପରି। ବନ୍ୟା ପରେ ସବୁସ୍ଥିର ହୋଇଗଲା ପରି ଚୌଧୁରୀ ବାବୁ ଓ ତାଙ୍କ ପରିବାର ଲୋକେ ସଭିଏଁ ପ୍ରାୟ ଏକରକମ ଆଶ୍ୱସ୍ତିର ନିଦ୍ରାରେ ମଗ୍ନ। ଆଶ୍ୱସ୍ତି କହିଲେ ଠିକ୍ ହବ। ଭାରାକ୍ରାନ୍ତ ଛାତି ଓଜନିଆ ଥିଲା। ଝିଅ ରୂପକ ପଥରକୁ ଛାତିରେ ରଖି ବୁଲୁଥିବା ମଣିଷ ଝିଅ ବିଦାପରେ ଖୁବ୍ ଉଶ୍ୱାସ ମନେକରେ। ଗୋଟାଏ ବୋଝ ଗଲା ଜାଣ।

'ଝିଅ ଜନମ ପର ଘରକୁ' ଏକଥା ଜାଣିଥିଲେ ବି ଆଜି କାଲି ଅନେକ ଝିଅଙ୍କ ଭାଗ୍ୟରେ ଆପଣା ଘର ହିଁ ଚିରଦିନକୁ ମଣି ହେଇ ଯାଉଛି। ଚୌଧୁରୀ ବାବୁଙ୍କ ପରି କାଳୀଝିଅର ବାପାମାନଙ୍କୁ ଲାଗେ ଝିଅ ବାହାଘର ଗୋଟେ ବୋଝ ଓହ୍ଲାଣ।

ଝିଅ ଜନ୍ମ ବେଳେ ଖୁସି। ଏକୋଇଶା। ଏକତିରିଶା। ମିଠେଇ ବଣ୍ଟା। ପାଳିବାରେ ଦ୍ୱିଧା ନାହିଁ। ପୋଷିବାକୁ ଅସୁବିଧା ବି ନାହିଁ। ପାଠ ପଢ଼ା । ଚାକିରୀ

ଯୋଗାଡ଼। ସବୁ କରୁଥାଏ ଗୃହ ପାଳିତ ମଣିଷଟିଏ। ଝିଅକୁ ଯୋଗ୍ୟତାର ପାହାଚରେ ଚଢ଼ାଇବା ଯାଏଁ ଚେଷ୍ଟାର ଅନ୍ତ ନଥାଏ। ଚୌଧୁରୀ ବାବୁ କହୁଥିଲେ-ଝିଅର ଖୁବ୍ ଭଲ ଷ୍ଟାଣ୍ଡାର୍ଡ଼ ଥିଲା। ଟାଇଫଏଡ଼ରେ ପଡ଼ି ହେଇଗଲା ଆଭରେଜ୍ ପିଲା। ପଢ଼େଇଲି ବଡ଼ କଲେଜରେ। ସେଠୁ ନେଇ ୟୁନିଭରସିଟିରେ। କେତେ କଷ୍ଟ କରିଚି ମୁଁ ତା' ପାଇଁ ଜାଣ ? କେତେ ଯେ ଇଣ୍ଟରଭିଉ ଆଟେଣ୍ଡ୍ କରିଚି ସେ। ସବୁଠି କି ନେଇକରି ଯାଇଚି।

ପଢ଼ା ସରିବା ଦିନଠୁ ଗାଁ ମାଇପେ, ସାଇଭାଇ ଭଗାରୀ ହେଲେଣି ଚୁପଚାପ୍। ଚୌଧୁରୀ ବାବୁଙ୍କ ସ୍ତ୍ରୀଙ୍କର ରାତିରେ ନିଦ ହୁଏ ନାହିଁ। ପ୍ରତିଦିନ ରାତିରେ ଖାଇ ସାରିଲା ପରେ ପଚାରନ୍ତି - 'ମେଘ କଥା କଅଣ ବୁଝିଲ ?' ନୀରବତାରେ ନିଜକୁ ସଅଁପି ସଅଁପି ଚୌଧୁରୀ ବାବୁ କଥାଟାକୁ ଆଡ଼େଇ ଦିଅନ୍ତି - 'ଆରେ ଆଜି ମୋର ମନେ ପଡ଼ିଲା ନାହିଁ। କାଲି ଯାଇ ପଚାରିବି ସେ ମହାପାତ୍ର ବାବୁକୁ ।'

ଝିଅକୁ ଟପିଗଲା ବାଇଶ୍। ଏଇ ଆଶ୍ୱିନରୁ ତେଇଶ ଚାଲିବ। ବାହାଘର କୁଆଡ଼େ ଜୁଟୁ ନାହିଁ। ବୋଝ। ମୁଣ୍ଡରେ ଶକ୍ତ ଏକ ଓଜନ୍‌ଦାର ବୋଝ। ଓହ୍ଲାଇ ନଦବା ଯାକେ ମୁକ୍ତି ନାହିଁ।

ଝିଅ ବାହାଘର ଚିନ୍ତା ସିସିଫସ୍ ମୁଣ୍ଡର ପଥର ବୋଝ ପରି। ଟେକି ଟେକି ପାହାଡ଼ ଚୂଡ଼ାରେ ନ ଥୋଇବା ଯାକେ ମୁକ୍ତି ନାହିଁ। ଗତିକି ନିସ୍ତାର ନାହିଁ। ଝିଅ ବାହାଘରଠୁ ବଳି ଆଉ କ'ଣ ବଡ଼ କାମ ଅଛି ପରିବାରରେ। ଥରେ ଭାବି ଦେଖିଲ ?

ଆଜି ଚୌଧୁରୀ ବାବୁଙ୍କ ମୁଣ୍ଡ ପୂରା ଫାଙ୍କା। ମନ ଭର୍ତ୍ତି ନିଦ। ଦେହ ଭର୍ତ୍ତି ବିଶ୍ରାମ। ହୃଦୟ ଭର୍ତ୍ତି ଆନନ୍ଦ। ବିଦାୟ କାଳୀନ ଅଶ୍ରୁ ଏକ ପ୍ରକାର ଆନନ୍ଦର ଅନ୍ୟନାମ।

ଚୌଧୁରୀ ବାବୁଙ୍କ ବଡ଼ ଦୁଇ ଝିଅ ରତ୍ନମାଳା ଓ ଚାରୁବାଳା ବାହା ହେଲେଣି ପାଞ୍ଚ ବର୍ଷ ତଳୁ। ସେମିତି କିଛି କଷ୍ଟ କରିବାକୁ ପଡ଼ିଲାନି ଚୌଧୁରୀ ବାବୁଙ୍କୁ। ପ୍ରସ୍ତାବ ଆସିଲା। ମହାପ୍ରସାଦ ଟେକା ହେଲା। ମୁହେଁ ମୁହେଁ ପଦେ ପଦେ କଥାରେ ଶେଷ। ବଡ଼ ଝିଅ ଦି'ଟା ଦେଖିବାକୁ ଭାରି ସୁନ୍ଦର। ବି.ଏ. ପାଶ୍ କରି ଜଣେ ଚାକିରୀ ପାଇ ଯାଇଥିଲା। ଆଉ ଜଣେ ବି.ଇଡ଼ି. କରୁଥିଲା। କମ୍ପ୍ୟୁଟର ବି ଶିଖିଛି। ଇଣ୍ଟରଭ୍ୟୁ ଦେଇଥିଲା ତା' ବାହାଘର ବେଳେ।

ସାନ ଝିଅ 'ମେଘମାଳା' କରିଛି ଅର୍ଥନୀତିରେ ଏମ୍.ଏ.। କମ୍ପ୍ୟୁଟର ସାରିଚି ପି.ଜି.ଡ଼ିସି.। ଭାରି ବୁଦ୍ଧିଆ। ସାହସୀ ବି। ହେଲେ ଦେଖିବାକୁ ଟିକେ ମଇଳା ବର୍ଣ୍ଣ ଯୋଗୁଁ ଷଠି ଘରେ ତା' ଜେଜୀ ମାଆ ରଖିଲା ନାଁ ତାର - 'ମେଘମାଳା'। ମେଘ ପରି ଦୁଲ୍‌ଦୁଲ୍ ତାର ଚେହେରା। ଝାମ୍ପୁରା ମୁଣ୍ଡ। ଗୋଛେ ଗହଳ ଟାଆଁଶା ବାଳ। ହାଣ୍ଡିପରି ମୁହଁ ଓ ଆଖିକୁ ଦେଖିଲେ ଯେ କେହି ବୁଝିଯିବ - ଆକାଶରେ ଘୋଡ଼ାଇଚି

କଳାହାଣ୍ଡିଆ ମେଘ। ବର୍ଷିଯିବ ଏଠି ନହେଲେ କୋଉଠି। ମେଘ ଆକାଶରେ ବିଜୁଳୀର ଚମକ, ତା' ନଜର। ଚାହାଣୀରେ ଭୟର ଚମକ ଲାଗିଚି।

ଚୌଧୁରୀ ବାବୁଙ୍କ ସଂସାରରେ ଦୁଃଖ ବୋଲି କିଛି ନାହିଁ। ଧନ ଧାନ୍ୟ ଗୋପ ଲକ୍ଷ୍ମୀରେ ପରିପୂର୍ଣ୍ଣ। ଦୁଃଖ ତାଙ୍କର ସାନ ଝିଅ। ଝିଅର ରଂଗ, ଢ଼ଙ୍ଗ, ଚେହେରା। ମଝିରେ ବହୁତ ଚେଷ୍ଟା କରାଯାଇଥିଲା ଚୌଧୁରୀ ପରିବାର ଦ୍ୱାରା। ଅନେକ ପରୀକ୍ଷା ନିରୀକ୍ଷା ବି ସରିଗଲା ମେଘମାଳାକୁ ନେଇ। ଯେତିକି ଥିଲା ଟିକେ ବଦଳିଗଲା ସେଇ କଳା କିଟ୍‌କିଟ୍ ବର୍ଣ୍ଣକଣିକା। ଡ଼ାକ୍ତରୀ ଔଷଧରେ କେତେ ଖର୍ଚ୍ଚ ହେଇଚି ଜାଣିଛନ୍ତି ଚୌଧୁରୀ ବାବୁ। ତାଙ୍କର ଇଛା ଥିଲା ମୁହଁଟାକୁ କରିଦେବେ ପ୍ଲାଷ୍ଟିକ୍ ସର୍ଜରୀ।

ଚୌଧୁରୀ ବାବୁ ଜଣେ ବୈଦ୍ୟଙ୍କ ଠାରୁ ଶୁଣିଥିଲେ - ଶିଶୁ ଗର୍ଭରେ ଥିଲାବେଳେ ମାଆକୁ କେତେକ ଚିକିତ୍ସା ନେବାକୁ ପଡ଼େ। ଏବେ ଆମେରିକାରେ ଜେନେଟିକ୍ ଇଂଜିନିୟରିଂ ବଳରେ ତମେ ଯେମିତି ଚାହିଁବ ସେମିତି ରୂପ, ସେମିତି ଗୁଣର ପିଲା ପାଇ ପାରିବ। ଜେନେଟିକ୍ କ୍ଲିନିକ୍‌ରେ ପିତା ମାତା ନିଜ ନିଜର ସ୍ପର୍ମ୍ ବରାଦ ଦେଇ ଆସିଲେ, ଦଶ ମାସ ଦଶ ଦିନ ପରେ ଯାଇ ନେଇ ଆସିବ, ନିଜ ପିଲାକୁ। ଏଥିପାଇଁ ଖୁବ୍ ମୋଟା ଅଙ୍କରେ ଖର୍ଚ୍ଚ କରିବାକୁ ପଡ଼ିବ ତାଙ୍କୁ । ଲକ୍ଷ ଲକ୍ଷ ଡ଼ଲାର। ଆମ ଦେଶୀ ଚିକିତ୍ସା ହେଉଚି ପିଲା ଯେତେବେଳେ ଗର୍ଭରେ ଆଠ - ନଅ ମାସର ହେଇଥିବ, ଏତିକିବେଳେ ଗର୍ଭବତୀ ମାଆକୁ ଖାଲି ପେଟରେ ସଜ ନାଳୀ ପଇଡ଼ ସକାଳୁ ସକାଳୁ ପିଇବାକୁ ଦେଲେ, ଦେଖିବ ପିଲାଟା ଜନ୍ମ ହେବ ଯେମିତି ଗୋଟେ ଲାଲ ରକ୍ତ ପିଣ୍ଡୁଳା। ତା' ପରେ ଫିଟିଯିବ ଗୋରା ତକ୍ ତକ୍। ଚର୍ମରୋଗ ବି ହବ ନାହିଁ ଜୀବନ ସାରା। ଏକଥା ସମ୍ଭବତଃ ଚୌଧୁରୀ ବାବୁ ସାନ ଝିଅ ବେଳକୁ ଭୁଲି ଯାଇଥିଲେ।

ଦୀର୍ଘ ପାଞ୍ଚ ଛଅ ବର୍ଷ ଖୋଜି ଖୋଜି ଥେୟା ହେଲା ପରେ କେତେ ଲଗ୍ନ ତିଥି ଗଲା ପରେ ବାହା ହେଲା ଅତିଥିରେ। ସେ ପୁଣି ଏକ ଲମ୍ବା କାହାଣୀ। ବର ଆସିଲା ନାହିଁ। ଗଲା ଶେଷ ତିଥିରେ। ବାହା ହେଇଗଲା ଅନ୍ୟତ୍ର। ଚୌଧୁରୀ ବାବୁ ଅଗତ୍ୟା ଖୋଜି ପାଇଲେ ଗୋଟେ ଗରିବ ଘରର ସୁନ୍ଦର ସ୍ୱାସ୍ଥ୍ୟବାନ୍ ଯୁବକ। ବିଦ୍ୟାଶିକ୍ଷା ଅଛି। ପଇସା ନାହିଁ କି ଚାକିରୀ ନାହିଁ । ବେକାର୍। ବାହା ଘରର ପରଦିନ ମେଘମାଳାର ହେଲା ଚାକିରୀ ଆପଏଣ୍ଟମେଣ୍ଟ ଲେଟର ଦେଖି ଖୁସି ହେବା ବଦଳରେ ଗୁମ୍ ମାରି ରହିଥିଲା ଜୋଇଁପୁଅ।

କଥାରେ ଅଛି - ଝିଅର ବୟସ ଆଉ ପୁଅର ରୋଜଗାର କଥା ପଚାରିବ ନାହିଁ। ନିଜର କିଛି ରୋଜଗାର୍ ନାହିଁ ବୋଲି ସମ୍ଭବତଃ ଜୋଇଁ ଥିଲା ନୀରବ। ଭାବୁଥିଲା - ସେ ପାଇବ ଚାକିରୀ କୋଉଦିନ ?

ଏପଟେ ମେଘମାଳା ସେପଟେ ମଧୁମିତା।

ମାନସ ପଟ ମଚ୍ଛି ହୋଇଗଲା ମଧୁମିତାର। ବିସ୍ମୃତି କବର ତଳୁ ଶାଳଗଜା ପରି ସ୍ମୃତି ସବୁ ଜୀବନ୍ତ ହୋଇ ଉଠିଲେ। ଫୋଡ଼ି ରକ୍ତାକ୍ତ କରି ପକାଇଲେ ସର୍ବାଙ୍ଗ ଶରୀର। ଆଖି। ଅନ୍ତର। ଆଶା। ଆକାଂକ୍ଷା ଓ ଇଛାର ପ୍ରତିଟି ମୁଲାୟମ କେନ୍ଦ୍ରବିନ୍ଦୁ। ଆସକ୍ତିର ପ୍ରତି ବିନ୍ଦୁରେ ରଚନା କଲେ ରୋମନ୍ଥନ। ପ୍ରବାହ, ମନର କାହିଁ କେଉଁ ଅଭ୍ୟନ୍ତରରେ। ଗୋପନ ଇଲାକାରେ ପୁଣିଥରେ ଶୁଣା ଯାଉଥିଲା ସାହାନାଇ। ମେଘମାଳା ବେଦୀରେ ଲମ୍ବୀ ଯାଉଥିଲା ମଧୁମିତାର ଲକ୍ଷ୍ମୀ ପାଦ। ବରକନ୍ୟା। ମନ୍ତ୍ରପାଠ। ହୋମ କୁଣ୍ଡରେ ଘୃତଦାନ। ହାତଗଣ୍ଠି। ଶଙ୍ଖା। ସିନ୍ଦୁର... ଆଃ କି ଆନନ୍ଦ। ଆଉଥରେ ? ?

ଦର୍ପଣ ସାମ୍ନାରେ ସଜାଡୁଥିଲା ମଧୁ ମୁହଁ, ଆଖି, ଓଠ, ସର୍ବାଙ୍ଗ । ପରଖି ନେଉଥାଏ ଥରେ। ସିନ୍ଥିରେ ଦକ୍ଷିଣ ହସ୍ତ ଶେଷ ତିନି ଆଙ୍ଗୁଠି ଚଳାଇ ଆଣି କପାଳରୁ କବରୀଯାଏ, ଲଭୁଥିଲା ଆତ୍ମତୃପ୍ତି। ସବୁକାଇଁ ମିଠା ମିଠା ଲାଗୁଥିଲା ସେତେବେଳେ। ପାଂଶୁଳ ଆକାଶ ଦିଶୁଥିଲା ସୁନ୍ଦର। ପାଚିଲା ପତ୍ରରେ ବୋଳି ହୋଇ ଯାଉଥିଲା ସବୁଜ ରଙ୍ଗ। ଧଳା ଶାଢ଼ୀରେ ଆଙ୍କି ହେଇ ଯାଉଥିଲା ରଙ୍ଗବେରଙ୍ଗର ଚିତ୍ର। ଫୁଲ, ଡ଼ାଳ, ପ୍ରଜାପତ, ଶାଢ଼ୀ, ଶଙ୍ଖା ଓ ସିନ୍ଦୁର ଖୁବ୍ ମାନନ୍ତା ପିନ୍ଧିଲେ ଏବେଳେ।

ଖୁନ୍ଦି ହେଇଥିବା ଯୌବନରୁ କାଣିଚାଏ ବି ଖର୍ଚ୍ଚ ହୋଇନାହିଁ ଏ ଯାଏ। କୋଉଠି ହେଲେ। ବୟସର କୃଷ୍ଣଚୂଡ଼ା ଝାଉଁଳି ଯାଇନି ବୃକ୍ଷ ଶାଖାରେ। ଦେଖା ଯାଉଚି ସେମିତି ସତେଜ ଓ ସୁନ୍ଦର। ମନ ମୁଗ୍ଧକର ସୁଦୀର୍ଘ କବରୀରେ ଘନ ଅନ୍ଧକାରର ରାଜୁତି। ପାଦରେ ପଦ୍ମପାଖୁଡ଼ା, ନୂପୁର ନିକ୍ୱଣିତ। ପାପୁଲିରେ କଅଁଳ କେନ୍ଦୁପତ୍ର ଅବିରବୋଳା। କଟିତଟରେ ତରଙ୍ଗାୟିତ ଲତା କୁଞ୍ଜର କଳାତ୍ମକ ଶିଞ୍ଜୀ ଚାତୁରୀ। ବକ୍ଷ। ଗ୍ରୀବା। ଗଣ୍ଡଦେଶ ଏକ ଏକ ମାୟାପୁରୀ। ଏ ହେତୁ ବାଟଘାଟରେ ସେ ଶୁଣୁଚି କେତେ ଫୁସ୍‌ଫାସ୍। କେତେ ମନ୍ତବ୍ୟ ଆଃ। କି ଆର୍ଟିଷ୍ଟିକ୍!!।

ଆକାଶରେ ମେଘ ଡ଼ମ୍ବରୁ। କଳା ଘୁମନ୍ତ। ଝୁଲନ୍ତା ଥନ୍ତଲ ପେଟ ପରି ଦିଶୁଚି ଗାଁ ମୁଣ୍ଡରେ। ଆର ଗାଁରେ ବର୍ଷି ଯାଉଚି। ଏଠି ନାହିଁ। ବିଚିତ୍ର।

ଯାହା ମେଘ। ବର୍ଷାର ପୂର୍ବାଭାସ। ଉଠାଇଲେ ବର୍ଷିବ। ଏଠି ନହେଲେ କୋଉଠିନା  କୋଉଠି। ନହେଲେ ସୃଷ୍ଟିନାଶ।

ଝିଅ ବେଦୀରେ ବସିଲେ ବଧୂ। ଯେ ବଧୂ। ସେ ଜାୟା, ସେ ଜନନୀ। ବଧୂ ହୋଇ ଜାୟା ନହେଲେ, ଜାୟା ହୋଇ ଜନନୀ ନ ହେଲେ, ସୃଷ୍ଟି ନାଶ।

ବସ୍ ସମୟ ହେଇ ଯାଉଚି। ଦର୍ପଣ ସାମ୍ନାରେ ମଧୁମିତା ମନ ହଉଥିଲା ଝରକା ବନ୍ଦ କରି ବାହାରିବ। କଲାନାହିଁ। ଚାହିଁଲା ମେଘ ଢ଼ଙ୍କା ଆକାଶକୁ। ବସି ପଡ଼ିଲା ଲଥ୍ କିନେ। ବାହାରେ ଶୁଣୁଚି ମେଘ ଘଡ଼ଘଡ଼ି।

ଭାଇ ଭାଉଜ ଓ  ପିଲାଏ ବାହାରି ଗଲେଣି। ଫେରଯିବେ ଆଜି ସହର। ଆସିଥିଲେ ଚୌଧୁରୀ ବାବୁଙ୍କ ଝିଅ ମେଘମାଳା ବାହା ଘରକୁ। ପାଖ ପଡ଼ୋଶୀ ଘର। ସହରକୁ ଯାଇ କହି ଆସିଥିଲେ ବହୁତ ଅନୁନୟ ବିନୟ କରି। ରାଣ ନିୟମ ଦେଇଥିଲେ ଭାଉଜଙ୍କୁ ଚୌଧୁରୀ ବାବୁଙ୍କ ସ୍ତ୍ରୀ। ଦି' ଦିନ ରହିଗଲେଣି ଗାଁରେ। ଆଜି ଯେମିତି ହେଲେ ଫେରିବାକୁ ହେବ।

ମଧୁମିତା ପାଦରେ ଗତି ନାହିଁ। ମନରେ ସ୍ଫୁର୍ତ୍ତି ନାହିଁ। ଫେରି ଯିବାକୁ। ପୁରୁଣା ଶୃଙ୍ଖଳା ଖୋଲପା ଛଡ଼ାଇ ଘା'କୁ କଞ୍ଚା କରି ଦେଇଚି ଏ ବାହାଘର। ମନ ପୁଣିଥରେ ବିକ୍ଷେଇ ଉଠିଛି। ଏଇ କେଇ ମିନିଟ୍ ତଳେ।

ଅଧ୍ୟାପିକା ମଧୁମିତା ରହେ ବିଶ୍ୱବିଦ୍ୟାଳୟ କ୍ୱାଟର୍‌ରେ। ଏଠୁ ଯାଏ ଆଉ ଗୋଟାଏ ସହରକୁ ଅଧ୍ୟାପନା ପାଇଁ । ଫେରେ ରାତିରେ। ସରକାରୀ କଲେଜର ଅଧ୍ୟାପିକା । ନାନୀ ତାର ବିଶ୍ୱବିଦ୍ୟାଳୟ ଅଧ୍ୟାପିକା । ଭିଣୋଇ ଅଧ୍ୟାପକ। ତାଙ୍କ ପିଲା ଛୁଆଙ୍କ ସାଙ୍ଗରେ ମଧୁ ଗୋଟେ ପିଲା। ରହେ ସାଥୀରେ। ଖାଏ ସାଥୀରେ। ଯାଏ ସାଥୀରେ । ତାକୁ ଅନ୍ୟତ୍ର ରଖିବାକୁ ଇଛା କରିନଥାନ୍ତି ଭଉଣୀ ଭିଣୋଇ। ଏକାକୀ ରହିବାର ଅବସର ବି ଦିଅନ୍ତି ନାହିଁ କେବେ।

ମଧୁମିତା ବୁଝି ପାରୁଥିଲା - ସତରେ ସେ କେତେ ଅନାବଶ୍ୟକ ଚରିତ୍ରଟିଏ ସମାଜରେ ? ତାର ଐଶ୍ୱର୍ଯ୍ୟ। ଆଭିଜାତ୍ୟ, ରୂପ, ଗୁଣ, ସୌନ୍ଦର୍ଯ୍ୟ କାହା ପାଇଁ? ସମାଜର କୌଣସି କୌଣସି କାମରେ ଉପଯୋଗ ନହେଲେ ତାର ଆବଶ୍ୟକତା କେତେ ? ଜଣେ ସହକର୍ମୀ ଅଧ୍ୟାପକ ବନ୍ଧୁଙ୍କ ସାଏରୀ ମନେପଡ଼ି ମର୍ମଭେଦି ଯାଉଥିଲା - ଓ ସମ୍ମା ବେକାର୍‌ହେ ଯୋ ଜଲ୍‌କେ ଉଜାଲା ନା ହୁଆ। ଓ ହୁସ୍ନ ବେକାର୍ ହେ ଯିସ୍‌କା ଚାହାନେ ଓ୍ୱାଲା ନା ହୁଆ।" ଟଙ୍କା, ଚାକିରୀ, ରୂପ ଯୌବନ... ଆଃ.... ତାର ଠିକ୍ ମନେ ପଡ଼ୁଥିଲା। ତା'ର ବି ଘର ଥିଲା। ସ୍ୱପ୍ନ ଥିଲା ଜୀବନ ଥିଲା.... ଛାଡ଼। ଭୁଲିବାକୁ ଯତ୍ନ କରୁଥିଲା ମଧୁ ବିସ୍ମୃତ ଦୁଃଖ ଦାୟି ଅତୀତକୁ। ସେ ବର୍ଷ ସେ ପଢୁଥାଏ ଏମ.ଏ. ଶ୍ରେଣୀରେ। ସହପାଠୀ ବିବେକ ଖୁବ୍ ଭଲ ପାଉଥିଲା ତାକୁ। କଲେଜ ଜୀବନରେ ଗୋଟିଏ ଗଣେଶ ପୂଜାରୁ ଆରମ୍ଭ ହେଲା ବିବେକର ତା ସହ ଘନିଷ୍ଠତା। ଘନିଷ୍ଠତାରୁ ବନ୍ଧୁତା - ଆତ୍ମୀୟତା। ସେବେ ଠାରୁ ବିବେକକୁ ଦେଖିବା ପାଇଁ ଆଖି ଅପେକ୍ଷା କରେ। ମନ ଚାହିଁ ବସେ। ଛାତିରେ ତା' ପାଇଁ ହୋଇ ଯାଇଥାଏ ଗୋଟିଏ ଥାନ। ନଥିଲେ ଖାଲି ଖାଲି ଲାଗେ ଅଭାବ ବୋଧହୁଏ। କାହା ବାଟକୁ ଅନାଇ ରହିବାକୁ ପ୍ରାଣ ଡ଼ାକେ। ହଷ୍ଟେଲ୍ ପରିଚାରିକା ଛାୟା ଡ଼ାକରେ ବେଳେବେଳେ ଭ୍ରମ ହେଇଯାଏ। ମଧୁଲିତା ଯାଗାରେ ମଧୁମିତା ଶୁଣାଯାଏ। ବିବେକ ପ୍ରତି ଏ ଦୁର୍ବଳତା କେବେ ଠାରୁ ହେଲା ସେ ନିଜେ ଜାଣେନା। କିନ୍ତୁ ବିବେକଟା କେମିତି ପିଲା ସମସ୍ତଙ୍କ ସାମ୍ନାରେ ଡ଼ାକେ ଭାଉଜ। ଇସ୍ କି ଲଜ୍ୟାକର କଥା। ସାଙ୍ଗମାନେ କ'ଣ

କହିବେ ? ସେ ବଜାରୀ। ଡ଼ାକୁ ଆଉଥରେ। ଶୁଣିବ ମୋଠୁ ବି' ପଦ କଡ଼ାକଡ଼ା। ଦେଖାହେଲେ ମନେ ପଡ଼େନା ପୂର୍ବ ପ୍ରତିଜ୍ଞା। ବିବେକର ଭାଉଜ ଡ଼ାକରେ ଏଣିକି ଗମ୍ଭୀର ହେଇଯାଏ ସେ। କଥା କୁହେନା ତାକୁ। ବିବେକ ଶଙ୍କି ଯାଏ। ଛାତି ତାର ଦକ୍ ଦକ୍ ହୁଏ ? ନିଜକୁ ପ୍ରଶ୍ନ କରେ କ'ଣ ହେଲା କିରେ ???

ମଧୁମିତାକୁ ବିବେକ ପ୍ରେମିକା ବୋଲି କେବେ ସ୍ୱୀକାର କରିନି । ବନ୍ଦନାକୁ ସେ ଭଲପାଏ। ଭାଉଜ ଡ଼ାକରେ ମଧୁମିତା ଗମ୍ଭୀର ହୁଏ କାହିଁକି ? ପଚାରି ପାରେନା। କି ଉତ୍ତର ପାଏନା। ଦ୍ୱନ୍ଦ ଭିତରେ କଟେ ଦିନ ବିବେକର।

ବେଳେବେଳେ ମଧୁମିତା ବିବେକ ଉପରେ ବଡ଼ ଭଉଣୀର ଅଧିକାର ଜାହିର କରେ। ବିବେକ ଭାବେ 'ଭାଉଜ' ବି ବଡ଼ ଭଉଣୀ ପରି । ତାକୁ ମାନି ମୁଣ୍ଡ ନୁଆଁଇ ଦିଏ। ନମ୍ର ହୋଇ ଅନୁଚ୍ଚ ସ୍ୱରରେ କଥା କୁହେ। 'ବିବେକ ତମେ ସିଗାରେଟ୍ ପିଉଚ ? ସେଟା ଠିକ୍ ନୁହେଁ। ମୁହଁ ଗନ୍ଧେଇବ। ଛାତି ପୋଡ଼ିଯିବ। ଭୋକ ମାରିଦେବ। ପିଇବା ଛାଡ଼ିଦିଅ। ଛାଡ଼ିବ ?? ହଁ ଛାଡ଼ିଦେବି, କହି ବିବେକ ସିଗାରେଟ୍ ପିଇବା ଛାଡ଼ିଦିଏ।

ମଣିଷ ଆଖିର ମାୟା ମଣିଷକୁ ଅନ୍ଧ କରିଦିଏ। ଜୀବନରେ ଯାହାକୁ ସେ ଯାହା ଠଉରାଏ, ତାହା ହିଁ କହେ। ଭିତର ସତ୍ୟ ଜାଣିବାର ଯତ୍ନ କରେନା। ଜାଣିନଥାଏ। ସତ୍ୟ ବଡ଼ ନିଷ୍ଠୁର। ଦେଖା ନହେବା ପର୍ଯ୍ୟନ୍ତ ସତ୍ୟ ସୁନ୍ଦର ବୋଲି ତା' ପିଛା ଧରିଥାଏ ମଣିଷ। ଥରେ ତା' ରହସ୍ୟ ଉନ୍ମୋଚନ ହୋଇଗଲେ; ସବୁ ଫିକା ପଡ଼ିଯାଏ। ମଥା ଘୁରିଯାଏ।

ବିବେକର ପ୍ରସ୍ତାବ - ମଧୁମିତା ଭାଉଜ ତମେ ରହିବ। ଗାଁକୁ କି ଭାଇ ଭାଉଜଙ୍କ ପାଖକୁ ଯିବନାହିଁ। ଭାଇ ଆସିବ। ଦେଖିବ। ଭାଇ ରାଉରକେଲା ଷ୍ଟିଲପ୍ଲାଣ୍ଟ ଇଂଜିନିୟର। ଭାଇର ମୋର ଭାରି ଫ୍ରି। ସେ ମୋ ଉପରେ ଛାଡ଼ିଚି ମୁଁ ମୋ ଭାଉଜ ବାଛିବି। କ'ଣ କହୁଚ ? ଖଣ୍ଡେ କାଗଜରେ ଲେଖି ପଠାଇଥିଲା ଛାୟା ହାତରେ।

ଚିଠିପଢ଼ି ପାହାଡ଼ ଛିଣ୍ଡି ଯାଇଥିଲା ମଧୁମିତା ମୁଣ୍ଡରେ। କ'ଣ କହି ବୁଝାଇବ ବିବେକକୁ। ବିବେକ ଯେମିତି ଭାବପ୍ରବଣ ପିଲା ତାକୁ ଆଘାତ ଦେବାକୁ ଚାହୁଁନଥାଏ ମଧୁମିତା। ତା' ଅନ୍ଧାରୀ ଜୀବନ ସଂପର୍କରେ କେଇଜଣ ଜାଣିଛନ୍ତି ?

ସେଇ ସଂଧ୍ୟାରେ ଥକା ହେଇ ଆସିଥିଲା ବିବେକ। ଲେଡ଼ିଜ୍ ହଷ୍ଟେଲ ସାମ୍‌ନାରେ ଘଣ୍ଟା ଘଣ୍ଟା ନୀରବରେ ଠିଆ ରହିଲା ପରେ ମଧୁମିତା କୋହ ସମ୍ଭାଳି ନପାରି କାନ୍ଦିକାନ୍ଦି କହୁଥିଲା - 'ବିବେକ ତମେ କିଛି ଜାଣିନ ମୋ ବିଷୟରେ ? ତମେ ଯେଉଁ ବାଟରେ ପାଦ ଦେଇଚ କେବଳ ଦୁଃଖ ହିଁ ଦୁଃଖ ପାଇବ। ମୋତେ ପାଇପାରିବ ନାହିଁ। ମୁଁ ତୁମର ଭାଉଜ ହେବାର ଯୋଗ୍ୟା ନୁହେଁ। ହଷ୍ଟେଲ ସାରା

ଜାଣନ୍ତି ମୁଁ ତୁମ ଭାଉଜ ଡ଼ାକକୁ ନାପସନ୍ଦ କରେ। ଅର୍ଥ ତୁମକୁ ପ୍ରେମ କରେ। ମୁଁ କାଳେ ତୁମକୁ ପାଇବାକୁ ଇଛା କରୁଚି। ତୁମ ଭାଇଙ୍କୁ ନୁହେଁ। ସତ କ'ଣ ସମସ୍ତଙ୍କ ଅଗୋଚରରେ ରହିଯାଇଛି। ତମର ବି ?

ଘୃଣା ଓ ତିରସ୍କାରର ମୁଦ୍ରାରେ ବିବେକ ଉତ୍ତେଜିତ ହେଲା ପରି କହିଥିଲା – ମଧୁମିତା – 'ମୋତେ କ୍ଷମା କର। ମୁଁ ତୁମ ପ୍ରେମର ଯୋଗ୍ୟ ନୁହେଁ। ମୁଁ ଭାଉଜ ସ୍ନେହ ନେଇ ବଂଚିବାକୁ ଚାହେଁ। ମୋତେ ନିରାଶ କରନାହିଁ ।' ଦୀର୍ଘ ପ୍ରଶ୍ନବାଚୀରେ ସେଦିନ କୋହ ସମ୍ଭାଳି ପାରିନଥିଲା ବିବେକ।

ମଧୁମିତା ପ୍ରଥମେ ପ୍ରତିଜ୍ଞା କରାଇଲା। ଯଦି ସତ ଜାଣିବାକୁ ଚାହୁଁଚ। ତେବେ ଶୁଣ। ତା' ପୂର୍ବରୁ ଈଶ୍ୱରଙ୍କ ନାମରେ ଶପଥ କର। ଯାହା ଆଜି ପର୍ଯ୍ୟନ୍ତ କେହି ବି ଜାଣିନାହାନ୍ତି। ତମେ ଜାଣିବ। ଧର୍ଯ୍ୟ ରଖିପାରିବ ତ ? ?

ମୁଁ ଶପଥ କରୁଚି। କି ପ୍ରତିବନ୍ଧକ ରହିଚି ତମର ମୋ ଭାଉଜ ହେବାରେ କୁହ। ନିଶ୍ଚୟ କୁହ। ମୁଁ ଛାତିକୁ ପଥର କରିଦେବି।

କାନ୍ଦୁଥିଲା ମଧୁମିତା। କାନ୍ଦୁଥିଲା ବିବେକ। ପାଖ ଦେଇ ଠିଆ ହେଇଥିବା ଝିଅ ପୁଅମାନେ ଆବାକ୍ ହେଇ ଚାହିଁ ରହିଥିଲେ। କି ଦୁର୍ବାର ନିଷ୍ପତ୍ତି ନେଲେ ଏ ଦୁହେଁ। କୋହରେ ଫାଟି ପଡୁଥିଲା ଛାତି ଉଭୟଙ୍କର।

ବିବେକର ହଜି ସାରିଥିଲା ଚଳତ୍‌ଶକ୍ତି। ଲୋପ ହେଇ ସାରିଥିଲା ବାକ୍ ଶକ୍ତି। ଶ୍ରବଣେନ୍ଦ୍ରୀୟରେ କିଏ ଢ଼ାଳି ଦେଇଥିଲା ତରଳ ଧାତବ ପଦାର୍ଥ। ଆଖିକୁ ସଜେଇ ଦେଇଥିଲା କାଚଗୁଳି।

ମଧୁମିତା ବିବାହିତା ଓ ବିଧବା। ଅନର୍ସ କ୍ଲାସରୁ ତାର ହୋଇ ସାରିଛି କଉଡ଼ି ଖେଳ। ମଧୁଶଯ୍ୟାର ଠିକ୍ ଅବ୍ୟବହିତ ପୂର୍ବରୁ ସେ ହରାଇଚି ଜୀବନ ସାଥୀକୁ। ଗୋଟେ ଆକ୍‌ସିଡ଼େଣ୍ଟ୍‌ରେ। କାଚସିନ୍ଦୁର ତାର ଓହ୍ଲାଇ ଦିଆଯାଇଚି। ସେ କଠୋର ନିଷ୍ପତ୍ତି ନେଇଚି ଜୀବନରେ ଦ୍ୱିତୀୟ ବିବାହ ହେବନାହିଁ।

ବିବେକ ସେ ସତ୍ୟକୁ ବି ଭୁଲ ପ୍ରମାଣିତ କରିବାକୁ ଯାଇ ଅନୁରୋଧ କରିଥିଲା ମଧୁମିତାକୁ – ତମେ ଏକଥା ଜାଣିଚ ଜାଣିଥାଅ। ମୁଁ ଜାଣିନାହିଁ। ଭାଇ ବି ଜାଣି ପାରିବ ନାହିଁ। ତମେ ଥରେ ମନ ପରିବର୍ତ୍ତନ କରି ନିଷ୍ପତ୍ତି ବଦଳାଅ। ଦେଖିବ ତମ ବିବେକ କେତେ ଆନନ୍ଦ ପାଇବ ?

ଆଜି ଏତେ ଦିନ ପରେ ମଧୁମିତା ମନେ ପକାଉଥଲା ବିବେକର ସେଇ ଅଶ୍ରୁଳ ଆଖି ଆଉ କରୁଣ ମୁହଁକୁ। ଯେଉଁ ମୁହଁ ବାରମ୍ବାର ହାତଠାରି ଡ଼ାକୁଥିଲା – ଭାଉଜ ! ! !



## ସାକ୍ଷାତପରେ

ପ୍ରବଳଶୀତ । ସେତେ ଭିଡନାହିଁ ବସ୍‌ରେ । ସିଟ୍ ବି ନାଇ । ଗୋଟେ ଖାଲି ପଡିଛି । ଜେଣ୍ଟସ୍‌ସିଟ୍ । ଦି ଜଣିଆ ଛ'ଟା ସିଟ୍‌ଥିଲା । ଚାରିଜଣ ବସିଛନ୍ତି । ଫ୍ୟାଲିମ୍ ଧରି । ଅବଶିଷ୍ଟ ଦୁଇଟିରେ ତିନିଜଣ ଜେଣ୍ଟସ୍ ଗୋଟାକରେ ଦି'ଜଣ ଆଉ ଗୋଟାକରେ ଜଣେ । ଶୀତରେ ଏତେବାଟ ଠିଆ ହୋଇଯିବା ଅପେକ୍ଷା ଜେଣ୍ଟସ୍ ସିଟ୍‌ରେ ବସି ଯିବାତ କିଛି ଅପରାଧ ନୁହେଁ ?

ଗାଡିଚାଲିଛି ପ୍ରବଳ ବେଗରେ । ବାହାରର ଥଣ୍ଡା ପବନ ମାଡି ଆସୁଛି । ଭିତରକୁ ବେଳେ ବେଳେ ଅମାନିଆହୋଇ । ଦେହଟା ସାରା ଥରେଇ ଦେଇ ଚାଲିଯାଉଛି ତା'ବାଟରେ । ଯେ, ଯୁ,ଠି ବସିଛନ୍ତି ବସିଛନ୍ତି । ଯାକିଯୁକି ହୋଇ ନିଦ ବି ହୋଇଗଲାଣି କେତେଜଣଙ୍କୁ । ଫରଚା' ହେଇ ହେଇନି । ଘନ କୁହୁଡି ଅନ୍ଧାରକୁ ଜାବୁଡି ଧରିବାକୁଚେଷ୍ଟା କରୁଚି । ଆଲୋକର ପ୍ରବଳ ପ୍ରତାପ ନିକଟରେ ସେ ଚେଷ୍ଟା ଅତିକ୍ଷୀଣ ହାସ୍ୟ ଜନକ । ଦୁଃଖଦ । ଆମେ କ'ଣ ଅନ୍ଧାରକୁ(ଏକାନ୍ତଭାବେ)ଭଲ ପାଉନା ? ଆଲୋକପରା ସବୁ ଧରା ପକାଇ ଦିଏ । ଆମର ଏଡେ ବିରାଟ ପ୍ରକାଶ୍ୟ ଜୀବନ ଭିତରେ କେତେ ଯେ, କଥା ଅପ୍ରକାଶ୍ୟ ଥିବ ?

ବାରିପଦା ବସ୍‌ଷ୍ଟାଣ୍ଡ । ଉଠିଲେ ଜଣେ ତରୁଣୀ । ପିନ୍ଧିଛନ୍ତି ସୁଏଟର୍ ଶାଢୀଉପରେ । ନିଜ ହାତତିଆରି ହୋଇଥିବପରା । ଗୋଲ ଗୋରାମୁହଁ । ଶିଖିତା, ଶିଖିତା ଲାଗୁଚି । ଉଚ୍ଚ ଶିକ୍ଷିତା ନିଶ୍ଚୟ । ବଡ ସ୍ମାର୍ଟ ବି । ପୋଷାକୀ ସ୍ମାର୍ଟପରି । ସାଦା ଚଷମାତଳ ଆଖିଦିଟା ଗୋଲ, ଟିକି ଟିକି ଭାରିସ୍ମାର୍ଟ । ବଡ ଅନିସନ୍ଧିସ୍ନ । ଅତିଚତୁର । ସୁବିଧାବାଦୀମାନଙ୍କପରି ବେଣୀଟା ସୁଏଟର ତଳେ ଜାକିହୋଇ ପଡିଛି । ଦୀର୍ଘଶ୍ୱାସ ଛାଡୁଥିବ ନିଶ୍ଚୟ । ମଥାରେ ସିନ୍ଦୁର ନାଇ । ଟିକା ଲାଗିଚି । କାନ୍ଧରେ ଭ୍ୟାନିଟ୍ ବ୍ୟାଗ୍ । ହାତରେ ପ୍ଲାଷ୍ଟିକ୍ ବାସ୍‌କେଟ୍ । ଚୌଥ ସାଲରେ ମୁହଁ ବନ୍ଦ ତାର ଯେମିତି କଥା କହିବାର ଯୁ ନାହିଁ । ଅନ୍ତର୍ବେଦନାରେ ମର୍ମାହତ ତଥାପି ମଣିଷର ଯଥେଚ୍ଛାଚାର ସହି ନଉଚି ମୁଣ୍ଡପାତି । ଠିକ୍ କୌଣସି ଏକ ଅସହାୟ ବାଳିକା ମୁଣ୍ଡ ଗୁଂଜିଥିବା ମାଲିକ ଠାରୁ ଅତ୍ୟାଚାରକୁ ଦେହସୁହା କରି ନେଲାପରି । ବସ୍‌ରେ ରେଂଲି ଧରି

ବାସ୍କେଟ୍‌ଟା ସିଟ୍ ପାଖରେ ଥୋଇଲେ ତରୁଣୀ । ତଳେ ଅପେକ୍ଷାରତ ବ୍ୟକ୍ତି । ଦାନ୍ତଦେଖା, ହାତହଲା ସମ୍ବୋଧନ ଟିକେ ପାଇବା ଭାରିଇଛା । ଜଣାଇଲେ ନିଜମନର ଶେଷଶୁଭେଛା ଟିକକ ଏବଂ ବଡ ଉତ୍କଣ୍ଠାର ସହ ପଚାରିଲେ ସେ - ସହଯାତ୍ରୀ ଭାବେ ବସିଥିବା ବକ୍ତିଙ୍କୁ ଆଜ୍ଞା ଏଠି (ସିଟ୍‌କୁ ଦେଖାଇ) ଆଉ କିଏ ଅଛନ୍ତି ?

ବସ୍ ଛାଡିବାପାଇଁ କ୍ଲିନର ହୁଇସିଲ୍ ଦେଲା । ବସ୍‌ର ଫାଷ୍ଟ ପିକ୍‌ଅପ୍‌ରେ ବାସ୍କେଟ୍‌ର ସାଲଟା ସଜାଡୁ ସଜାଡୁ ପିଟି ହୋଇଗଲେ ତରୁଣୀ । ସିଟ୍‌ପାଖ ଲୁହା ଖୁଣ୍ଟରେ ଚିତ୍ ହୋଇ ପଡିଯାଇଥାନ୍ତେ । ହଠାତ୍ ଧରି ପକାଇଲେ ସିଟ୍‌ର ଲୁହା ରେଲିଂକୁ । ଭଦ୍ରବ୍ୟକ୍ତିଙ୍କର ସାଲ୍‌ମିଶାକରି । ନିଦଭାଙ୍ଗିଗଲା ପରା । କଣ୍ଡକ୍ଟର ବଡପାଟିରେ କହିଉଠିଲେ - 'ଆଜ୍ଞା ବସିଯାଆନ୍ତୁ ସେଇଠି ସେଇଟା ଖାଲିସିଟ୍ ଅଛି ।'

ତରୁଣୀ ମହାଶୟା କଣ୍ଡକ୍ଟରଙ୍କ କହିବା ପୂର୍ବରୁ ବସିସାରିଥିଲେ । ଦେହକୁ ଦେହ ଚାଖଣ୍ଡେ ଛାଡିରହିଲା କି ନା ମାପିନେଲେ ଗୋଟେ ନଜରରେ । ଭାରି ଆଶ୍ୱସ୍ତି ଲାଗିଲା । ଲମ୍ବା ଏକ ନିଶ୍ୱାସ । ନିଜ ପ୍ରତି କୃତଜ୍ଞତା ପ୍ରକାଶ କଲେ ଯାହା ହେଉ । ଭାଗ୍ୟକୁ ଗୋଟେ ଭଲସିଟ୍ ମିଳିଗଲା । ପ୍ରୋବ୍ଲେମ୍ ଗଲା ।

ବସ୍‌ଟା ସାରା ନୀରବତା । କିଛି ସମୟ ନୀରବ ବସିଲେ ଦି' ଜଣ । ବସ୍ ଟ୍ରେନ୍, ଟ୍ରାମ୍ ହେଲିକେପ୍‌ଟର୍ ବା ପ୍ଲେନ୍ ଇତ୍ୟାଦି ଯାନବାହାନରେ ଏମିତି ପାଖକୁ ପାଖ ବସିଲେ ମଧ୍ୟ କେହି କାହାକୁ ଚିହ୍ନନ୍ତିନି, ଚିହ୍ନିବାର ଆବଶ୍ୟକତା ନଥାଏ ମଧ୍ୟ । ଦରକାର ପଡିଲେ ଖୁବ୍‌ଚିହ୍ନାଚିହ୍ନା କଥା ଭାଷାଚାଲେ । ନିର୍ଦ୍ଦିଷ୍ଟ ଏକ ମାଇଲ୍ ଖୁଣ୍ଟପର୍ଯ୍ୟନ୍ତ ଭଦ୍ରବ୍ୟକ୍ତି ଖସିଯାଇଥିବା ସାଲ୍‌ଟାକୁ ସାଉଟି ନେଲେ । ଆଖି ଖୋଲି ଟିକେ ଚାହିଁଲେ' ତରୁଣୀଙ୍କ ଆଡେ । ମୁହଁ ଉଠେଇ ବସ୍ ଭିତରଟା ମଧ୍ୟ । କେତେବେଳୁ ଶୋଇ ଯାଇଥିଲେ, ନିଦ ଭାଙ୍ଗିଗଲା । ଆଉ କି ନିଦହେବ । ଗୋଟେ ବଦ ଅଭ୍ୟାସ ଅଛି ତାଙ୍କର । ଥରେ ନିଦଭାଙ୍ଗିଲେ ଆଉ ଲାଗିବ ନାହିଁ । ଏଇ ନିଦ ପ୍ରେମରେ ପଡି ସେ କେତେଥର କେତେଜଣକୁ ହାତ ଉଠେଇଛନ୍ତି । ଗାଳି ଫଜିତ୍ କରିଛନ୍ତି । ଟିକିଏ ଆଗୁରୁ ଏସବୁ ଗପୁଥିଲେ ଜଣଙ୍କ ଆଗରେ । କଡାନଜରରେ ଚାହିଁଲେ ତରୁଣୀଙ୍କ ଆଡେ । କଣ ନାଇ କଣ କହିଦେବାକୁ ଇଛାହେଉଥିଲା । ରୋକିହୋଇଗଲେ ମନକୁ ମନ । ଚଉଦିଗ ଫରଚା ହୋଇଗଲାଣି । ବସ୍ ବାହାରଭିତରର ସବୁ ପଦାର୍ଥ ସ୍ପଷ୍ଟ ଦିଶୁଚି ଝରକା ଅଙ୍କ ଖୋଲି ବାହାରକୁ ଚାହିଁଲେ ଭଦ୍ରବ୍ୟକ୍ତି ।

'ଆଜ୍ଞା ଏପଟକୁ ଆସିବେ' ତରୁଣୀ ଦୀର୍ଘକାଳ ଧରି ସଂଚୟ କରୁଥିବା ସାହାସକୁ ପ୍ରକାଶ କଲେ, ଭଦ୍ରବ୍ୟକ୍ତିଙ୍କ ଆଗରେ । ବୋଧହୁଏ ତାଙ୍କ ଇଛା ଏକ ତରଫା ହୋଇଯିବାକୁ । ଝରକା ପାଖକୁ ବସିଲେ ଭଲ । କାଳେ ଯଦି ଭଦ୍ରବ୍ୟକ୍ତି ବାହାରକୁ ଯାଆନ୍ତି ? ତାଙ୍କ ପାଇଁ ସାଇଡ୍ ଦବାକୁ ପଡିବ । ବସ୍‌ରେ ଗୁଂଜିହୋଇ ସାଇଡ୍ ଦବା ଭାରିକଷ୍ଟ । ବଡ ଅସହ୍ୟକର ।

କିଛି ଉଁ କି ଚୁଁ ନ କହି ସୁନାପିଲାଟିପରି ଉଠି ଆସିଲେ ସେ ଏପଟକୁ । ଝରକାପାଖରେ ସଜାଡି ହୋଇ ବସୁ ବସୁ ତରୁଣୀ ତାଙ୍କ ଆଟାଚିଟାର ହ୍ୟାଣ୍ଡଲ ଧରି ବଢେଇଦେଲେ – 'ହେଇ ନିଅନ୍ତୁ' ଆପଣଙ୍କ ଆଟାଚି, ନେଲେ ଭଦ୍ରବ୍ୟକ୍ତି ।

ଝରକା ଖୋଲିପାରେ ? ପଚାରିଲେ ତରୁଣୀ ଏଇ ପ୍ରଶ୍ନ ପୂର୍ବରୁ ହୁଏତ ବାହାରର ଆଲୋକ ପବନ ଚାହୁଁଥିଲେ ଭଦ୍ରବ୍ୟକ୍ତି । ଝରକା ଖୋଲିବାର ଇଚ୍ଛାଥିଲା ତାଙ୍କର, ତା' ପୂର୍ବରୁ ହାତ ବଢେଇ ନିଜେ ଠେଲି ଦେଲେ କାଚ ପେନ୍‌ସଟା । ଦଲକାଏ କଅଁଳ ଖରା ଧସ୍ତେଇ ପଶିଗଲା ବସ୍‌ଭିତରକୁ । ସେଇବାଟଦେଇ । ଯେମିତି ଡ୍ୟାମ୍‌ର ଗୋଟିଏ କବାଟ ଖୋଲୁଖୋଲୁ ପାଣି ବହିଯାଏ ଉଛୁଳା ନଈ ପରି ତଳକୁ ତଳ ଦେଖି ହୋଇଗଲା ମୁହଁଟା । ଗୋଟାସାରା ଦେହ ଚାରିଟା ଆଖି କ୍ୟାମେରାରେ ଧରି ହୋଇଗଲା ଦିଟା ଦିହ, ଦିଟାରେ ଗୋଟାଏ ଦିଟାରେ ଗୋଟାଏ ବିସ୍ଫାରିତ ଡୋଳା ଚାରିଟାରେ ଲେଖ ହୋଇଗଲା ଅନେକ କଥା, ପଢି ହେଉଯାଉଥିଲା କିଛି ।

ଦିହିଁଙ୍କି ଦିହେଁ ନିରବ । ମୁହଁରେ କଥା ନାଇ । କଟିଗଲା ବହୁ ସମୟ । ଥକା ମାରିଗଲେ ନା କ'ଣ ? ପରନ୍ତୁ ଇଚ୍ଛା ଅଛି କହିବାର ବଚନ ଆସୁନି । ଲାଗୁଛି ଏ ଦିହେଁ ପୂର୍ବରୁ କୌଣସି ଘଟଣାରେ ସଂପୃକ୍ତ ଥିଲେ । ତା'ପରଠୁ ଦେଖାହୋଇନି । ଦେଖାହେବାର ଆଶା ନଥିଲା ନା କ'ଣ ? କିମ୍ବା କେହି କାହାକୁ ଜାଣିଶୁଣି ଦେଖା କରିବାକୁ ଚାହୁନଥିଲେ । ହଠାତ୍ ଦେଖା ହେଇଯାଇଚି । କିଛି ତ ଖରାପ୍ ହୋଇନି ? ଉଭୟ କ'ଣ ଉଭୟଙ୍କୁ ପ୍ରେମକରୁଥିଲେ ? ନଚେତ୍ ପ୍ରେମ୍ କରିବାର ଅଭିନୟ ? ହଁ ଏବେତ ଏମିତି ନିତି ଦିନ ଘଟୁଚି । ଏ ଗୋଟେ ରିଲାକ୍‌ସେସନ୍ ଜାଣ । ପାର୍ଟ ଟାଇମ୍ ଏନ୍‌ଗେଜ୍‌ମେଣ୍ଟ । ମାନେ ଅଳ୍ପସମୟ ସ୍ୱାମୀ–ସ୍ତ୍ରୀ ହେବାର ମଉଜ ବା ମଉକା କହିପାର । ନଚେତ୍ ଏଦିହିଁଙ୍କ ଭିତରେ ଘଟଣା ଆଉ କ'ଣ ହୋଇପାରେ ? କିମ୍ବା ଏ ଝିଅଟା ବିଚରା ଭଦ୍ରବ୍ୟକ୍ତିଙ୍କୁ କେଉଁଠି ବ୍ଲାକ୍‌ମେଲିଂ କରିଚି । ଭାରି ତ ଫରଓ୍ୱାର୍ଡ ଜଣାପଡୁଛି । ହେଇଥିବ । ବଡ ବଡ ସହରରେ ଝିଅମାନେ ଏବେ ତ ବେଶୀ ଚିଟ୍ କରୁଛନ୍ତି ?

ତରୁଣୀ ମହାଶୟା ଏବେ ଝରକା ବାହାରକୁ ଚାହିଁ ମନ ପରିବର୍ତ୍ତନ କରି ବସିଲେ । ମୁହଁର ଭଙ୍ଗୀ, ଆଖିର ନିରୀହତା ଛାତିତଳେ ଘୋଡାଟାପୁ ପିଟୁଥିବା ସ୍ପନ୍ଦନକୁ ରୋକି ନେଇ ନରମାଲ ହେବାକୁ ଚେଷ୍ଟା କଲେ ପାରିଲେନି । ଭଦ୍ରବ୍ୟକ୍ତିଙ୍କ ଦୀର୍ଘଶ୍ମଶ୍ରୁ । ଉଜ୍ଜ୍ୱଳ ମୁଖମଣ୍ଡଳ । ପ୍ରଶ୍ନବାଚୀ ଦୃଷ୍ଟିଭଙ୍ଗୀ ଓ ସରଳ ନିଷ୍କପଟ ମନେ ହେଉଥିବା ବ୍ୟକ୍ତିତ୍ୱ ନିକଟରେ ଆହୁରି ଆବ୍‌ନରମାଲ୍ ହେଇ ଉଠିଲେ । ଅବଶ୍ୟ ଭଦ୍ରବ୍ୟକ୍ତିଙ୍କ ଚେହେରାରେ ସେତେରୂକ୍ଷତା ନଥିଲା । ଭଦ୍ର ଓ ଆମାୟିକ ଲାଗୁଥିଲେ । ଆଗରୁ ସେ କ'ଣ ଥିଲେ କହିବାର ବାଟନାହିଁ । ବୁଝି ହୋଇଯାଉଥିଲା ।

ଏବେ ଆପଣ ସେହିଠାରେ ରହୁଛନ୍ତି ତ ? ସବୁଜାଣିଥିବା ପରି ପ୍ରଶ୍ନକଲେ ଭଦ୍ରବ୍ୟକ୍ତି ତରୁଣୀଙ୍କଠୁ କିଛି ଉତ୍ତର ମିଳିଲାନି । ବୁଲି ଚାହିଁଲେ ନି ମଧ୍ୟ । ଭଦ୍ରବ୍ୟକ୍ତି ତରୁଣୀଙ୍କୁ ଭଲଭାବରେ ଚିହ୍ନି ପାରିଛନ୍ତି ନିଶ୍ଚୟ ଠିକଣାପତ୍ର ସମେତ ପୁଣି ପଚାରିଲେ-

"ସେଇ କଲେଜରେ ନାଁ ଆଉ କୋଉଠି ? ନିରୁତ୍ତର । ବୋଧହୁଏ ଏତେଗୁଡାଏ ପ୍ରଶ୍ନର ଉତ୍ତର ଦେବାକୁ ତରୁଣୀ ଆଦୌ ରାଜି ନୁହଁନ୍ତି । ଭାରି ରାଗିଉଠିଲେଣି । ବିରାଟ ଏକ ପ୍ରୋବ୍ଲେମ୍‌ରେ ପଡିଗଲାପରି । ଚମତ୍କାର ଏ ପରିଚୟ । ବଡ ବିସ୍ମିତକର । ଜଣେ ପଚାରୁଚି ଅଥଚ ଆଉ ଜଣେ ନୀରବ ।

ଦୁଇ ଦୁଇ ଥର ପ୍ରଶ୍ନକରି ଉତ୍ତର ମିଳିଲାନି । ତଥାପି ଚିନ୍ତାନାହିଁ । କୌଣସି ପ୍ରତିକ୍ରିୟା ମଧ୍ୟ ନାହିଁ । ସ୍ୱାଭାବିକ୍ ରୀତିରେ ଆଉଥରେ ଜାଣିବାକୁ ଚାହିଁଲେ ଭଦ୍ରବ୍ୟକ୍ତି - ଆପଣଙ୍କ ବ୍ରଦର-ଇନ୍-ଲ- ଭଲ ଅଛନ୍ତି ତ ? ତରୁଣୀ କିଛି କହିଲେନି । ବରଂ ଟିକେ ମୁହଁ ଆଡେଇ ଚାହିଁଦେଲେ । ସମ୍ଭବତ ସେ ଏଥିରେ ଏକମତ ନୁହଁନ୍ତି । ପୁଣି ଗୋଟେ ପ୍ରଶ୍ନ ସମ୍ମୁଖୀନ ହେବାକୁ ପଡିଲା ତାଙ୍କୁ -

'କେମିତି ଅଛନ୍ତି ଆପଣଙ୍କ ଲାଇଫ୍ ପାର୍ଟନର ? ପିଲାଛୁଆ; ଭଦ୍ରବ୍ୟକ୍ତିଙ୍କ କଣ୍ଠ ଚୋକ୍ କରିଯାଉଥିଲା । ପଚାରିଲାବେଳେ । କାରଣ ଅନେକ ଅକୁହା କଥାର ସିଲ୍‌ହୁଟ୍ ଉପରେ ଟିପ୍‌ପଣୀ କାଟିବାର ଆଶ୍ୱସ୍ତିଠୁ ବଳି ଆଉ କିଛି ନାହିଁ ଏ ଦୁନିଆରେ'- ଆକାଂକ୍ଷାର ସଂସ୍କାର ପାଇଁ ମଣିଷ ପ୍ରତିବେଶୀ ଆକାଂକ୍ଷାର ଜିଜ୍ଞାସା କରେ, ସେଇ ଜିଜ୍ଞାସରୁ ଜାତହୁଏ ଯେଉଁ ବିଚାରବୋଧ ତାକୁନେଇ ସେ ନିଜକୁ ବେଶ୍ ବୁଝିପାରେ ।

ଏଥର ସମ୍ଭାଳି ହୋଇପାରିଲେନି ତରୁଣୀ । ମୁହଁ ଫିଟିଯାଇ ଥିବା ଝରଣାପରି ଖୋଲିହୋଇ ବହିଯିବାକୁ ଭାରି ଇଚ୍ଛା ଥିଲା ତାଙ୍କର । ସବୁକଥା ଗୋଟିଗୋଟି କରି କହିପକାଇବେ ଯେମିତି । 'ଏ ଦୁନିଆରେ ଦୁଃଖ ବୋଲି କାହାର ନାଇ ଯେ' ! ଟିକେ ମନ ପକାଇଲେ ଦୁଃଖର ସବୁ ଗ୍ରନ୍ଥି ଫିଟି ଯାଏ ଆପେ ଆପେ । ହେଲେ ରୁଦ୍ଧ ଆବେଗରେ ଭାସିନଯାଇ ସଂଯତ ହୋଇଗଲେ ତରୁଣୀ ପରମୁହୂର୍ତ୍ତରେ ।

'ମୁଁ ଆପଣଙ୍କୁ ଅନୁରୋଧ କରୁଚି ସେ ସବୁ ପ୍ରଶ୍ନର ପୁନରାବୃତ୍ତି କରନ୍ତୁନାହିଁ' । ବଡ ଅନୁନୟ କଣ୍ଠରେ କହି ଯାଉଥିଲେ ସେ ।

- 'ମୁଁ କିନ୍ତୁ ଆପଣଙ୍କୁ ଅନୁରୋଧ କରୁନି କି ଅନୁଜ୍ଞା ମାଗୁନି । ମୋର ଉପଦେଶ ଆପଣ ଅତୀତକୁ ଭୁଲି ଯାଆନ୍ତୁ । ରାତ୍ରିର ସ୍ୱପ୍ନ ସକାଳର ଲୋକଗହଳିଭିତରେ ଯେମିତି' ହଜିଯାଏ, ସେମିତି ଏତେ ଇମୋସନାଲ୍ ହେଲେ ଚଳିବ ? ଆପଣ ଖୁବ୍ ସିରିଅସ୍‌ହୋଇ ପଡିଛନ୍ତି । କଥାବି ପଦେ କହୁନାହାନ୍ତି । "Take it easy" ଇତିହାସର ଅଧ୍ୟାପିକା ଆପଣ । ଜାଣନ୍ତି ଇତିହାସର ପୁନରାବୃତ୍ତି ହୁଏବୋଲି ।

ତଥାପି ସେଇ ଦଦରା ବେହେଲାର ସ୍ମୃତି ? ସବୁ ଘଟୁଥିବା ପୃଥିବୀ କିଛି ଘଟୁନଥିବାପରି ଜଣାପଡେ, ସେଇ ଲୋକଙ୍କୁ ଯିଏ ନୂଆ ହେଇଆସେ । ନୂଆ ଜୀବନ ସଂଚାର କରେ । ପୁରୁଣା ଖୋଳପାଖକୁ କାଢି ଫିଙ୍ଗିଦିଅ । ଦେଖିବ ମୁଁ ତୁମ ଆଖିରେ ଆଉ ସ୍ମୃତି ସ୍ତମ୍ଭ ହୋଇଠିଆ ହେବିନି । ବରଂ ସମୁଦ୍ରକୂଳର ବାଲିଗରଡା ହୋଇ ପଡିରହିବି । କେତେକିଏ ଆସିବେ ସ୍ନେହ କରିବେ ବୋକ ଦେବେ, ଆଦରରେ କୋଳକୁ ଟାଣିବେ ଘର ସଜାଇବାର ସ୍ୱପ୍ନ ଦେଖିବେ । ପୁଣି ଫିଙ୍ଗିଦେଇ ଦେ ପାର । ମୋ ପରି ଅନେକ ବାଲିଗରଡାଙ୍କର ଏଇ ଅବସ୍ଥା । ସମସ୍ତଙ୍କର ହୋଇ ସେ କାହାର ନୁହଁନ୍ତି । ଯାହାର ହୁଅନ୍ତି ସେ ତାର ନୁହେଁ ।

ଓଃ please ! ଆଉ ଆଘାତ ଦିଅନ୍ତୁନି । 'ଭୁଲ୍‌ବୁଝିଛନ୍ତି' ତୁମକୁ ଆଘାତଦେବା ମୋର ଖାସ୍ ଉଦ୍ଦେଶ୍ୟ ନୁହେଁ, ବରଂ ତୁମ ସୁଖ ଖବରରେ ସନ୍ତୋଷ ପାଇବା ମୋର ଲକ୍ଷ୍ୟ । ଆଘାତ ଦେବାକୁ ଇଚ୍ଛାଥିଲେ ମୁଁ ତୁମକୁ ସେ ଦିନ ଖାଲିହାତରେ ଛାଡିଦେଇନଥାନ୍ତି । ତୁମ ମୃତ ପିତାଙ୍କ ଶେଷ ଇଚ୍ଛାକୁ ସମ୍ମାନ ଦେବାକୁ ଯାଇ ମୁଁ ତୁମ ଯୁକ୍ତିକୁ ସହଜରେ ମାନିନେଇ ନଥାନ୍ତି । ଜଣେ ଅବୋଧ ଶିଶୁଟିଏ ପରି ନିଜକୁ ବୋଧଦେଇ ତୁମ ପାଇଁ ଗତିପଥ ପରିଷ୍କାର କରିବା ମୋର କ'ଣ ଦରକାର ଥିଲା ? – 'ସ୍ୱୀକାର କରୁଚି' ଆପଣଙ୍କର ତ୍ୟାଗର ମାତ୍ରା ଯଥେଷ୍ଟ ବେଶୀ, କିନ୍ତୁ କହି ପାରିବେ, ଆପଣ ଆଜି କ'ଣ ପାଇଁ ଓ କାହିଁକି ଏ ସବୁ ପ୍ରଶ୍ନ ଉତ୍‌ଥାପନ କରି ଚାଲିଛନ୍ତି ? ବଡ ଦାମ୍ଭିକତାର ସହ ଉତ୍ତର ଦେଲେ ତରୁଣୀ ।

ଉଭୟଙ୍କ ଉତ୍ତର ପ୍ରତ୍ୟୁତ୍ତରଭାରି କାଟୁଚି ଉଭୟଙ୍କୁ । ହସହୋଇ ଆସିଥିବା ସମୟଟା ପୁଣିଲୁହହୋଇ ବହିଯାଇଚି । ଉଭୟେ ଜାଣନ୍ତ ଏ ଦିଗରେ କାହାର ଅବଦାନ କେତେ । କାହାର ଅନୁଶୋଚନା କେତେ । କାହାର ଅନୁଭାବନା କେତେ । ଜଣେ ଆରଜଣକୁ ଲୁଚେଇ ଗୁପ୍ତ ରଖିବାର ଅଭିନୟ କରୁଚି । ଅଥଚ ସୃଷ୍ଟିର ମାନେ କଅଣ ଏୟା ? ସତକଥା ଧରାପଡିଲେ ଭାରି ବାଧେ, ତଥାପି ମଣିଷ ତାକୁ ମଧୁର ମିଥ୍ୟାର ପିରାମିଡ୍ ଭିତରେ ଲୁଚେଇ ରଖିବାକୁ ଚେଷ୍ଟାକରେ । ବାସ୍ତବ ବଡ ନିଷ୍ଠୁର ???

ପ୍ରସଙ୍ଗ ବଦଳେଇ ଭଦ୍ରବ୍ୟକ୍ତି ପୁଣି ପ୍ରଶ୍ନକଲେ – 'ଆଚ୍ଛା ମନେକରନ୍ତୁ ଯା ପୂର୍ବରୁ ମୁଁ ଆପଣଙ୍କୁ ଆଦୌ ଚିହ୍ନିନାହିଁ । ଏବେ ଚିହ୍ନିଲି । ଆପଣଙ୍କ ଭଲ ମନ୍ଦ ଜାଣିବା କଣ ଅନ୍ୟାୟ ?'

ତା ଅର୍ଥ ଆପଣ କହିବାକୁ ଚାହାନ୍ତି ଯେ ମୁଁ ଆପଣଙ୍କ ସଂପର୍କରେ ଖୁବ୍ ଭଲଭାବରେ ଜାଣେ ଏବଂ Present position ନେଇ ଖୁବ୍ ଚିନ୍ତିତ ? ଆଦୌ ନୁହେଁ । ଏ ଧାରଣା ଯଦି ଥାଏ ଆପଣ ଚେଞ୍ଜ୍ କରିନେବେ । ମୋ ଧାରଣା ଉପରେ କାହାର ଜୀବନତ ନିର୍ଭରଶୀଳ ନୁହେଁ? ଧାରଣା କଲ କାହିଁକି ?

ମୁଁ ଜାଣେ ଆପଣ ଆଇ.ଏ.ଏସ୍. କନ୍‌ଫର୍ମ ହୋଇଛନ୍ତି ପୁଣି ମଧ୍ୟ ଜାଣେ ଯେ,ଆପଣ ଏ ଯାଏ ଅବିବାହିତ ରହିଛନ୍ତି । ପି.ଏଚ୍.ଡି. କରି ସାରିଛନ୍ତି । ମୁଁ ପାରିନି । ପ୍ରତିଯୋଗିତାପୂର୍ଣ୍ଣ ଚଲାପଥରେ ମୁଁ ହାରିଯାଇଛି । କେବଳ ସେତିକି ନୁହେଁ ମୁଁ ଶୁଣିଚି ଆପଣ ଏବେ ପୂର୍ବାପେକ୍ଷା ଖୁବ୍ ବଦଳି ଯାଇଛନ୍ତି । ସରଳ, ଆମାୟିକ, ହୋଇଯାଇଥିବାର ଏଇଠାରୁ ହିଁ ମୁଁ ଅନୁଭବ କରିପାରୁଚି । ବୋଧହୁଏ ଆପଣ ଜୀବନକୁ ନୂଆବାଟରେ ଚଳାଇନେବାର ଶପଥ ନେଇ ସାରିଛନ୍ତି । ନୂଆ ମଣିଷ ପରି ଆଜି ଆପଣ ମୋ ଆଗରେ ସଂପୂର୍ଣ୍ଣ ନୂଆ । କିନ୍ତୁ ମନେରଖନ୍ତୁ ଏ ପଦମର୍ଯ୍ୟାଦା ପ୍ରଶଂସାରେ ମୁଁ ଆଦୌ ଅଧିରାନୁହେଁ, ଦୁଃଖ ଅନୁତାପ କିଛି ନାଇମୋର । କଥନ ଭଙ୍ଗୀରୁ ଜଣାପଡୁଥାଏ ସତେ ଯେପରି ଆକାଶରେ ଢାଙ୍କି ଆସୁଥିବା ମେଘ ହଠାତ୍ ଧରଣୀକୁ କର୍ଦମାକ୍ତ କରି ପକାଇବ । କାନ୍ଦିବାର ଶୀର୍ଷ ବିନ୍ଦୁରେ ପହଞ୍ଚି ମଧ୍ୟ କାନ୍ଦିପାରିଲେନି ତରୁଣୀ ।

ଜବାବରେ ଅତିନିଷ୍କପଟ ଓ ନିର୍ବିକାର ଭାବେ କହିଚାଲିଥିଲେ ଭଦ୍ରବ୍ୟକ୍ତି - ଖୁବ୍ ଭଲ କରିଛନ୍ତି । ଜୀବନର ରାଜରାସ୍ତା ଉପରେ ବାରମ୍ବାର ପକାଉଠା ହବା ଅପେକ୍ଷା ଗୋଟାଏ ପାର୍ଶ୍ୱ ଫୁଟ୍‌ପାଥ୍ ଧରିଯିବା ଖୁବ୍ ଭଲ । ସଂସାରରେ (Happy Life)ପାଇଲେ ଆଉ ଲୋଡା କ'ଣ ?

ମାତ୍ର ତରୁଣୀଙ୍କର ଅପଲକ ଦୃଷ୍ଟିଭଙ୍ଗୀ ବିସନ୍ନ ମୁଖମଣ୍ଡଳ ଓ ନିଷ୍ପନ୍ଦ କଳେବର ଭିତରେ ଫୁଟି ଉଠୁଥିଲା ଏକ ଅନୁତପ୍ତ ଗାରିମା ଓ ଅଙ୍ଗେ ନିଭା ବାସ୍ତବତା । ହଁ ମୁଁ ସୁଖୀ । ଖୁବ୍ ସୁଖୀ । ମୁଣ୍ଡଟା ଆପେ ଟୁଙ୍ଗାରି ହୋଇଗଲା । କିନ୍ତୁ ଅନ୍ତର୍ବେଦନାକୁ ଲୁଚାଇନେଇ ଚାପିଧରୁଥିଲାବେଳେ ତାହା ଆଖି କଣର ଲୁହ ଓ ଛାତିତଳର କୋହ ଭିତରେ ଚିତ୍କାର କରିଉଠୁଥିଲାନା ମୃଗତୃଷା ସେ ଏକ ପାହାଡର ନାଁ ।

ବସ୍ ଆସି ଭୁବନେଶ୍ୱର ଧରିଲା । କେହି କାହାକୁ ନଚାହିଁ ଯେଝା ଇଚ୍ଛାରେ ଯୋଉଠି ଓହ୍ଲାଇ ଚାଲିଗଲେ । ଲୋକ ଗହଳିରେ କିଏ କା ଖବର ରଖୁଚି ? ଭଦ୍ରବ୍ୟକ୍ତିଙ୍କ ପାଇଁ କାର ଆସି ଅପେକ୍ଷା କରିଥାଏ । ତରୁଣୀଙ୍କ ପ୍ରତି ଶେଷ ଶୁଭେଚ୍ଛା ମୂଳକ ଦୃଷ୍ଟି ପକାଇ ସେ ବି ଚାଲିଗଲେ ।

ମାତ୍ର ଠିଆ ହୋଇ ରହିଥିଲା କଲ୍ୟାଣୀ - ନାରୀ ସେ ଅନ୍ୟନାମ ଯା'ର ।



## ଶାଳଫୁଲର ବାସ୍ନା

ପ୍ରଥମ ଦେଖାରୁ ଝିଅଟା ଫିକ୍‌କିନା ହସିଦେଲା ।

ଶାଳଜଙ୍ଗଲରୁ ପଦାକୁ ବାହାରି ଆସିଲେ, ପଡେ ବୁଦୁବୁଦିକିଆ କଣ୍ଟାଗଛ । ଭୂଇଁ ଖଜୁରୀ, କଣ୍ଟେଇକୋଳି, ଠାଏ ଠାଏ ମୁଣ୍ଡିଆ । ଠାଏ ଠାଏ ଏକଲା ଶାଳଗଛ । ନଷ୍ଟ ସଭ୍ୟତାର ସ୍ମାରକୀ ପରି । ଉଜୁଡା ଜଙ୍ଗଲର ପରିଚୟ ଧରି । ବୁଡିଯାଉଥିବା ବଂଶଧରଙ୍କର ଶେଷ ନିଦର୍ଶନ ସ୍ୱରୂପ ଠିଆ ହୋଇଥାନ୍ତି । ମଝିରେ ପାଦଚଲା ରାସ୍ତା । ଏହୁଁ ଉଚା କଣ୍ଟାବୁଦା ଆଡୁଆଳରେ ଚାଲୁଥିଲେ ରାସ୍ତାରୁ ଦେଖି ହୁଏନା ଆଗରେ ଚାଲୁଥିବା ବାଟୋଇକୁ । ବେଳେ ଦିଶେ । ବେଳେ ଦିଶେନା ।

ଛାଇ ଆଲୁଅ ପରି ଲୁଚକାଳି ଖେଳରେ ମନକୁ ମିଳୁଥାଏ ଅପୂର୍ବ ଆନନ୍ଦ । ଲୁଚି ଯାଉଥିବା ଆଗଲୋକଟି ବୁଲିପଡିଚାହେଁ ପଛକୁ । ଆଉ ପଛ ଲୋକଟି ନିଘାକରୁଥାଏ ଆଗ ଲୋକ ଉପରେ । ଏ ଆମର ସ୍ୱଭାବ । ଆମର ସହଜାତ ପ୍ରକୃତି ଓ ସଚରାଚର ପ୍ରବୃତ୍ତି ।

ଝିଅଟା କଣେଇ କଣେଇ ଚାହୁଁଥାଏ ବାରବାର ମୋ ଆଡେ । ପ୍ରତି ବାଙ୍କ ମୁଣ୍ଡରେ ପତ୍ରବୋଝ ଥୋଇ ବଦଳୁଥାଏ କାନ୍ଧ ଭାରାଟା । ଓଜନଦାର ହେଇଥାଉ ନତୁବା ତା ମତଲବରେ ଆଉ କିଛି ଗୋଟେ ଜମାଟ ବାନ୍ଧି ଯାଇଥାଉ ।

ଲୁଚା ଛପାରେ ପାର୍ ହେଉଥାଏ ବାଙ୍କ ମୁଣ୍ଡ । ଯେତିକି ଯେତିକି ସେ ଲୁଚିଯାଉଥାଏ, ସେତିକି ସେତିକି ମୁଁ ତାକୁ ଦେଖା ଦେଉଥାଏ । ଆମେ ଆସି ପହଞ୍ଚିସାରିଥାଉ ଗାଁକୁ ଲାଗି ପଡିଥିବା ଜଙ୍ଗଲ ତଳ ଛୋଟ ଏକ ଗହୀର ରାସ୍ତାରେ। ଏଇଠୁ ଯିବାକୁ ହେବ ହିଡଉପରେ । ପୁରୁଷେ ଲେଖେ ଉଚା ଉଚା ହିଡ ଉପରେ । ଜଙ୍ଗଲରୁ ଏ ହିଡ ରାସ୍ତା ଗାଁ କୁ ପାଖ । ଆଉ ଗୋଟେ ବାଟ ଅଛି ଶଗଡଗୁଳା । ଟିକେ ବୁଲାଣି ।

ଥରେ ଦି'ଥର ପଛକୁ ବୁଲି ଚାହିଁବାର ଯତ୍‌କରି ପଡିଥାନ୍ତା ଝିଅଟା ହିଡ ତଳକୁ । ବାଟଭୁଲିବାର ଭୟ ଥିବାରୁ ମୁଁ ଏକରକମ ତା ପିଛା ଧରି ଯାଇଥିଲି ଜାଣ । ଉଚା ହିଡରୁ କଚଡାଏ ପଡିଲେ ଟାଣ ପଥୁରିଆ ମାଟିରେ ଅଣ୍ଟାପିଠି ଭାଙ୍ଗିଯିବ ତମର ।

ଥାକକୁ ଥାକ ହୋଇଚି ବିଲମାନ । ପାଣି ଆଉଡାଇ ରଖି ଚାଷ ବେଉଷଣ କରିବା ପାଇଁ ଏମିତି ବଡ ବଡ ହିଡର ସୃଷ୍ଟି । ବର୍ଷାଦିନିଆ ଫସଲରେ ସନ୍ତୁଷ୍ଟ ରହିବାକୁ ପଡେ ଏ ଆଦିବାସୀ ଗାଁକୁ । ଧାନ-ମୁଗ ନହେଲେ ବାଇଗଣ, ବିଲାତି ବାଇଗଣ । ଚାରିମାସିଆ ଚାଷ ସରିଗଲେ ଗାଁ'ଟା ଯାକ ଲୋକଙ୍କର ଜଙ୍ଗଲ ଉପରେ ନିର୍ଭର । କାଠ କାଟିବା, ପତ୍ର ତୋଳିବା, ମହୁ ଓ ମହୁଲ ସଂଗ୍ରହ କରିବା । ମଦ ରାନ୍ଧିବା । ବାଘ, ଅହିରାଜ ଚମଡା ଛାଲି ବିକ୍ରି କରିବା। ଝୁଣା, ଲାଖ, ଆଦି ସଂଗ୍ରହ କରିବା । ବୁଢ଼ା ଆଉ ଛୋଟପିଲା, ଗର୍ଭବତୀ ସ୍ତ୍ରୀମାନଙ୍କୁ ଛାଡିଦେଲେ, ଭେଣ୍ଡା ଜୁଆନ ମରଦ, ମାଇପେ, ଟୋକା ଟୋକି ସଭିଏଁ ଯାଆନ୍ତି ଜଙ୍ଗଲକୁ । ଦାନାପାଣିର ସାଧନ ଯୋଗାଡ ନକଲେ ନଚଳେ । ଯେ ଝା ଅନ୍ନ ସଂସ୍ଥାନ ଯାହାର । ଯେ ଯିବ କାହାର କାହାରି ଆପତ୍ତି ଓଜର ନଥାଏ । କାମ ନାହିଁତ ଖାଦ୍ୟନାହିଁ । କର୍ମ ସେମାନଙ୍କର ଈଶ୍ୱର, ଗୁରୁ ଓ ପରମ ଦେବତା । କାମକୁ ହେଳା କରିବଂଚିବା ଶିଖିନାହିଁ ଆଦିବାସୀ । ସକାଳପହରୁ ଜଙ୍ଗଲକୁ ଯାଇ ଫେରନ୍ତି ସଂଜସରିକି ନିଜ ନିଜ ପଲ୍ଲୀ ବା କୁଡିଆ ଘେରା ଗାଁକୁ । ଲଟେଇ ବାଡପରି ପାଚେରୀ ଘେରା ନାଲିମାଟି ଲିପାଘରକୁ । ଯେ ନଫେରିଲା ତାର କାରଣ ସଭିଙ୍କୁ ଜଣା - ତାକୁ ବାଘ ଖାଇଗଲା ନହେଲେ କୋଉଠି ଗଛଉପରେ ଚଢିରହିଗଲା ରାତି କଟେଇବାକୁ । ଲଙ୍ଗଳା କଉପୁନି, ଦେହରେ ଧନୁ, ତୀର ଆଉ ବର୍ଚ୍ଛା । କେହି କେହି କାନ୍ଧରେ ଟାଙ୍ଗି ପକାଇ ଯାଇଥାନ୍ତି ଜଙ୍ଗଲକୁ ଜଙ୍ଗଲ ଭିତରେ ବଂଚିରହିବା ପାଇଁ ସଂଘର୍ଷ । ବାଘ ବଂଚିଲେ ମଣିଷ ମରିବ । ମଣିଷ ବଂଚିଲେ ବାଘ ମରିବ । ମୃତ୍ୟୁ ଏଠି ଏକ ସାଦାପୋଷାକଧାରୀ ସଇସ । ତା'ଅଗୋଚରରେ ବଣ ମଣିଷ ଖୋଜି ଆଣେ ବଂଚିବା ରସଦ ।

ସରି ଆସୁଚି ଜଙ୍ଗଲ । ସରି ଆସୁଛନ୍ତି ଜୀବଜନ୍ତୁ । ସରିଆସୁଚି ମହୁମହୁଲ । ଶାଳପତ୍ର । ଦିନ୍ ଗଛକଟା ଚାଲିଛି । ଦିନ୍ ଜଙ୍ଗଲ ସଫା ହେଇଚାଲିଚି । ଦିନ୍ ଆଇନ୍ କଡା ହେଇଚାଲିଚି । ହିଂସ୍ର ବାଘଭାଲୁ ସାପବି ନାହାନ୍ତି ସେତେବେଶୀ । ଭୟ ତୁଟିଗଲାଣି ଜଙ୍ଗଲରୁ । ସହରୀ ବାବୁଙ୍କ ଘରେ ବାଘ ଓ ହରିଣ ଛାଲ । ଜଙ୍ଗଲର ମୂଲ୍ୟବାନ କାଠରେ ଶୋଇବା ଖଟ ଆଉ ପଲଙ୍କ । ଘରଭିତରେ ସାଜ ସଜା ଯେତେ ବଢୁଛି; ଜଙ୍ଗଲ ସେତେ ସରୁଚି, ଜୀବସେତେ ମରୁଛି, ଆଦିବାସୀ ସେତେ ଘୁରୁଚି । ଯେତେ ଆଇନ୍ ସବୁ ଗରିବ, ଗୁରୁବା, ଖଟିଖିଆ ମୁଲିଆ, ଦରିଦ୍ର ନିରନ୍ନ ମଣିଷପାଇଁ । ଅଶିକ୍ଷିତ, ଅସଭ୍ୟ ଏକଲା ମଣିଷକୁ ସବୁବେଳେ ଡରାଏ ଆଇନ୍ ଆଉ ସେ ଡରେ । ଅର୍ଥ, କ୍ଷମତା, ପ୍ରାଚୁର୍ଯ୍ୟରେ ପାଚିଟୁଲ୍ ଟୁଲ୍ ହୋଇଥିବା ଲୋକଙ୍କ ପାଇଁ ନିୟମ କାନୁନ୍ ନିଆରା । ଆଇନ୍ ତାଙ୍କର ଅନୁଗତ । କେତେ ହରିଣ ମରା ହେଉଛନ୍ତି । କେତେ ବାଘଛାଲ ବିକ୍ରି ହଉଚି । କେତେ ବାରହା ଶିଙ୍ଘ ଚୋରା ଚାଲାଣ ଚାଲିଛି ତାର ଖବର ରଖିଚି କିଏ? ପେଟ ବିକଳରେ ଆଦିବାସୀଟାଏ କ'ଣ ଗୋଟେ ଶିକାର କରି ପକେଇଲେ - 'ଚାଲେ ଜିହଲ । ମାମୁଁଘର । ଦେ ଜୋରିମାନା । ନହେଲେ ପେଲଘଣା । ଖଟ୍ ଦି'ବରଷ ଦଣ୍ଡ' । ଭୟରେ ଗାଁ ଗୋଟା ଥରହର । ନିଷ୍ପତ୍ତି

ହେଉଚି ଗାଁରେ । କେହି କିଛି ମାରିବ ନାହିଁ ଜଙ୍ଗଲରୁ । ଜଙ୍ଗଲ ସୁରକ୍ଷା କମିଟି ମନା କରିଛି । ଯିଏ ଆଣିବତ ଜଙ୍ଗଲରୁ ଆଣ କାଠି କୁଟା, ଜାଳେଣି ଆଉ ପତ୍ରବିଡା । ପୁଣି କଅଁଳ କେନ୍ଦୁପତ୍ର କି ଶାଳପତ୍ର ଦେଖା ଦେଖିରେ ନୁହେଁ । ଲୁଚେଇ ଚୋରେଇ । ଧରାପଡିଲେ ଦଣ୍ଡ ।

ଜଙ୍ଗଲ ମଣିଷ ନିଶାରେ ବଶ । ନିଶା ତା'ର ପେଷା । ନିଶା ତାର ବେଉଷା । ନିଶାତାର ଜୀବୀବିଷା । ନିଷା ଠୁଁ ବଳି ବଡଚିଜ କିଛି ନାହିଁ ପାହାଡି ମଣିଷର । ତାକୁ ନିଶାସକ୍ତ, ନିଶାଗ୍ରସ୍ତ କରି ସବୁଲୁଟିନିଏ ଚତୁର ସହରୀ ମଣିଷ ତାଠୁ । ମନପାଇ ସରଳ ନିଷ୍ପାପ ମଣିଷ ଓଜାଡିଦିଏ, ଉଜେଇଁ ଦିଏ ତାର ଯେତେସବୁ ମୂଲ୍ୟବାନ ରତ୍ନ ସଂପଦ । ନିଜକୁ ବି ପଣ କରିଦିଏ ଏ ସଭ୍ୟ ମଣିଷ ପାଖରେ । ବଡ ବିଶ୍ୱାସରେ । ହେଲେ ପାଏ କଅଣ ? ଶୂନ୍ୟ ଦୀର୍ଘଶ୍ୱାସ ଆଉ ମିଥ୍ୟା ପ୍ରତାରଣା ।

ଆଦିବାସୀର ଇତିହାସ ନାହିଁ ବୋଲି କ'ଣ ଐତିହ୍ୟ ନାହିଁ ? ଇତିହାସ ଲେଖି ଜାଣେନା ସେ । ସୃଷ୍ଟି କରିଜାଣେ । ସହରୀମଣିଷ ସୃଷ୍ଟିକରି ଜାଣେନା ଇତିହାସ ବନେଇ ଚୁନେଇ ଲେଖିଜାଣେ ।

ପତ୍ରଭାରା କାନ୍ଧରେ ଥୋଇ ଚଞ୍ଚଳ ଚଞ୍ଚଳ ପାଦରେ ଚାଲୁଥିଲାବେଳେ ବଡ ସୁନ୍ଦର ଦିଶୁଥିଲା ଝିଅଟା । ଚଙ୍ଗ ଚଙ୍ଗ ପାଦ, ଚାହାଣୀ, ଚତୁର ଚଞ୍ଚଳ ଓ ଅର୍ଥପୂର୍ଣ୍ଣ । ବୁଢି ବୁଢିକା ଗାଁରେ ଦାଣ୍ଡଲଗା ସାଇନାହିଁ କି ଘରକୁ ଘର, ଚାଳକୁ ଚାଳ ଲାଗି ଲମ୍ବିଯାଇନାହିଁ ଗୋଟିଏ ମୁଣ୍ଡରୁ ଆରମୁଣ୍ଡ । ଏ ମୁଣ୍ଡ ଉଚା ପିଣ୍ଡାରେ ଠିଆ ହେଲେ ଦିଶିବ ସେ ମୁଣ୍ଡ । ଲଗା ଲଗି ଧାଡି ଧାଡି । ଜଙ୍ଗଲୀ ମଣିଷର ଘରଗୁଡା ଅଲଗା ଅଲଗା ହେଲେ ବି ସେମାନେ ଭିତରେ ଭିତରେ ଭାରି ଏକ ଓ ଲଗାଲଗି । ସଭ୍ୟ ମଣିଷ ଜଣକୁ ଜଣେ ଭିନ୍ନ । ଯା'ହାତରେ ଯିଏ ଚଉଦ ପା' । ମୁଁ ଭଲତ ଜଗତ ଭଲ । ଜଙ୍ଗଲୀ ଲୋକଜାଣେ ଜଗତଭଲତ ମୁଁ ଭଲ । ସମିଙ୍କ ଭଲରେ ମୋର ଭଲ । ଦିଶାରୀ ବୁଢା କହିଚି – ମା' ଧରତିନି ଦେବୀଙ୍କୁ ପୂଜୁଥିବୁ । ମଣିଷକୁ ବୁଝୁଥିବୁ । ସବୁ ମଣିଷ ସେଇ ଧରତିନି ମାଆର ପୁଅଝିଅ । ଯେତେସବୁ ଭାଇ ବହେନ୍ ।

ରତ୍ନସମ୍ଭବା ଥିଲା ଦିନେ ଜଙ୍ଗଲ। ପତ୍ରତୋଳି ବଂଚିବ ବୋଲି ଆଦିବାସୀ କେବେ ସ୍ୱପ୍ନରେ ସୁଦ୍ଧା ଭାବିନଥିଲା । ଜଙ୍ଗଲ ସରି ସରି ଆସୁଚି । ସଭ୍ୟତା ମରିମରି ଆସୁଚି । ଜୀବନ ସଂଚରି ସଂଚରି ଆସୁଚି । ଅପସଂସ୍କୃତି ଚରିଚରି ଆସୁଚି ।

ଝିଅଟା ଯାଇ ପଶିଗଲା ନିଜ ଅଗଣାରେ । ଡାଳପତ୍ର ଘେରା ଅଗଣା । ଜଙ୍ଗଲି ଲଟାରେ ଛନ୍ଦାଛନ୍ଦି । ମୂଷାକି ନେଉଳ ପଶିବାକୁବି ବାଟ ନାହିଁ । ଲିପା ପୋଛା ଅଗଣାରେ କୋଳିଗଛ । ପାଚିଲା ହଳଦୀ ଗରଗର କୋଳିଭାରାରେ ଡାଳସବୁ ଥାକୁଲୁ ମାକୁଲୁ । ଛୁଇଁ ଦେଲେ ଝଡିପଡୁଚି ବର୍ଷାଟୋପା ପରି ଝର୍ ଝର୍ । ବିଛେଇ ହେଇ ଯାଉଚି । ଅଗଣା ଗୋଟେ ଚିତ୍ରକରା କାର୍ପେଟ ।

ଝିଅଡାକ ଦେଲା ମାଆକୁ କୁଡିଆଭିତରେ ମାଆ କ'ଣ କରୁଥିଲା ଧାଇଁ ଆସିଲା ବାହାରକୁ ବା' ତାର କୁଆଡେ ଯାଇଛି ଫେରିନି ଏଯାଏ ବେଳ ହେଲାଣି ଆସି ରତ ରତ ।

ଆଦିବାସୀ ଦିନସାରା ଯୁଆଡେ ଯାହାକରୁ ସଂଜ ସରିକି ଫେରି ଆସେ ନିଜ ପଲ୍ଲୀ । ନଫେରିବାର ନଜିର ନାହିଁ, ଯେ ନଫେରିଲା, ତା କଥା ନିଆରା ନିଶାଖାଇ କୋଉଠି ଶୋଇଥିବ ନହେଲେ ତାର ଆଉ ଫେରିବାର ନାହିଁ ସେଥିକି ନଜର ନଥାଏ କାହାର ।

ଝିଅଦେଖିଲା ବା' ତାର ଫେରିନି । ଗଲାଣି ସକାଳ ପହରୁ ଶିକାର କରି । ଅଗଣାରେ ମା' ଆଗେ ବୋଝ ଥୋଇ ଘର ଭିତରକୁ ପଶୁପଶୁ ବଙ୍କେଇ ଚାହିଁଦେଉଥାଏ ମୋତେ ।

ଛାତି ଚିରି ହେଇଗଲା ଗୋଟାଏ ମୁନିଆଁ ଛୁରୀରେ । ନଜର କଅଣ ଶାଣଦିଆ ମୁନିଆଁ ଛୁରୀ ? ବ୍ରୀଡା ବିହ୍ୱଳ ମୁଦ୍ରା । ଆଉ ଭୟାତୁର ସଙ୍କେତକୁ ନେଇ ସେ ପଶୁଥିଲା ତା' କୁଡିଆ ଭିତରେ ଯେମିତି ଶଙ୍କାକୁଳ ଶଶକ ଶିଶୁ । ଭିତରେ ଶିହରଣ, ଆହୁରି ଭିତରେ ଭିତରେ ବିସ୍ଫୋରଣ କିନ୍ତୁ ବାହାରେ ସମତୁଳ । ଆକାଶ ଛାତିରେ ହସୁଥାଏ ଜହ୍ନ । ମିଟିମିଟି ତାରାମାନଙ୍କ ଉହାଡରେ ଉଙ୍କି ମାରୁଥାଏ ଛାୟା ଚନ୍ଦ୍ରିକାର ଆତ୍ମପୀଡନ । କିଏ ଯେମିତି ଖୋଲି ଦେଖାଇ ଦେଉଥାଏ ଗୋଟାଏ ନଜର ଭିତରେ ଅୟୁତ ଆଶ୍ୱାସନାର ସମ୍ମୋହନ । ହାତଠାରି ଡାକୁଥାଏ 'ସୁନାହରିଣୀ' ପାଦଛମ୍ ଛମ୍ ନିକ୍ୱଣରେ । ଆଖି ତରଙ୍ଗ ତରଙ୍ଗ ସପନରେ ।

ବିଭୋର ଅଶ୍ୱାରୋହୀ ଭୁଲିସାରିଲାଣି ପଥ ଯୁଦ୍ଧ କ୍ଷେତ୍ରର । ବିସ୍ମୃତ ହୋଇ ସାରିଲାଣି ଶତ୍ରୁପକ୍ଷର ଛାଉଣି ଓ ଶିବିର । ବିମୋହିତ ମୁଦ୍ରାରେ ଖୋଜୁଛି ହଳଦୀବସନ୍ତ ବନସ୍ତସାରା । ଗୋଟାଏ ଶାଳଫୁଲର ବାସ୍ନାରେ ଭୁଲିସାରିଛି ତାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ । ଶାଳ ଜଙ୍ଗଲରେ ତାର ଉଦ୍ରେକ, ଶାଳ ଡାଳରେ ତାର ସ୍ଥିତି, ଶାଳଫୁଲରେ କେନ୍ଦ୍ରିଭୂତ ତାର ସମସ୍ତ ସତ୍ତା, ଦୃଶ୍ୟାୟିତ ଗୋଟାଏ ବିନ୍ଦୁ ବ୍ୟତିରେକେ ହୋଇ ସାରିଛି ସେ ବାଷ୍ପିଭୂତ । ବାୟବୀୟ । ଅଶ୍ୱାରୋହୀ ଅଛିକି ନା ଜାଣେନା ।

ବାଙ୍କ ମୁଣ୍ଡରୁ ଚାଲି ଚାଲି ଆସି ପହଞ୍ଚିଲି କୋଳିଗଛ ଛାଉଣୀ ଅଗଣା ରାସ୍ତାରେ । କୁକୁରଟାଏ ମାଡିଆସିଲା ମୋ ଯାଏ । ପତଳା କଳା ଚେହେରା । ଲମ୍ବାଳିଆ ଡାହାଳ ହେବପରା । ଡେଇଁପଡି ଧରିଦେବ ବେକକୁ ଡମର । ରାଗୁଆଟା । ରହିଗଲି । ହେସ୍ ହେସ୍ କହି ମାଆଟାର ମାଡିଆସିଲା କୁକୁର ଯାଏ । ଝିଅଟା ଯାହା ଘରଭିତରକୁ ପଶୁଥିଲା ଧାଇଁ ଆସିଲା ଖୋଲା ଅଗଣା ଅଧକୁ । କୁକୁର ଛାଡିବାର ନୁହେଁ । ଲୁଣ ଖାଇଛି ଘରବାଲାର । ପୂରାଇଦବ ନାହିଁ କାହାକୁ ତା ଇଲାକାରେ । ବିନା ଅନୁମତିରେ । ମାଆ ତାର ଫୁସୁଲେଇ ଡାକି ନେଇଗଲା ତା ଭାଷାରେ ଗେଲକରି

ଝିଅ ତାଟକା ହୋଇ ରହିଚି ଅନେଇ, କାଳେ ଧାଇଁ ଆସି କାମୁଡି ଦେଲା ନାଁ କଅଣ ? ଅପରିଚିତ ବାଟୋଇ । ମୋପାଇଁ ତାର ଏତେ ଦରଦ ଓ ଯତ୍ନ ।

ଦେଖିଦେଲି ଝିଅଟାକୁ ପୂରାକୁ ପୂରା ।

ଜଙ୍ଗଲି ଫୁଲ ସୌନ୍ଦର୍ଯ୍ୟର ପରିମଣ୍ଡଳ ସୃଷ୍ଟି କରୁକି ନକରୁ । କେଉଁ ବିଶାଳ ଡାଳ ପତ୍ରରେ ବା ଲତା ଗୁଳ୍ମରେ ଲୁଚି ଫୁଟିଯାଇଥାଉନା କାହିଁକି ତା'ବାସ୍ନାରେ ଚହଟୁଥାଏ ସାରାଟା ଜଙ୍ଗଲ । ବାସ୍ନାପାଇଁ ବାଟବଣା ହୋଇଯାଏ ମହୁମାଛି, ପ୍ରଜାପତି ଓ ଭଅଁର । ସେ ବାଂସ୍ନାରେ ଅସ୍ତିତ୍ୱ ହରାଏ ବୁଢା ସଅର ।

ଝଲକାଏ ପବନରେ ଝରିଗଲା କୋଳି ଟପ୍ ଟପ୍ । ମାଆ ଗୋଟାଇ ଲାଗିଲା କୋଳି । ଝିଅ ଫେରୁଥିଲା ଅଧାଅଗଣାରୁ ନିଜ କୁଟୀର ।

କଣ୍ଠ ମୋର ହୋଇଉଠିଲା ଶବ୍ଦାୟିତ । ଓଠଧାର କମ୍ପିତ ସ୍ୱହାରେ କହି ପକାଇଲା - ଏ ! ଦିଟା କୋଳିଦବୁ ? ଭଲ ପାଚିଲା ପାଚିଲା, ମିଠା ମିଠା ।

ଆଦିବାସୀ ଭାଷା ବୁଝେନା, ବୁଝେ ଭାବ । ଝିଅଟା ଝପ୍‌ଟି ଘର ଭିତରେ ପଶି ପାଚିଆଏ ଭଲ ପାଚିଲା ଲାଲ୍‌ଟୁଲ୍ ଟୁଲ୍ ହଳଦୀ ଗରଗର କୋଳିଧରି ଆସି ଠିଆ ହୋଇଗଲା ମାଆ ପାଖରେ । ମାଆ ବୁଝିଗଲା ଚଟାପଟ୍ ସବୁ ଭାବ ଓ ଅର୍ଥ । ଆଉକିଛି ଭଲ କୋଳି ବାଛି ମିଶାଇ ଦେଲା ପାଚିଆରେ । ନୀରବ ଇଂଗିତ ଦେଲା - ଯା ଦେଇଦେବୁ ।।

ଗୋଟାଏ ଅସ୍ୱାଭାବିକ୍ ପରିସ୍ଥିତିର ସମ୍ମୁଖୀନ ହୋଇଗଲା ପରି ଝିଅଟା ନିଷ୍ପତ୍ତିରେ ପହଞ୍ଚିପାରୁନଥିଲା । ମାଆ ତାର ଝିଙ୍ଗାସି ଉଠିଲା - 'କେନ୍ତାରେ' ? ଡରିଗଲା, ଥରିଗଲା ଝିଅ ଦେହମୁଣ୍ଡ ସର୍ବାଙ୍ଗ ।

ନାରୀଟିଏ ହେଲେବି ପୁରୁଷ ପରି ତାର ଆଚରଣ । ଆଚାର ବିଚାର ଘରର ମୂରବୀ ପଣିଆ ତାରି ମୁଣ୍ଡରେ । ନୀରବ ନିର୍ଦ୍ଦେଶ ପାଇ ଝିଅ କାଠକଣ୍ଢେଇ ପରି କୋଳିଧରି ଆସିଲା ପାଛିଆରେ । ଠିଆ ହୋଇ ଯେମିତି ନୀରବରେ କହୁଥିଲା - 'ଏବାବୁ ! ଦେଖାନା ତୋର କାନି ! କୋଳିନବୁ ପରା ହେଇ ନଉନୁ । କେତେମିଠା ମିଠା, ପାଚିଲା ପାଚିଲା, ଖାଇଲେ ଜାଣିବୁ ।'

ମୁଁ ବିସ୍ମିତ ହୋଇଗଲି ଓଳିଏ ଯାଏଁ । କାନ୍ଧରେ ଝୁଲୁଥିବା ବ୍ୟାଗ୍‌ର ମୁହଁ ଦେଖାଇ ଦେଲି । ଝିଅ କୋଳି ଢାଳୁ ଢାଳୁ ଚାହୁଁଥିଲା ମୋତେ । ବାରଂବାର ତା' ସୁବିଧାରେ । ମୋ ଅଲକ୍ଷ୍ୟରେ । ମୋତେ ଲାଗୁଥିଲା ଯେମିତି ମୁଁ ବି ସେମିତି ତା'ଆଖି ଭିତରୁ ମୋତେ କିଏ ସତେ ଠାରି ଡାକୁଥିଲା 'ଏବାବୁ ମୋତେ ଏ କୋଳି ସାଙ୍ଗରେ ନେଇ ଯାଆନା' ମୁଁ ବି ଏ କୋଳିଠୁ ଆହୁରି ମଧୁର । ଆହୁରି ସୁନ୍ଦର ଲାଗିବି

ତୋତେ । ମୁଁ ଜଙ୍ଗଲରେ ଅଛି ବୋଲି ତୋ ମନକୁ ଆସୁନି ନା କ'ଣ ?" ପୁଣିଥରେ ଫିକ୍‌କିନା ହସି ଧାଇଁ ପଳାଇଲା ଝିଅଟା ।

ଗୋଟାଏ ମୁଠା ବାଲିରେ ସାରା ବିଶ୍ୱ ବ୍ରହ୍ମାଣ୍ଡକୁ ଖୋଲିଦେଖାଇ ଦେବେ ବୋଲି କହିଥିଲେ କେହିଜଣେ ।

ପାଛିଆଏ କୋଳିରେ ମୁଁ ଦେଖାଇଦେବି ସମଗ୍ର ଜୀବନ । ଆସ ମୋ ସାଥୀରେ ଯିବ ଜଙ୍ଗଲକୁ । ଯୋଉଠି ବହିଯାଉଚି ଝରଣା, ଛନ୍ଦ, କପଟହୀନ । ସଂଗୀତ ବୋଲି ଯୋଉଠି କୋଇଲି ଗାଉଚି ମୁକ୍ତମନର ଉନ୍ମୁକ୍ତ ପ୍ରେମ ଗୀତି । ଯୋଉଠି ଫୁଲରେ ଫୁଲରେ, ପତ୍ରରେ ପତ୍ରରେ, ବୃକ୍ଷଶାଖାରୁ ଆଦିବାସୀ ପଲ୍ଲୀଯାଏ ସବୁଠି ଲେଖା ହୋଇଛି ନିଛକ ସୌନ୍ଦର୍ଯ୍ୟ । ପଥର ପରି ଟାଣଛାତିରୁ ବି ଶୁଭୁଛି ସ୍ନେହ ସୋହାଗ ଓ ସମବେଦନାର ସ୍ୱର ।

ଝିଅଟା ମୋତେ ଚିନ୍ତାଗ୍ରସ୍ତ କରିଦେଇ ଚାଲିଗଲା ।

– 'ଏ ମାଆ ! ଟୋପେ ପାଣି ଦଉନୁ ପିଇବି । ଏତେବାଟ ଆସିଲିଣି ଚାଲି ଚାଲି ଶୋଷରେ ତଣ୍ଟି ଫାଟି ଯାଉଚି ।' କାହିଁକି କେଜାଣି ତୁଣ୍ଡରୁ ମୋର ବାହାରି ଆସିଲା ମାଆ ।

ସ୍ତ୍ରୀ ଲୋକଟା ଆତ୍ମତୃପ୍ତିରେ ହସି ଉଠିଲା ନିଜ ଭିତରେ, ତା'ଆଚରଣ କେମିତି କେମିତି ସ୍ନେହୀ ସ୍ନେହୀ ଲାଗିଲା ମୋତେ । ଝିଅ ତେଣେ ରହି ପାରୁନି ଘରେ । ଫେରିବୁଲି ଚାହୁଁଚି ବାରବାର । କୁକୁରଟା ବୁଝି ସାରିଲାଣି ମୁଁ କେହି ନୁହଁ ପର । ସେମାନଙ୍କର ଖୋଦ୍ ଆପଣାର । ଗୋଟାଏ ଥାନରେ ଶୋଇରହି ଗରଗର ହେଉ ହେଉ ଚୁପ୍ ହୋଇଗଲାଣି ବହୁତବେଳୁ । ସଞ୍ଜପ୍ରାୟ ନଇଁ ଆସୁଥିଲା ।

ସ୍ତ୍ରୀ ଲୋକଟା କ'ଣ ଗୋଟେ ଖୋଜୁଛି ଏଘର ସେଘର । ଝିଅ ଡିବିରି ଜାଳି ଥୋଇଦେଲା କୁଡିଆ ଘର ଅଧାକାନ୍ଥି ଥାକ ଉପରେ । ଆଲୁଅ ହୋଇଗଲା ପୂରାଟା ଅଗଣା । ଝାପ୍‌ସା ଛାଇ ଆଲୁଅରେ ଝିଅଟା ଦିଶିଯାଉଥାଏ ବଡ ସୁନ୍ଦର । ମୁଁ ଦେଖୁଥିଲି ତାକୁ ନିଜକୁ ଲୁଚାଇ । ସେ ବି ଦେଖୁଥିଲା ମୋର ସର୍ବାଙ୍ଗ ଅନ୍ଧାର ଭିତରେ । ଖୋଜୁଥିଲା କ'ଣ ଗୋଟେ ହଜିଲାଦରବ । ମୋରି ଭିତରୁ ପାଇବ ବୋଲି ତାର ମନେ ହେଉଥିଲା ।

'ଏ ମାଆ ! ମୁନ୍ଦେ ପାନି ଆନତ ! ଶୋଷରେଗଲା ଶୁଖିଗଲା' ।

ଲସର ପସର ଗୁଣ୍ଡୁଣୀ ହାତୀପରି ଚାଲି ଚାଲି ଆସିଲା ଝିଅ ମୋ ଯାଏଁ । ହାତରେ ଛୋଟମାଠିଆ ଆଉ ଏତେ ଫାଉଣ୍ଡା ଲିଟରେପାଣି ଧରିଲା ପରି ଗୋଟେ ଷ୍ଟିଲ୍‌ଗ୍ଲାସ୍ । ଏବେ ସଭ୍ୟତା ବଦଳି ଗଲାଣି ଆଦିବାସୀ ମାନଙ୍କର । ମାଟିପାତ୍ର ବଦଳରେ

ଷ୍ଟିଲଗ୍ଲାସ୍ । ତଳେ ଥୋଇଦେଇ ଗ୍ଲାସେ ପାଣି ଢାଳି ଦେଲା । ପିଇଗଲି ଛାଙ୍କେ । ଏଯାଏଁ ବି ଝିଅଟା କିଛି କହୁନଥିଲା । ଖାଲି ମୁରୁକି ମୁରୁକି ହସୁଥିଲା ଯାହା ।

ରାତିଘନେଇ ଆସୁଚି । ଦଳଛାଡି ବାଟ ହୁଡି ପଳେଇ ଆସିଚି । ଚେତା ପଶିଲାବେଳକୁ ରାତି ଆଠ୍ । ଜଙ୍ଗଲରେ ରାତି ଆଠ ମାନେ ଘୋର ନିଦ ବେଳା । ଦିନସାରା ଖଟେ ଆଦିବାସୀ । ସଂଜହେଲେ ଶୋଇଯାଏ । ଉଠେ ପାହାନ୍ତା ପାହାନ୍ତା । ରହିବାକୁ ଜାଗା ନାହିଁ । ଯିବାକୁ ଗାଡିମଟର ନାହିଁ । ହିଂସ୍ର ଜନ୍ତୁ ଜନ୍ତୁ ଭୟ । ପାଦଚଲା ବାଟ ଜଣାନାହିଁ, ରାତିରେ ଯିବା ବିପଦ ।

ଶିକାରରୁ ଫେରିଲା ଘରମାଲିକ । ଝିଅର ବାପ । କାନ୍ଧରେ ଧନୁତୀର ଆଉ ଫାର୍ଶା । ଅଣ୍ଟାରେ କଟାରୀ । ଆଣିଚି ଗୋଟେ କୁଟୁରା ହରିଣ ଆଉ ଦି'ଟା ଭଲ କଅଁଳ ଡଉଲ ଡାଉଲ ଠେକୁଆ ।

ଅଗଣାରେ ଗୋଟେ ଉଚ୍ଚା ପଟ୍ଟା ବାଡିଆ ଷ୍ଟୁଲ୍‌ରେ ବସିଛିମୁଁ ବୋପା ତା'ର ଡାକ ଦେଲା - "ହେଇ ! ତୁମ୍‌କି ବୋଉ । ବେଗି ବେଗି କାଟ୍ । ଭଲ କରି ରାନ୍ଧ । ପେଟ୍ ପେଟ୍ ଖାଇମା । ଆଜ୍‌କେ ଧରତୀ ମାତା ସୁଦୟା ହେଇ ଚେନ୍‌ରେ !" ବଡ ମନ ଆନନ୍ଦରେ କହି ପକାଇ କାନ୍ଧରୁ ଶିକାର ତକ ତଳେ ଥୋଇ ଦେଲା । ମୋତେ ଦେଖି ନଜର କଲା ତାଳରୁ ତଳିପା । ଢେପା ଢେପା ଆଖି ଓ ମଦଛଣା ନିଶ ସହିତ ଅଲରା କେଶ ଓ ରୁକ୍ଷଚେହେରା ଦେଖିଲେ କିଏ ନଡରିଯିବ ଯେ - ମୁଁ ଡରିଗଲି । ପାଖରେ ବଣମଣିଷ ଦେଖି ମୁଁ ହଡବଡେଇ ଗଲି । ତା' ନୀରବ ଦୃଷ୍ଟିକୁ ଲକ୍ଷ୍ୟ କରୁଥିଲା ତା'ସ୍ତ୍ରୀ । କୌଣସି ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି ହେବା ଆଗରୁ ସେ ସଜାଗ କରି ଦେଲା ବୁଢାକୁ - 'ଆମର ପୁଅରେ ମରଦ୍ । ଧରତିନ୍ ଆମ୍‌କେ ଦେଇ ଛେନ୍ ଗୁଟେ ଭେଣ୍ଡା ଜୁଆନ୍ ପୁଅ ।' ମୋ ଆଡେ ଲକ୍ଷ୍ୟକରି ପୁଣି କହିଲା - 'ତୁଇ ସେଇଖାନେ ବସନା ପୁ । ମୁଁ ରାନ୍ଧଣା କରି ଆନ୍‌ଛି ତୁଇ ଖାଇକିନି ଯିମୁ । ମୋକେ ମାଏ ଡାକ୍‌ଚି, ସେନ୍ତା କେନ୍ତା ପଲାଇବୁରେ । ଏଇ ବୁଆ । ଛାଡନାରେ । ସେଇ ଆମକାପୁ ।' ବୁଢା ଉତ୍ତେଜିତ କି ଉତକ୍ଷିପ୍ତ ହେବା ମୁଦ୍ରାକୁ ଉଠୁ ଉଠୁ ଗଡିପଡିଲା ତଳେ । ପ୍ରକୃତିସ୍ଥ ହୋଇ ବୁଢୀସାଥୀରେ ମିଶିକହିଲା – ହଇ ! ହଇ ! ଗୋଟେ କାଳ ଟଳିଗଲା ମୋର । ଅପରିଚିତ ସଭ୍ୟମଣିଷକୁ ଆଦିବାସୀ ସରଳ ହୃଦୟ ଘୃଣାକରେ । ସେଇ ଘୃଣାର ପରିଣତି ହୁଏ ଯେକୌଣସି ଅଘଟଣ, ଆକ୍ରମଣ, ମୃତ୍ୟୁ, ପଳାୟନ, ଯାହାକିଛି ବାପର ଏମିତି ଚାହାଣୀରେ ଝିଅଟା ବି ସଟ୍‌ପଟେଇ ଯାଇଥିଲା ମନେ ମନେ ତେବେବି ମୁହଁ ଖୋଲି ନଥିଲା ସେଯାଏ । ମୁହୂର୍ତ୍ତକ ଭିତରେ ମୁଁ ଗୋଟେ ପରିବାରର ସଦସ୍ୟ ପାଲଟିଗଲି ।

ବୁଢୀ କଥାରେ ମୋ ମନ ଯେତିକି ପୂରିଉଠିଚି ଲାଗିଚି ମୋ ହାତ ପାଆନ୍ତାରେ ପହଞ୍ଚିଯାଇଚି ସ୍ୱର୍ଗ । ଝିଅଟାବି କମ୍ ଖୁସି ହୋଇନଥିବ ।

ପରିସ୍ଥିତିର ଗମ୍ଭୀରତା ଭାଙ୍ଗି ବୁଢ଼ା ଡାକିଲା - ହେଇ ଚୁମ୍‌କୀ ! ତୁଇ ନୂଆ ବାବୁ ପୁଏକେ କେନ୍ତା ଗୁଟେ ଚର୍ଚ୍ଚା ଚର୍ଚ୍ଚି କର୍ । ରାତ୍‌କେ ଖାଇ ପିଇ ପଢ଼ା ଘରକେ ଯାଇ ରହିଯିବା ।

'କେନ୍ତାରେ ! ତୋର ଘରର୍ ମେହେମାନ୍ ଯାଇ ପଢ଼ାଘରେ ଶୁଇ । ଓ ! ଏଇ ଘରେ ଶୁଇ । ମୁଇଁ ପଦାମେଲାକୁ ପଳାଇ ଯାଇନୁ'- ଯେମିତି ଯୁକ୍ତିକରି କହିଯାଉଥିଲା ଝିଅର ଚାହାଣୀ ।

'ହଇ ! ହଇ !! ତୁ ରାଗଛି କେନ୍ତାରେ ! ସେ ଏଇଠି ସୁଇନ' ବୁଝିପାରିଚି ବୁଢ଼ା ଝିଅର ନୀରବତାର ଭାଷା ।

ତା' କୋଠରୀରେ ମୋର ଶୋଇବାର ଅନୁମତି ମାଗିନେବା ଥିଲା ଝିଅର ଏ ନୀରବତାର ଇଂଗିତ । ଲକ୍ଷ୍ୟ କରୁଥିଲି ଭିତରେ ଭିତରେ ମୁଁ । ଭିତରଟା ମୋର ଦଳିମନ୍ଥି ପାଣି ଫାଟିଗଲା । ଅନ୍ତଃ ବିପ୍ଳବରେ ଅନନ୍ତ ଆହ୍ଲାଦର ସ୍ୱର ଝଙ୍କାର ଛୁଟିଲା । କ'ଣ ହବ ତା'ପରେ । ଶଙ୍କା, ଆଶଙ୍କା ଓ ଆନନ୍ଦ ମିଶ୍ରିତ ସ୍ଥିତିରେ ମୁଁ ହଜାଇ ସାରିଥିଲି ମୋର ଚେତନା । ମୁଁ ଏକରକମ ଚେତାଶୂନ୍ୟ ହୋଇପଡ଼ିଲି । ଝିଅବି ଖିଲ୍ ଖିଲ୍ ଝରଣା ପରି ବହିଯାଉଥିଲା ମୋ ସ୍ମୃତି ଓ ସ୍ୱପ୍ନର ଚଟାଣରେ ।

'ସୁନାହରିଣୀ' ଶିକାର ହେବା ବାହାନାରେ ଜଙ୍ଗଲ ମଝିରୁ ମୋତେ ଟାଣି ଆଣି ବାନ୍ଧି ସାରିଲାଣି ତା'ଦୁଆରେ । ହୃଦ ଯନ୍ତାରେ । କହନ୍ତି କାଉଁରୀ କାମାକ୍ଷ ଗଲେ ମରଦଗୁଡ଼ା ଦିନରେ ମେଣ୍ଢା ରାତିରେ ଭେଣ୍ଡା । ମନରେ ଅନେକ ପ୍ରଶ୍ନ, ଅନେକ ସ୍ୱପ୍ନ, ଫେଣ୍ଡା ଫେଣ୍ଡି, ମଥାପିଟି ଅପସରି ଯାଉଥିଲେ ହେଁ ଭୟ ଛାଡ଼ିନଥାଏ ତାକୁ ।

ଶୁଣିଚି, ଆଦିବାସୀ ସବୁ ଦେଇପାରେ ହୃଦୟ ପାଇଲେ, ଖୋଲା ହୃଦୟ ନେଇ ସରଳଭାବେ ବଂଚିବାକୁ ସେ ପସନ୍ଦକରେ । ସେଥିରେ ଥରେ ଟିକିଏ ବି କପଟ ଦେଖା ଦେଲେ କି ଓଲମ୍ ବିଲମ୍ ହେଲେ କାଟି ଅଲଗା କରିଦେବ ଗଣ୍ଡି ରୁ ମୁଣ୍ଡ । ଚୁମ୍‌କୀର ଚଳଚଞ୍ଚଳ ପଣ ମୋତେ ଯେତିକି ଆକୃଷ୍ଟ କରୁଥାଏ ସେତିକି ଭୟଭୀତ ବି ।

ରାନ୍ଧଣା ସରି ଯାଇଥାଏ । ହରିଣ ମାଂସ କଷା ସାଙ୍ଗକୁ ଗରମ ମୁଢ଼ୀ ଏକାଠି ବସି ନଖାଇବାର ଉପାୟ ନାହିଁ । ରାତିକଟେଇ ବାକୁ ହବ । ସକାଳୁ ଲକ୍ଷ୍ୟ ସ୍ଥଳକୁ ଯିବାକୁ ହବ । କେତେ ଗେଲଟାପରା ଭିତରେ ସରିଗଲା ମଣୋହି ପର୍ବ । ଆଦିବାସୀ ଘରେ କି ନୂଆ କୁଣିଆ । ଦରିଦ୍ର ନିରନ୍ନ ଅଶିକ୍ଷିତ ବଣର ମଣିଷ ହେଲେବି ଅତିଥେୟତାର ତୁଳନା ନାହିଁ । ଖୋଲା ଛାତିରେ ସଂଦେହ ବସା ବାନ୍ଧି ପାରେ ନାହିଁ ।

ମାଂସ କେଇଖଣ୍ଡ ଉଦରସ୍ଥ କରିବାକୁ ହେଲା । ବିନା ଅଦା ରସୁଣର । ତେଲରେ ଜୁଡୁ ବୁଡୁ । ହଳଦୀମୟ । ମୁଢ଼ୀ ମୋର ଏରୁଣ୍ଡିବନ୍ଧ ଛୁଏଁ ନାହିଁ । ଆଦିବାସୀ ଢଙ୍ଗର ସ୍ୱାଦିଷ୍ଟ ତରକାରୀରେ ସେଦିନ ଚଳିଗଲା ରାତିର ଭୋଜନ ।

ଖାଇବା ଜାଗାରେ ମହୁଲି ମଦରୁ ପିଇଲେ ଛାଙ୍କେ ଲେଖେଁ ବୁଢା ବୁଢୀ ଝିଅବି ପିଇଲା ଅଳପ । ମୋତେ ଯାଚିବାରୁ ବାରମ୍ବାର ଇଚ୍ଛା ନଥିଲେ ବି ପିଇଲି ଅଳପ । ଢୋକେ ଦି'ଢୋକ । ଆଃ ! କି କଦର୍ଯ୍ୟ ଖଟାଳିଆ ଦୁର୍ଗନ୍ଧମୟ ବାସ୍ନା ଆଉ ଅରୁଚିକର ତାର ସ୍ୱାଦ । ପିଇବା ମାତ୍ରେ ହିଁ ନିଶା । ମାଆ ତାର ନିଶାରେ ଟଳି ଟଳି ଗଲା ନିଜ ଶୋଇବା କୁଡିଆକୁ । ବାପ ଯୋଉ ଜାଗାରେ ଖାଇଥିଲା ସେଇଠି ଟଳି ପଡିଲା ଅର୍ଘାସୁର ପରି । ଛାଡିଲା ମେଦିନି କଂପିଲା ଭଳି ଘୁଙ୍ଗୁଡି । ନିଶା ଧରିସାରିଥିଲା ମୋତେ ଆଉ ଝିଅକୁ । ଦୋ ଦୋ ପାଞ୍ଚ ହଉଥିବା ଅବସ୍ଥାରେ ଟାଣିନେଇ ଶୁଆଇ ଦେଲା ତାର ଶୋଇବା ବିଛଣାରେ ଝିଅ । କନ୍ଥା, କମଳ ଆଉ ତକିଆ । ଆଧୁନିକ ହେଇ ସାରିଲଣି ଆଦିବାସୀ କୋଉକାଳୁ । ପାରିଦେଇଚି ତକିଆ ଓ ଭଲ ସାଇତା ବେଡସିଟ୍ । କର୍ପୁର ବାସ୍ନା । ଛାଡିନଥିଲା ସେଥିରୁ । ଆଖି ବୁଜି ହଉଥିଲା । ଝିଅ ଚାହୁଁଥିଲା ଗପିବାକୁ କଥା ନଥାଇ କଥା ହବାକୁ କି କଅଣ ? ବିଛଣାରେ ଶୋଉ ଶୋଉ ମୁଁ ନିଦେଇ ଗଲି । ହୋସ୍ ନଥିଲା ସେଯାଏଁ ମୋର । ରାତି ଅଧ ସରିକି ଭାଙ୍ଗିଲା ନିଦ । ଦେଖେତ ଝିଅ ଶୋଇଚି ପାଦତଳେ ହୋସ୍ ନାହିଁ ତାର ବି ନିଷ୍ପାପ ମଣିଷର ସରଳ ତରଳ ହୃଦୟକୁ ମୁଁ ଚିହ୍ନିଗଲି ସେଇଠି ।

କେତେ ବିଶ୍ୱାସରେ ରହିପାରିଚି ସେ ମୋ ପାଖରେ । ଏକୁଟିଆ ଗୋଟିଏ ଘରେ । ନିର୍ବିକାର ନିର୍ଭୀକା ସେ । ତାକୁ ଆସେ ଉଦ୍‌ଭିନ୍ନ ଯୌବନର ଉତ୍‌ଫୁଲ୍ଲିତ ମାଦକତାରେ ଆତ୍ମହରା ହେବାକୁ । ଉନ୍ମାଦରେ ନାଚିବାକୁ । ସେ ସହଜରେ ମୁକାବିଲା କରିପାରେ ଯେ କୌଣସି ଗମ୍ଭୀର ଆହ୍ୱାନକୁ । ଦୃଢ ମାନସିକତାର ନିଷ୍ପାପ ସୂତ୍ର ଛିନ୍ନକରି ଦେବାର ପରିଣାମ କଥା ସେ ସ୍ୱପ୍ନରେ ସୁଦ୍ଧା ଭାବିପାରିନଥିବ । ପରସାଙ୍ଗରେ, ପରିବାର ଜନଠାରୁ ସେ ଆହୁରି ଅନ୍ତରଙ୍ଗ । ସଭ୍ୟମଣିଷ ଭୁଲିଯାଇଥାନ୍ତା ସଭ୍ୟତା ଏଇଠି ଅସଭ୍ୟ ଭାବରେ । ମାତ୍ର ଅସଭ୍ୟ ମଣିଷ ଭୁଲି ପାରିନାହିଁ ତାର ସଭ୍ୟତା ।

ଶାଳ ଫୁଲ ବାସ୍ନାରେ ମହ ମହ ଚହଟି ଯାଉଥାଏ ଘର ଭିତର । ଫିଟି ପଡିଥିବା ଜୁଡାର ଗହନ ବନରେ ନିଦପରି ନିର୍ବିକାର ଚହଟି ଯାଉଥିଲା ସେ । ଘରଭିତରେ ମୋତେ ସାହାସ ଓ ଦୃଢତାର ସମ୍ଭାବନା ଦେଖାଦେଲା ଏତେବେଶୀ ଯେ ମୋର ସମସ୍ତ ଦୁର୍ବଳତା ଆପେ ଆପେ ପାଣିଫାଟି ମିଳାଇଗଲା, ଆପଣା ଭିତରେ । କ୍ଷଣିକର ଉନ୍ମାଦ ରୂପାନ୍ତରିତ ହୋଇଗଲା ଏକ ବୃହତ୍ତର ଚିରନ୍ତନ ସତ୍ୟର ଅନୁଭବରେ । ମୁକୁଳା କେଶରୁ ଖାଣ୍ଟି ଖସାତେଲର ବାସ୍ନା ମୋତେ ତଥାପି ରୁନ୍ଧି ଦେଉଥିଲା । ବେଳେ ବେଳେ ହେଇଯାଉଥିଲି ଅନ୍ୟମନସ୍କ ।

ମନୁଷ୍ୟ ଥରେ କୃତସଂକଳ୍ପ ହୋଇଗଲେ ସବୁକଥା ତା'ବଶରେ ରହିଯାଏ । ତା' ଆୟତରୁ ବାହାରି ପଦାକୁ ଯାଇ ପାରେନା । ତା ପିଛିଳ ମନର ସଂକଳ୍ପ ଭାଙ୍ଗିଗଲେ ମଣିଷର ନିଷ୍ପତ୍ତି ବଦଳିଯାଏ । ମଣିଷର ଇଚ୍ଛାଶକ୍ତି ଦୁର୍ବଳ ହୋଇଯାଏ । ଦୁର୍ବଳ ଇଚ୍ଛାଶକ୍ତି ସ୍ୱଭାବକୁ ଆନ୍ଦୋଳିତ କରିପକାଏ । ଆନ୍ଦୋଳିତ ସ୍ୱଭାବ ପ୍ରକୃତିକୁ ପ୍ରତାରିତ କରିଥାଏ

ଫଳରେ ମଣିଷ ପ୍ରକୃତିର ଦାସ ପାଲଟି ଯାଏ । ପ୍ରକୃତି ଯେଉଁଠି କ୍ଷଣିକତାର ମୋହରେ ମୁହ୍ୟମାନ ସେଠି ମଣିଷର - 'ନଷ୍ଟସ୍ୟକାନ୍ୟାଗତି, ପତଙ୍ଗର ପତନମୁଖୀ ଅଭିଯାନ' ।

ଜାଗୃତି ଓ ନିଦ୍ରା ମଝିରେ କେତେବେଳେ ରାତ୍ରି ପାର୍ ହୋଇଗଲା ବୁଝାପଡିଲା ନାହିଁ । ମନ୍ଦିରର ହନୁମାନ ଚାଳିଷା ଆଉ ଗୀର୍ଜାର ଘଣ୍ଟା ବଜାଇ ଏଠି କେହି ଉଠାଉ ନାହାନ୍ତି ସକାଳୁ ସକାଳୁ ଜଙ୍ଗଲି ମଣିଷକୁ ସେ ଉଠିଯାଏ ଆପେ ଆପେ ଠିକଣା ବେଳହେଲେ ଲାଗିପଡେ କାମରେ ଉଠିବା ପରମୁହୂର୍ତ୍ତରୁ ।

ସକାଳ ନହେଉଣୁ ଆରମ୍ଭ ହୋଇଗଲା ଆତିଥେୟତା । ପାଚିଲା କଦଳୀ, ପିଜୁଳି, ଆତ ଓ ପାଚିଲା କେନ୍ଦୁ । ଡାଲାରେ ଡାଲାଏ ଶିଝା ଚଣା । ପୋଡା କନ୍ଦମୂଳ ସାଙ୍ଗକୁ ବଣର ପାଚିଲା ଖଜୁରୀ କୋଳି ଆଉ ରାମ୍‌କନ୍ଦା କ'ଣ ଖାଇବ ଖାଅ ।

ଜାଣେନା ମୋ ପାଇଁ ଏ ଆତିଥେୟତାର ମାନେ କଅଣ ?

ଝିଅ ଆଣି ପାଣିଢାଳ ଦେବାଠୁ, ଦାନ୍ତକାଠି ସଜାଡିବା । ଖାଇବା ଦରବ ଆଣି ସାମ୍‌ନାରେ ଥୋଇବା ଆଦି କାମରେ ତତ୍‌ପର ଥାଏ ସେ । ଭିତରୁ ଥାଇ ମାଆ ଯୋଗାଡି ଦେଉଥାଏ, ଝିଅ ପଣି ଦେଉଥାଏ । ମା' ଆଦେଶର ବୋଲକରା ଝିଅ । ଗାଁ ମାନଙ୍କରେ ବାପଘରେ ଥାଇ ଝିଅ କୋଇଁ ଥାଳୀରେ କୁଢେଇ ଦେଲାପରିମୋ ପତ୍ରରେ ଦେଉଥାଏ ।

ଏତେ ସମୟ ଏକାଠି ବିତିବାପରେ ବି କଥା ପଦେ ହେଇନି ଝିଅ । ଖାଲି ମୁରୁକି ହସ । କଥା ନୁହେଁ ହସରେ ହସରେ କଟିଗଲାଣି ଏତେବେଳ ।

ସେ ହସରେ କ'ଣ ଅଛି କେଜାଣି ? ମୁଁ ଜାଣିବାର ସୁଯୋଗ ନଥିଲା । ତେବେ ଏତିକି ବୁଝି ହେଇଯାଉଥିଲା - 'ଖୋଲା ଆକାଶ ତଳେ ସବୁଜ ଘାସ ପଡିଆରେ ଥିରିଥିରି ମଳୟ ବାଆରେ ସଦ୍ୟ ପୁନେଇଁ ଜହ୍ନ ଯେମିତି କ'ଣ କିଛି କହିବ କହିବ ହେଉଛି । କହିପାରୁନି । ଲାଜ ଓ ସମ୍ଭ୍ରମତା ତା କଣ୍ଠକୁ ଚିପି ଧରିଚି । ଧ୍ୱନୀ ହୋଇ ବାହାରିବା ଆଗରୁ ଝରଣାର ନିର୍ମଳ ଜଳପରି ବହିଯାଉଚି ଖିଲିଖିଲି । ଚାହିଁଦେଲେ ମନପୂରି ଉଠୁଚି ସେ ହସରେ । ତାରି ଭିତରେ ତା' ଅଭିଳାଷ ଝଲସୁଚି ଟାଇଁଟାଇଁ ।

ଝିଅର ବାଆ ତା' ଭାଷାରେ ବୁଝାଇବାର ଯତ୍ନ କରୁଚି- 'ଏ ଝିଅ ! ବାବୁର ଜଳଖିଆପତ୍ର ସଅଳ ବୁଝିଦେ ।' ଛାଡି ଆ ନେଇ ହାଟ ପାଖରେ । ବାଟଜାଣିନି । ସେଠୁ ମଟରରେ ବସି ବାବୁ ଯିବ ସହର । ସଅଳ ଯା' ନହେଲେ ମଟର ଛାଡିଯିବ । ଆଉ ମଟର ନାଇଁ । ପୁଣି ଯାଇ ମିଳିବ ସଂଜକୁ ।

ଚଟାପଟ ମୁଁ ମୋର ବ୍ୟାଗ୍ କାନ୍ଧରେ ପକାଇ ଠିଆହେଲି ଯିବାପାଇଁ । ଝିଅର ମା' ତାର ଆଦିବାସୀ ଭାଷାରେ କଇଲାଣ କରି କହିଲା - 'ଯା' ପୁଅ ଯା' !

ମାଆକୁ ମନେ ରଖିବୁ । ଭୁଲିବୁ ନାହିଁ । କେବେ ସୁବିଧା କରି ଆସିବୁ । ଧରତିନ୍‌ମା' ତୋତେ ସାହା ।' କାନ୍ଦ୍ କାନ୍ଦ୍ ହେଇ ଠିଆ ହେଇଥିଲା ବୁଢ଼ୀ ।

ଝିଅ ତାଳପତ୍ର ସିଲେଇ ସୁନ୍ଦର ବ୍ୟାଗ୍‌ରେ ଜଙ୍ଗଲୀଫଳ, ମୂଳ କୋଳି ଭର୍ତ୍ତି କରି ଆଣି ଠିଆ ହେଲା । ବୁଢା ବୁଢ଼ୀଙ୍କୁ ହାତଯୋଡ଼ି ଜୁଆର ହେଇ ମୁଁ ଚାଲିଲି ପଛେ ପଛେ ତା'ର । ବଡ ଦୁଃସହ ଓ ମର୍ମଭେଦୀ ଥିଲା ସେ ବିଦାୟ ।

ସର୍ଭେ କରୁକରୁ ପଥ ହୁଡ଼ିଲି । ପଡ଼ିଲି ଏ ଅବସ୍ଥାରେ । ଆଦିବାସୀ ପଲ୍ଲୀରେ ବିଜୁଳିନାହିଁ । ମୋ ମୋବାଇଲ୍‌ରେ ଚାର୍ଜନାହିଁ । ଆଦିବାସୀ ଜାଣେନା ବିଜୁଳି ଆଲୁଅ । ବିଜୁଳି ପଙ୍ଖା, ଫୋନ୍ କି ମୋବାଇଲ୍ । ସେ ଜାଣେ ହୃଦୟର ଆଲୋକ । ମନର ଫୋନ୍ । ସ୍ନେହ ପ୍ରେମର ମୋବାଇଲ୍‌ରେ କଥାହେବା ଠିକ୍ ଠିକ୍ । ଯେତେଦୂରେ ଥିଲେ ।

ଏଠୁ ଯିବାକୁ ହବ ପାଞ୍ଚ ମାଇଲ୍ । ପାହାଡର ଏପଟ ମୁଣ୍ଡିଆ ଚଢି ଆରପଟ ହାଟକୁ । ଯୋଉଠିକି ଦିନରେ ଦି'ଥର ଆସେ ବସ୍ । ସକାଳେ ଆଉ ସଂଜକୁ । ସେଇଠୁ ଯାଇପାରିବ ଜୁନାଗଡ ନହେଲେ ପାପଡାହାଣ୍ଡି । ଏଠି ପାହାଡ ଘଞ୍ଚ ଜଙ୍ଗଲରେ ପୂର୍ଣ୍ଣ । ଶ୍ୱାପଦ ସଂକୁଳ । ଝିଅ କିଛି ବି ଆଣିନି ହାତରେ ଶସ୍ତ୍ର । ହିଂସ୍ରଜନ୍ତୁ ଭୟରେ ଛାତି ମୋର ହେଉଥାଏ ଥରହର । ଝିଅ ନିର୍ବିକାର ଚାଲିଥାଏ ତରତର, ନିତିଦିନିଆ ଢଙ୍ଗରେ ତା'ର । ପାହାଡି ଚଢା, ଉତରା, ଗଳିରାସ୍ତା କଣ୍ଟାଝଣ୍ଟା ବାଟ । ମୁଁ ଥକିପଡିଲେ ସେ ଠିଆହୁଏ । ଅପେକ୍ଷା କରେ । କିଛି ବି କହେନା ।

ଏତେବାଟ ଆସିବା ପରେ ମୁଁ ପଚାରିଲି

ତୋ ନାଆଁ କଅଣ ?

ଉତ୍ତର ନାହିଁ । ମୁରୁକିହସ ।

ତୁ ପାଠ ପଢିଛୁ ? ଉତ୍ତରନାହିଁ । ମୁରୁକି ହସ । ଏବେ ଆଦିବାସୀ ଇଲାକାରେ ଖୋଲିଲାଣି ଗୋଟେ ଗୋଟେ ସ୍କୁଲ୍ ।

ପାଠ ପଢିବୁ ? ଉତ୍ତରନାହିଁ । ମୁରୁକି ହସ ।

ତୋର ବାହାଘର ହୋଇଚି ? ଛାତିଯାଏ ହାତର ଇଙ୍ଗିତ ଦେଇ ବୁଝେଇ ଦେଲି, ଜୀବନସାଥୀ । ଉତ୍ତରନାହିଁ । ମୁରୁକି ହସ ।

ତୁ ସହରକୁ ଯିବୁ ? ଉତ୍ତର ନାହିଁ । ମୁରୁକି ହସ ।

ମୋ ସାଙ୍ଗରେ ମୋ ଘରକୁ ଯିବୁ ? ରହିଗଲା ଝିଅ । ଉତ୍ତର ଦେଇଥାନ୍ତା କି କଅଣ ? ମୁରୁକି ହସି ପାରିଲା ନାହିଁ । ମୁଁ ଲକ୍ଷ୍ୟକଲି ଛାତିଭିତରଟା ତାର ଦଳି ମକ୍ଟି ହେଇଯାଉଛି । କ'ଣ ଯେମିତି ଭାଙ୍ଗିରୁଜି ଚୁରମାର୍ ହେଇଯାଉଛି ତା' ଭିତରେ ।

ଆମେ ହାଟରେ ପହଞ୍ଚିସାରିଥିଲୁ । ବସ୍ ହାଟରେ ଲାଗି ସାରିଥିଲା । ଯାତ୍ରୀମାନେ ବସି ସାରିଥିଲେ । ମୋର ଧାଇଁ ଯାଇ ବସିଯିବାର ଥିଲା । ଝିଅ ଠିଆ ରହିଥିଲା ତଳେ । ଅସହାୟ ଏକ ଛେଉଣ୍ଡ ପିଲାପରି ଚାହୁଁଥିଲା ନିରୀମାଖୀ ହୋଇ । ତା' ଓଠରେ ସେ ମୁରୁକି ହସ ନଥିଲା । ଭାରି ଭାରି ଆଖିପତାରେ ଆସି ଯାଇଥିଲା ଆଷାଢ଼ିମେଘ। ମୋତେ ଅବସର ନଥିଲା । ତା'କଥା ବୁଝି ବୁଝେଇବାର ସମୟନଥିଲା । ଆସନ୍ତା ରାତିଯାଏଁ କୌଣସି ଏକ ସହରଯାଏଁ ମୋତେ ପହଞ୍ଚିଯିବାର ଥିଲା । ସର୍ଭେ ଦଳକୁ ଯୋଗାଯୋଗ କରିବାର ଥିଲା । ଘରକୁ ଫୋନ୍‌ରେ ଜଣାଇବାର ଥିଲା । ଦୀର୍ଘ ଅନୁପସ୍ଥିତି ମୋର କାହାକୁ କି କାରଣ ଦେଇ ବୁଝାଉଥିବ, ମୁଁ କିକର୍ତ୍ତବ୍ୟ ବିମୂଢ଼ ଥିଲି ।

ଝିଅ କିଂକର୍ତ୍ତବ୍ୟ ବିହ୍ୱଳ ଅବସ୍ଥାରେ ଥିଲା । ଝରକା କାଚଦେଇ ଦିଶୁଥିବା ତା ନାଲିକସ୍ତାର ଆବରଣ ଭିତରୁ କିଏ ଯେମିତି ହାତଯୋଡି କହୁଥିଲା – 'ମୋତେ ନେଇ ଯାଆନା ବାବୁ! ମୁଁ ପାଠପଢ଼ିବି । ସହରୀ ହେବି, ତୋ ସାଙ୍ଗେ ରହିବି । ଚାକିରୀ କରିବି । ତୁ ଯାହା କହିବୁ ତା' କରିବି । ନେଇ ଯାଆନା ? ?'

ବସ୍ ଗଡିଚାଲିଲା ।

କିଛିବାଟ ପରେ ମୋର ଚେତନା ଫେରିଲା– 'ଆରେ! ଝିଅଟା ମୋ ସାଥୀରେ ପଳେଇ ଆସିଥାନ୍ତାନା କଅଣ ? ସେଇଥିପାଇଁ ସେ ତା'ର ଭଲ ନୂଆ କସ୍ତା ଶାଢ଼ୀ ପିନ୍ଧି ଆସିଥିଲା ଘରୁ । ଓଃ ! ମୁଁ କ'ଣ କଲି । ଝିଅଟା ତା'ଘରକୁ ଆଉ ଫେରିଥିବ ନା ନାହିଁ ? ରାତିଟା ମୋ ସାଥିରେ ରହିବା ପରେ ତା' ସମାଜ ତାକୁ ଗ୍ରହଣ କରିବ ନା ନାହିଁ ? ? ?



# ଦେବୀ

ସେ ହସିଲେ ଫୁଟିଯାଏ ଫୁଲ ବଗିଚସାରା । ହସିଦିଏ ଦାଣ୍ଡ, ଅଗଣା, ଘରର ନିବୁଜ କୋଠରୀ। ହସେ ୟୁନିଭରସିଟି କ୍ୟାମ୍ପସ। କ୍ଲାସ୍ରୁମ୍ , କ୍ୟାଣ୍ଟିନ, ଅଫିସ୍, ଅଡିଟୋରିୟମ, ରାସ୍ତା, ରେସ୍ତୋରାଁ। ହସିଦିଏ ଲାଇବ୍ରେରୀ କାଉଣ୍ଟର, ବୁକ୍ ସେଲଫ୍, ଯେତେକ ବହି। ହସିଦିଅନ୍ତି ସାର, ହସି ଦିଅନ୍ତି ମ୍ୟାଡମ୍ (ଯଦିଓ ମ୍ୟାଡମମାନେ ପରେ ହସିପାରନ୍ତି ନାହିଁ ନିଜ ଭିତରେ ଚୁପ୍ ଚାପ୍ କହିହୁଅନ୍ତି ନିଜକୁ- 'କେଡେ ଅଲାଜୁକି !')

ତା' ହସରେ ଟୋକାଏ ଉଚ୍ଛନ୍ନ ହେଉଯାଆନ୍ତି। ରାସ୍ତାକଡର ଦୋକାନୀଗୁଡା ଡବଡବ ଆଖିରେ ଅନେଇ ରହନ୍ତି ତା' ମୁହଁ କୁ। କାଣିଚାଏ ହସର ପ୍ରସାଦ ପାଇଯିବେ ଯେମିତି। ଯେ କୌଣସି ରିକ୍ସାବାଲା ହସିହସି ଡାକେ- 'ଆସୁ ନାହାନ୍ତି ଦିଦି, କୋଉଠିକି ଯିବେ ?' ବସ କଣ୍ଡକ୍ଟର ବିନା ଷ୍ଟପେଜରେ ବି ଗାଡିରଖି ଦାନ୍ତ ଦେଖେଇ ପଚାରେ- ବସଷ୍ଟାଣ୍ଡ ଯିବେ ? ହେଲପର ହସିବାକୁ ଇଚ୍ଛା କଲେବି ତା' ପାଇଁ ଚାନ୍ସ ନାହିଁ।

ମୋଟାମୋଟି ସେ ଗୋଟେ ହସର ଏପିଟୋମ୍। ଚାଲୁଥିଲେ ହସୁଥାଏ। କଥା କହୁଥିଲେ ହସୁଥାଏ।  ମୁହଁଟା ହସକୁରା କି ନା ଯାହାବି କହିଲେ ହସ ଇ ହସ। ଅର୍ଥାତ୍ ଯୋଉଠି ପଶିଯାଏ ସେ ପରିବେଶ କେମିତି ଗୋଟିଏ ସତେଜ ସତେଜ ଲାଗେ। ଗଛ, ପତ୍ର, ପବନ, ଖରା, ଛାଇ ସବୁ ଯେମିତି ହାଲ୍‌କା ହୋଇପଡେ, ମଂଜେଇ ଯାଏ ବି।

ଘରେ ଭିତରେ ସେଣ୍ଟ ଛିଞ୍ଚି ଦେଲେ କି ଧୂପକାଠି ଲଗାଇ ଦେଲେ ଯେମିତି କୌଣସି ଦୁର୍ବାସନା ନରହି ମହକି ଉଠେ ଘରସାରା; ସେମିତି ସେ ଆସିଗଲେ ସବୁଆଖି, ସବୁମନ, ସବୁଦେହ ଚହଲିଯାଏ କିଛି ସମୟ ପାଇଁ। ଖୁସି ହୋଇଯାଏ ଏକରକମ୍।

କୋଉ ବିଧାତା ତା'ମୁହଁରେ ଏତେ ହସ ଖଂଜିଦେଲା କେଜାଣି ? ହସତ ନୁହେଁ, ଛୁରୀ । ଛାତି ଭିତରେ ପଶି କଚ୍ କଚ୍ କରି କାଟି ଦିଏ କଳିଜାକୁ ଦେଖଣାହାରୀର। ଆକୁଳେଇ ହୋଇଯାଏ ଦେଖଣାହାରୀ। ଓଟାରି ହୋଇଯାଏ ଗୋଟାଏ ଅପୂର୍ବ ସୁନ୍ଦର ଦୃଶ୍ୟ ଆଡେ। ନିଜ ଇଚ୍ଛାରେ ହେଉ କି ଅନିଚ୍ଛାରେହେଉ। ତାକୁ ଦେଖିବା ମନା ବୋଲି

କହିପାରେନା ତା' ବୟସ ତା କର୍ମ, ଜଂଜାଳ, ତା ନୀତି, ଆଦର୍ଶ, ଶାସ୍ତ୍ର ସମାଜ ଓ ଶାସନ-କେହି। ଯୁଗାପତ୍ ପିଇଯାଏ କ'ଣ ସେଇ ଏକା ନିଘାରେ। ବିଷ ନା ଅମୃତ? ସେ ହିଁ ଜାଣେ। ବିଷ ପିଇଥିଲେ ସର୍ବନାଶ। ତାକୁ ଆଉ ନିସ୍ତାର ନାହିଁ। ଅମୃତ ପିଇଥିଲେ ସାବାସ୍। ତାର ଆଉ ବିସ୍ତାର ନାହିଁ।ଯା'ପରେ ନିର୍ବାଣ। ବୋଧହୁଏ ଯାରି ନା ଆନନ୍ଦ। ଯାରି ନା ମକରନ୍ଦ। ଯାରି ନା ଅମୃତ ।। ସ୍ୱର୍ଗସୁଖ।

ଗୋରା ତକତକ ମାର୍ବଲ ଦେହ। ଚମ୍ପାଫୁଲିଆ ଚେହେରା। ହାତ ପାଦ ବୟସ ରଙ୍ଗରେ ପାଚି ଟୁଲୁଟୁଲ୍। ନିକ ନଥିବା ପା', ପାପୁଲି, ଚମ୍ପାକଢପରି ଆଙ୍ଗୁଠି ଆଗରେ ଫୁଲ ନିତି ପ୍ରତିଦିନ-ନାଲି, ନେଳି, କଳାଧଳା କେତେ କଅଣ। ଅଣ୍ଟା ଆଉ ପେଟର ମଝି ପାଟଣାରେ ଅଛି ଯେଉଁ ଗୋଟେ ମାୟାପୁରୀ। ତାର ଏତେ ବେଶୀ ଆକର୍ଷଣ ଯେ ବନ୍ଦୀ ହୋଇ ଯାଆନ୍ତି ପଥଯାତ୍ରୀ। ମୁକ୍ତିରେ ବୁଲିବା ଅପେକ୍ଷା ବନ୍ଦୀ ହୋଇ ସେଠି ବିଶ୍ରାମ ନେବା ସତେ ଯେମିତି ପ୍ରତିଟି ଯାତ୍ରୀର ଇଛା ହୋଇପଡେ। ମଣିଷ ଏଇଥିପାଇଁ ବୋଧହୁଏ ଯୁଗେ ଯୁଗେ ବନ୍ଦୀ ଜୀବନର କଷ୍ଟକୁ ସ୍ୱୀକାରିଛି, ମୁକ୍ତିର ଅସହାୟତା ବୋଧ ଅପେକ୍ଷା।

ସବୁଠାରୁ ବଡ ପ୍ରୋବ୍ଲେମ୍ ହେଲା, ସେ ଯୋଉ ଶାଢୀ ପିନ୍ଧେ ତାକୁ ମାନେ-ସୁଟ୍‌କରେ, ଖାଇଗୋଡାଏ। ତୀଖ-ଦୀର୍ଘ୍ୟକ ବଙ୍ଗାଳିଆ ନାକକୁ ସରଧାର ଧରିଥିବା ଝରଣା ପରି ଲମ୍ବିଯାଇଥିବା କାଶ୍ମିରୀ ଆଖି। ସରୁଚାହାଣି ପରିଭ୍ରୁ ଚଳଚଞ୍ଚଳପଲକ । ସ୍ବଳ୍ପଗୁଣ ମଣିପୁରୀ କପାଳରୁ ଝରିଆସିଥିବା ସେଓପରି ଆଂଗ୍ଲୋଇଣ୍ଡିଆନୀୟ ଗାଲ, ତା ସାଙ୍ଗକୁ କୁଞ୍ଚକରା ମାଡ୍ରାସୀ ବେକ ଓ କଳା ଭଅଁର ଆକାଶର ମେଘଖଣ୍ଡପରି ଦିଗ୍‌ବଳୟ ଯାକେ ଲମ୍ବିଥିବା ଘନ କେରଳୀ ଚୂର୍ଣ୍ଣ କୁନ୍ତଳ। ଖୋଲାଥାଉ କି ବନ୍ଧା, ସେଥିରେ ଚର୍ମ ଅଛି। ଗଜା କେଶାଚ୍ଛାଦିତ ନିବ୍ରଣ ମୁହଁକୁ ଦୁଇଟି ରକ୍ତିମ ଓଠ ଓ ଧାଡି ଧାଡି ଚାମ୍ପା ଫୁଲର ଦିଲ୍ଲୀ ଦାନ୍ତରେ ଭରପୁର ଐଶ୍ୱର୍ଯ୍ୟ। ଏତେବେଶୀ ଆଟ୍ରାକ୍ଟ କରେ ଯେ-ସେ ଏ ସହରର ଗୋଟାଏ ମଡେଲ ପାଲଟି ଯାଏ। ପ୍ରତି ଛକ ପ୍ରତି ଲେନ, ବଜାରର ପାନ ଦୋକାନ ଆଗରେ ବି ତା' ଚର୍ଚ୍ଚା ଚାଲେ- 'ଓଃ କି ମାଲ୍ ହେଇଛି ?' ସାଲା ପାଗଲ୍ ବନାଏ ଦବ।'

କେହି ପାଟି କରି ଉଠେ-ଆବେ ତୁ କ'ଣ ଜାଣୁବେ। କଥାରେ ନାଇଁ ହସ ତା' ଲକ୍ଷେ ଟଙ୍କା, ସେ ଯଦି ହସମଖା ଗୋଟାଏ ଗ୍ଲାନ୍‌ସ ମାରି ଦେଇଛିନା, କୋଉ ଶାଲା ଟୋକା ଅଛି ବେ ଜାନ୍ ଖଇରାତ ନକରି ଥାକିଯିବ??

-ସତରେ ଏମିତି ପାଟନରଟା ମିଳିଗଲେ, ଜୀବନରେ ଆଉ କିଛି ଦରକାର ନାହିଁ। ଆଇ.ଏ.ଏସ୍. ପ୍ରସ୍ତୁତ କରୁଥିବା ସିନିୟର ଏମ.ଏ. ପଢୁଆ ବ୍ରିଲ୍ୟାଣ୍ଟ ଗ୍ରୁପ୍ ଏପରି ମତଦିଏ।

ପାଖ ସାଇକେଲ ଦୋକାନୀ ଶୁଣି ଦେଇ ହସି ହସି ଗଡିଯାଏ। ଆଉ କହେ- 'ଏ ବାବୁ! ତା' ହେଲେ ଚିଡିଆକୁ ଧରିବା ପାଇଁ ଫାଶ ବସାଉନ?' ଘରେ ତ ଭଲ

ପାଖ ଅଛି, ମୁଁ ତାକୁ ଖଞ୍ଜି ଦଉଚି। ତମ ନନାଙ୍କୁ ଏକଥା କହିଲେ ସେ କେବେ ଅରାଜି ହେବେ ନାହିଁ। ଭଲ ହବ, କ'ଣ କହୁଛନ୍ତି ?

ପ୍ରତ୍ୟୁତ୍ତରରେ ଶୁଣିବାକୁ ମିଳେ- 'ଭଲ ହବ ଯେ ହେଲେ ଦାମବହୁତ ଦାନା ବି ବହୁତ। ଯାକୁ ବାନ୍ଧିବା ଯାହା ହାତୀ ବାନ୍ଧିବା ସେୟା । ଚାକିରୀ ବାକିରୀ ନାହିଁ। ଏକେତ ବେକାର। ଆମେ ତ ପୋଷି ପାରିବା ନହିଁ ନିଜକୁ। ଆମକୁ କିଏ ଝିଅଦବ ?

ଶାଲା କାଓ୍ୱାର୍ଡ କାଓ୍ୱାର୍ଡ !! ଜିଓ ତୋ ମରଦ୍‌କି ତରା ଜିଓ। ଆବେ ତୁମ ଶାଲା କ୍ୟା ଔରତ ହେ ଔରତ ? ହମ୍‌ନେ ତୋ ଇସକେ ଲିଏ ଜାନ ଫିଦା କର ଦେଙ୍ଗେ, ହାଁ। ଶାଲା ଚୋରୀ କରେଙ୍ଗା ତୋଭି ସାଦିକୋ ନହିଁ ଡରେଙ୍ଗା-ଅପନପର କ୍ୟା ହମ୍‌ମତ୍ ନହିଁ !!! ଅଣ ଓଡିଆ ସାଙ୍ଗ ଦୃଢମନ୍ତବ୍ୟ ଦେଇ ଆତ୍ମ ତୃପ୍ତି ଲାଭକରେ।

ପାଖ ଚ୍ଛ' ଜଳଖିଆ ଦୋକାନରେ ଗ୍ଲାସ ଧୋଉଥିବା ଟୋକା ଉପରକୁ ଅନାଇ କ'ଣ ଗୁଡେ ପିଇଯାଉଥାଏ। ତା ଭାବନା ତାକୁ ଟାଣି ନେଇ ପଚ୍ଛରୁଥାଏ- ସତରେ ମୁଁ ଯାକୁ କେତେଥର ଅନାଇଚି ? ଟୋକାର କାମବନ୍ଦ ଢଙ୍ଗ ଦେଖି ମାଲିକ ରାଗି ବିଡ ବିଡେଇ ଉଠେ- 'ଆବେ ଚୁଇଁ ! ତୋର ପୁଣି କ'ଣ ହେଲା ? ଖାଲି କ'ଣ ପିଇଯାଉଚୁ । ପିଇଯାଉଚୁ । ଦେବି ଯେ ଏକ ଶକ୍ତ ଜବଡା, ପୁଅର ସୁନ୍ଦରୀ ଦର୍ଶନ ଛାଡିଯିବ।

ଚୁଇଁ ସଚେତନ ହୋଇ ପ୍ଲେଟ ଆଉ ଗ୍ଲାସ ଧୋଇବାରେ ଲାଗିପଡେ। ତା ଯିବା ଆସିବା ବାଟକୁ ନ ଚ୍ଛହିଁଲେ ଚୁଇଁର ଭାତ ହଜମ ହୁଏନାହିଁ। ଚଉଦ ପନ୍ଦର ବର୍ଷର ଟୋକା। ଅନାଥ ସହାୟ ହେଇଥିବାରୁ ମୁଣ୍ଡ ଗୁଞ୍ଜିବା ଆସି ଚ୍ଛ ଜଳଖିଆ ଦୋକାନରେ। କାମକରି ଦି'ବେଳା ପେଟପୁରା ଖାଇବାକୁ ପାଉଚି। କେତେ କିଏ ଆସି କହିଲେଣି ତୁ ଶିଶୁ ଶ୍ରମିକ ଆଇନ ଲଗେଇ ଦେ। ମାଲିକ ସାବାଡ ହେଇଯିବ। ଏଥିରେ ସେ କେବେ ମନ ଦେଇନି। ଖାଇଲା ପତ୍ରରେ କେମିତି ହଗିବ। ଆଇନ ସିନା ଲାଗିଯିବ। ମୋ ପେଟ କିଏ ପୁରେଇବ ? ବଡ ଆସିଲେ ବାତ୍ ଶିଖେଇବାକୁ, ଗଣ୍ଡେ ଖାଇବାକୁ ପାଉଚି ବୋଲି ତ ଏତେ ଏତେ ମଜା ଦୃଶ୍ୟ ଦେଖିପାରୁଚି। ଭାବିପାରୁଚି। ମାଡଖାଇ ମନ ବିକ୍ଷେଇ ଯାଏ। ଆଦର ପାଇ ମନ ଭୁଲିଯାଏ।

ସେ ଛକରେ ଚୁଇଁ ହେଇଯାଏ ଗୋଟାଏ ମାଧ୍ୟମ। ଚୁଇଁକୁ ଦେଖେଇ କେହି ପଚାରେ 'ଆବେ ଚୁଇଁ ! ତୋ ଲାଲଟଡେଇ କୁଆଡେ ଗଲାକିରେ ? ଆଜି ଆସିନାହିଁ ନା ଆସିକି ପଳେଇଲାଣି ? ଚୁଇଁ ସଠିକ୍ ଖବର ଦେଇ ଦିଏ ଓ ଚକୋଲେଟ୍ ଖାଏ। ଆଠେଣି ଟଙ୍କି ପାଏ। ବେଳେବେଳେ ସାଦାପାନ ଖାଇ ଓଠ ରଙ୍ଗେଇ ଦିଏ।

ଚୁଇଁକୁ ସାକ୍ଷୀ ରଖି ବାଜିପଡେ। ଚୁଇଁ। ରଖ ଏ ଶହେ ଟଙ୍କା। ମୁଁ ତୋ ଲାଲପରି ସାଙ୍ଗେ ବାଜି ମୁତାବକ କଥା ହୋଇ ନପାରିଲେ ତୋ ଆଗରେ ନଣ୍ଡା

ହେଇ ବୁଲିବି, ଯଦି କଥା ହେଇଯାଏ ? ତମେ ସବୁ ନଣ୍ଡା ହବତ ? ଚୁଇଁ ଡରିଯାଏ କଲେ ତାକୁ ନଣ୍ଡା ହବାକୁ ପଡିବ। ସେ କଥା କୁଆଡେ ରହିଯାଏ ଅପାସୋରା।

ଚୁଇଁ ଦେଖିଚି ଝିଅଟା ଭାରି କଥା କୁହାଳିଆ। ନିଡର। ଛାତି ଦମ୍‌ବାଲା। ବେଳେବେଳେ ଚୁଇଁକୁ ମଝିରେ ଥାଇ ସମସ୍ୟାରେ ପଡିଯବାକୁ ହୁଏ। କେହି ନଥିଲା ବେଳେ ଦୋକାନରୁ ପାଣି ପିଇବା ନାଆଁରେ ସେ ଆସେ ଚୁଇଁ ପାଖକୁ। ଭାରି ଆଦର କରେ। ତା' ଘର, ବାପାମାଆ କଥା ପଚାରେ। ଦୟାପରବଶ ହୋଇ ଦଶଟଙ୍କି, କୋଡିଏ ଟଙ୍କି ନୋଟ୍ ହାତରେ ଗୁଞ୍ଜିପକାଏ। ମିଠା ମିଠା କଥା କହି ତା' ମନ ପୂରାଇ ଦିଏ। ଘଣ୍ଟା ଘଣ୍ଟା ଗପେ, ତାକୁ ଛାଡି ଯାଏନାହିଁ। ଚୁଇଁ ଚେରେଇ ଯାଏ। ଅତି ହୁଲାସରେ ଦିନକର କାମ ଓଳିକରେ କରିପକାଏ। ଝଅଟ କାମସାରି କଥା ହବାକୁ ପଳାଇ ଆସେ।

କେତେଥର ସେ ପଋରିଲାଣି- 'ଆଛା ଚୁଇଁ! ମୋ ବିଷୟରେ ତମର ଏ ଖଟିରେ ସବୁ କି କି କଥା ହୁଏ ? ମୁଁ ଜାଣିଚି ତୁ ମୋତେ କହିବୁ ନାହିଁ। ମାଡ ଖାଇବାର ଡର ଲାଗୁଚି ତତେ। ହଉ ନକହିଲେ ନକହ। ଏଇ ବୋଲି ସାହାସ ନାହିଁ ତୋ ଛାତିରେ। ତୁ କି ମରଦ ପୁଅ ? ଚୁଇଁ ହତବମ୍ଭ ହୋଇ କହି ପକାଏ ଜିରାରୁ ସିରା।

ଝିଅ କୋଉ କଥାକୁ ଖାତିର ନକରି ଋଲିଯାଏ ତା' ବାଟରେ। ଚୁଇଁ ଛାତି ଦକ ଦକ ହୁଏ। କ'ଣ ନାଇଁ କ'ଣ ହୋଇଯିବ। ଆଶଙ୍କାରେ ସେ ଅତିଷ୍ଠ ହୋଇପଡେ।

ଛକରେ ରହିବା ଚୁଇଁର ହେଇଗଲା ଆଠବର୍ଷ। ସାତବର୍ଷ ବୟସ ବେଳୁ ସେ ଆସି ରହିଲାଣି। ଝିଅଟାକୁ ଦେଖୁଚି ସେ ଗଲା ଛ' ମାସହେଲା। ତା ଛୋଟ ମୁଣ୍ଡରେ ସେ ଯେତିକି ଜାଣିଛି ସେତିକି ସେ ପଢେ ଇନଭରସିଟି ଫିଇପ୍‌ଥ ଇୟର।' ଅର୍ଥ ଜଣେନା। ଶ୍ରେଣୀ ଜାଣେନା। ଆସେ ସହର ମଝିରୁ। କୋଉଗୋଟେ ଲେନ୍‌ରୁ। କ୍ୱାଟରରେ ରହେ। ବାପା ତାର ସେକ୍ରେଟାରୀ ଅଫିସରେ ଚାକିରୀ କରନ୍ତି । ଝିଅ ପଢୁଚି ଏମ.ଏ.। ପ୍ରତିଦିନ ଟାଉନ ବସରେ ଆସି ଓହ୍ଲାଏ ଏଇ ଛକରେ। ପାଣିପିଏ ଚାଲିଯାଏ। ଫେରେ ସାଢେ ଋରିଟାରେ। ନାଁଟା ତାର ଦେବୀ ନା ଦେବୀ ଏମିତି ଗୋଟେ। ତା ସାଙ୍ଗମାନେ ତାକୁ ଡାକିଲାବେଳେ ଚୁଇଁ ଯାହା ଶୁଣିଚି। କେହି କେହି ତାକୁ ଚୌଧୁରୀ ଚୌଧୁରୀ ବୋଲି ଡାକନ୍ତି। ଏ ସବୁ ନାଁ ଶୁଣି ଚୁଇଁଯାହା ଠଉରେଇଛି ତା ନାଁ ବେବୀ  ଚୌଧୁରୀ ନହେଲେ ଦେବୀ ଚୌଧୁରୀ। ତାକୁ ଦେଖିଲେ ଗୋଟିଏ ଗୀତ ମନେପଡିଯାଏ। 'ସାଗର କୂଳେ ଦିନେ.... ହସତା ମଧୁଝରା, ଚାହାଣୀ ମନଋେରା, କଥାରୁ ଝରୁଥିଲା କବିତା।' ସେଇ ଗୀତକୁ ବଦଳେଇ ସେ ଭାବେ ହସ ତା ଲକ୍ଷେ ଟଙ୍କା ଋହାଣୀ ଭାରିବଙ୍କା, କଥାରୁ ଝରେ ଖାଲି ମୁକ୍ତା।

ଚୁଇଁ କହି ଦେଇଚି ଯାହା ଯାହା ପ୍ଲାନ ହେଇଚି ଖଟିରେ। ତାକୁ ଅତି ଆତ୍ମୀୟ ଓ ଆପଣାର ମନେକରି ସବୁ କହିଦେଇଚି। ଆଗକୁ କ'ଣ ହବ ଭାବି ପାରିଲାନାହିଁ ଟିକିଏ। ଅଳପେଇଶା ଟୋକାଙ୍କର ଚାଲେଞ୍ଜ ଦିଆଦିଇ ହେଇଛି।

ହାତପାପୁଲିକି ପାପୁଲି ବାଡେଇ ବାଜି ପକେଇଛନ୍ତି। ଝିଅଟାକୁ ଇଲେଇଟି କରିବେ ବିଚ୍ ବଜାର ଉପରେ। ଦୋଷ ତାର, ଝିଅଟା ଭାରି ସୁନ୍ଦରୀ, ନଖରି। ସମବୟସୀ ଟୋକାଙ୍କୁ ଦେଖିଲେ ଆଖି ନଚେଇ ନଚେଇ ଚାହେଁ। ଚାହିଁଚାହିଁ ତାଙ୍କ ଛାତିଫଟେଇ ଦିଏ। ଉଚ୍ଛନ୍ନ କରି ପକାଏ ତନୁମନ। ତା ଚାହାଣୀ ଶରପରି ଗଳିଯାଏ ଛାତିରେ। ଥରେ ଯିଏ ତାକୁ ଚାହିଁଚି ଦ୍ୱିତୀୟଥର ଚାହିଁବାକୁ ସାହାସ କୁଳାଏ ନାହିଁ। ଡର ଭୟ ଟିକିଏ ନାହିଁ। ହସରେ ହସରେ ପାଗଳ କରୁଥାଏ ଯୁବ ସମାଜ। ତା ଚାହାଣୀ ଭିତରେ ଅଛି ଅଯୂତ ଆମନ୍ତ୍ରଣ। ଆପଣେଇ ନେବାର ଉତ୍ସାହ।

ଭ୍ରମର ମଧୁସଂଗ୍ରହ ପାଇଁ ବନ୍ଦୀତ୍ୱ ସ୍ୱୀକାର କରେ। ପ୍ରଜାପତି ସୌନ୍ଦର୍ଯ୍ୟ ପ୍ରାପ୍ତି ପାଇଁ ଝିନ୍ନଡେଣା ମାନିନିଏ। ପତଙ୍ଗ ଉଜ୍ଜ୍ୱଳତା ପ୍ରାପ୍ତି ପାଇଁ ମୃତ୍ୟୁଯୋଗ ଆମନ୍ତ୍ରଣ କରେ। ପ୍ରତି ଯୁଦ୍ଧ ପଛରେ ଥାଏ ସୁନ୍ଦରୀର ହାତ। ପ୍ରତି ଅଳକାପୁରୀ ପ୍ରତି ଥାଏ ଅହେତୁକ ଆକର୍ଷଣ। ପ୍ରତି ମଣି ଖଚିତ ଭୂଜଙ୍ଗମ ଚୋଟ ତଳେ ଥାଏ ପ୍ରାଣନାଶି ବିଷ। ଏ ସତ୍ୟ ଚିରକାଳ ଥିଲା, ରହିଚି, ରହିଥିବ। ଦେବୀ ଦୁର୍ଗାଙ୍କ ସୌନ୍ଦର୍ଯ୍ୟ ଦେଖୁ ଦେଖୁ ଅମର ବର ବିଭୂଷିତ ମହିଷାସୁର ପାଇଲା ପରଲୋକଗତି। ବରିନେଲା ନିଧନ ଆପଣାର।

ସୌନ୍ଦର୍ଯ୍ୟ ନାରୀର ସବୁଠାରୁ ବଡ ଅସ୍ତ୍ର। ପ୍ରୟୋଗ କରି ସେ ବିଜୟିନୀ ହୋଇଛି ପୁରୁଷ ଉପରେ ଯୁଗେ ଯୁଗେ। ପୁରୁଷର ଦୁର୍ବଳ ନାରୀର ଆମନ୍ତ୍ରଣ ଆଗରେ ପୁରୁଷ ନିଜକୁ ଉଜେଇଁ ଦେଇଛି। ଉତ୍ସର୍ଗ କରିଦେଇଚି। ସଅଁପି ଦେଇଛି ଅକାତରେ। ଅପୂର୍ବ ମୋହମୁଗ୍ଧ ହୋଇ ସେ ନିଃଶେଷିତ ହୋଇଛି ଆକାରଣରେ। ଛଦ୍ମତାର ନାଗଫାଶରୁ ଲଭିଛି ଗରଳର ପରିଣାମ।

ଦେବୀ ଚୌଧୁରୀ ଓହ୍ଲାଇ ଆସିଛି ଆକାଶରୁ ମହନୀୟ ମହକ ନେଇ ଉତଳା ବୟସର କମ୍ରକୋରକ ଛନ୍ଦାୟିତ ପାହଚ ଚଢି। ପାଦତଳେ ଫୁଲପେନ୍ଥା। ଫୁଲପେନ୍ଥାରେ କାଳକୂଟ। ଆଖିପତାରେ ଅଂଜନ। ଘନଘୋର କୃଷ୍ଣବାଦଲ ପରା ଅଂଜନ ତଳେ ତୀକ୍ଷଣ ଛୁରୀକା। ଗଣ୍ଡଦେଶରେ ମମତା ଭରା ଚୁମ୍ବନ। ଚୁମ୍ବନ ତଳେ ଚତୁର ଚିତ୍କାର। ଗରଳ ପ୍ରହାର। ବିଶ୍ୱାସ ଭିତରେ ନର୍କବାସ।

ଛକ ଟୋକାଙ୍କ ଛଇ ଛଡାଇ ଦେବାକୁ ଦେବୀ ପ୍ରସ୍ତୁତ। ଚୁଇଁ କଥା ଯଦି ସତ ହୁଏ; ତେବେ ତାକୁ କିଛି ଗୋଟେ କଠୋର ପନ୍ଥା ଆପଣେଇବାକୁ ହବ। ଡରିଗଲେ ମରିବ। ନଡରିଲେ ମରିବ। ଦୁଇଟି ଯାକ ପକ୍ଷ ତା ପାଇଁ ଅଗ୍ନି ପରୀକ୍ଷା। ଏ ଅଗ୍ନି ପରୀକ୍ଷାକୁ ସେ ଏକାଏକା ମୁକାବିଲା କରିବ। ଜୀବନରେ ସମସ୍ୟାକୁ ସାମ୍ନା କରିବା ହେଉଛି ବୀରତ୍ୱ। ସମସ୍ୟାଠାରୁ ଦୂରେଇ ଯାଇ ସବୁଦିନ ତିଳ ତିଳ ମରିବାଠାରୁ ଗୋଟିଏ ଦିନ ତାର ସଜୋର ସାମ୍ନା କରିବା ଶ୍ରେୟସ୍କର।

ସବୁକଥା ଶୁଣି ସାରିଲା ପରେ ଦେବୀ କଅଁଳେଇ ପଚାରିଲା 'ଆରେ ଚୁଇଁ! ଏତିକି ନାଁ ଆଉ କିଛି ଅଛି ?'

-'ନାଁ ମ୍ୟାଡାମ୍। ସେମାନେ ପ୍ଲାନ୍ କରିଛନ୍ତି ଆପଣଙ୍କୁ କମେଟ୍ ମାରିବେ। କମେଟ୍ ଶୁଣି ଆପଣ କ'ଣ କହିଲେ ତା ପରେ ଯାଇ ଯାହା କରିବା କଥା କରିବେ। କ'ଣ କରିବେ ସେ ଖବର ମୋ ପାଖରେ ନାଇଁ?'

-ତୁ ଚୁଇଁ କ'ଣ ଭାବୁଚୁ?

ସମର୍ପଣର ସାମାନ୍ୟ ଇଙ୍ଗିତରେ ଚୁଇଁ ଛାତିକୁ ଲଙ୍ଗଳ ଦଉଡା ନିଅଣ୍ଟ ହେଲା। ଆପଣା ଶାରୀରିକ କ୍ଷମତାକୁ ଭୁଲି ଚୁଇଁ ବି ବାହ ସ୍କୋଟ ମାରିବା ଆରମ୍ଭ କରିଦେଲା।

ଥା'ନ୍ତୁ ମ୍ୟାଡମ୍, ମୁଁ ବି କମ୍ ନୁହେଁ। ମୋତେ ସାନ ପିଲା ବୋଲି ଭାବୁଛନ୍ତି କି? ବୟସ ହେଲାଣି ପନ୍ଦର। ଦୈବ ଯୋଗକୁ ମୋ ଚେହେରା ଚାରିଫୁଟ ତିନି ଇଞ୍ଚ। ବୋଉ କହୁଥିଲା-ରୋଗ ହେଇଥିଲା ପିଲାଦିନେ। ବିଇଞ୍ଚିରୋଗ। ନହେଲେ ମୁଁ ବି ତାଙ୍କ ପରି ଗୋଟେ କଅଁଳିଆ, ଶବଳିଆ ଭେଣ୍ଡା ଟୋକା ହେଇ ବୁଲୁଥାନ୍ତି ସହରରେ। କେବେବି ମୁଁ ଡରିଯାଇନି। ମୁଁ ରାଗିଲେ କାହାର ନୁହେଁ। ଚୁଲି କାଠଫାଳିଆରେ ଦେବି ଏକାଡେନେ ପାହାରେ। ବୋପାକୁ ମଉସା କହି ରଡିଛାଡୁଥିବେ ଆଲୁ ଆଲୁ। ହାଁରେ-କ'ଣ ବୋଲି ପାଇଲକି ମୋତେ?

ଖୁବ୍ ବଡ ଆଶ୍ୱାସନା ଦେଇ ଚୁଇଁ ବୁଝେଇ ଦେଇଥିଲା ଦେବୀକୁ। ମ୍ୟାଡମ୍, ତମେ ବ୍ୟସ୍ତ ହୁଅନା। ମୁଁ ଅଛି। ଏଇଟି, ଆମ ଛୁଆ ବାବୁଙ୍କୁ ସବୁ କଥା କହି ଦେଉଛି। ତମେ ଖାଲି ଟିକିଏ ହସିକେରି କହିଦବ ତାଙ୍କୁ। ଏକାଏକା ଜାବଡାକେ ଗାଲ ନାଲି କରିଦେବେ। ତାଙ୍କ ବାବାତ ଏକେ ଧରମଛଡା। କାହାରିକି ମାନିବେ ନାହିଁ। ଆଉ ଏ ମେଞ୍ଚେଡା ଟୋକା। ଏତେ ବହପ ତାଙ୍କର? କହୁଛନ୍ତି କ'ଣନା-'ଇଲେଇତି କରିବେ ଆମ ଦେବୀ ମ୍ୟାଡମଙ୍କୁ ବିଚ୍ ବଜାର ଉପରେ??'

ଦେବୀ ହସୁଥାଏ ନିଜ ଭିତରେ ଆନନ୍ଦରେ। ସେ ବୁଝି ପାରିଲାଣି ଯେ ପ୍ରୟୋଗ କରିଥିବା ଔଷଧ ତାର ଠିକ୍ କାଟୁ କରିଛି।

ମିତ୍ରତା ସୂତ୍ରରେ ଯେଉଁ ସମସ୍ୟାର ସମାଧାନ ଯେତେ ସହଜ ଓ ସୁବିଧାଜନକ; ବିରୋଧ କରି ତାହାକୁ ବଢାଇ ଦେବା ସେତିକି ସହଜ।

ଦେବୀ ଭାବୁଛି। ଅନ୍ଧ ଯୁବପୀଢି ପାଇଁ ସ୍ଥାପନ କରିବ କିଛି ଗୋଟେ କୀର୍ତ୍ତିମାନ ଛକ, ବଜାର ଓ ବାଟଘାଟରେ ବୁଲୁଥିବା ବେକାର ଟୋକାଙ୍କୁ ଶିଖାଇ ଦେବ ଗୋଟେ ବୁଦ୍ଧି। ଅନ୍ଧପୁଟୁଳି ବନ୍ଧା ହୋଇଥିବା ଆଖିକୁ ଖୋଲି ଦେବ। ସମୟର ତାଗିଦାରେ ବଢୁଥିବା ସମସ୍ୟା, ଋଣଭାର, ରାଷ୍ଟ୍ରୀୟ ତଥା ପ୍ରାଦେଶିକ ମେରୁଦଣ୍ଡକୁ ଯେତେବେଳେ କରିଦେବାକୁ ବସିଛି ଅବନତ, ସେତେବେଳେ ପ୍ରଚଣ୍ଡ ମାର୍ତ୍ତଣ୍ଡ ତୁଲ୍ୟ ଯୁବକ ଯୁବତୀ ମାତିଛନ୍ତି ନିଷ୍ଫଳ ଦେହଜ କାମନାରେ ମାଲାଙ୍ଗ ପରି ଜାତିର ରକ୍ତ ଶୋଷି ଖାଉଛନ୍ତି ଦିନରାତି। ଜାତିକୁ ଖାଇ ତାର ସୁନ୍ଦର ଚେହେରାକୁ ଦାନ୍ତରେ କାମୁଡି କରିସାରିଲେଣି

ଜଦାକାର। ନିଜ ଭଉଣୀକୁ ଚଢାଇ ସାରିଲେଣି ଯୌନ ପିପାସାର ଯଜ୍ଞ ବେଦୀରେ। ଏମାନଙ୍କୁ ଗୋଟେ କିଛି ଶିଖାଇବାକୁ ପଡିବ।

ଆରେ ଚୁଇଁ, ଶୁଣ! ସେମାନଙ୍କ ସହ ପ୍ରତିବାଦ କରି ଆମେ କିଛି କରିବା ନାହିଁ। ଜଣ ଜଣ କରି ଡାକିଆଣିବା, ତାପରେ ଆରମ୍ଭ କରିବା ଆମର ଅସଲ କାର୍ଯ୍ୟକଳାପ। ଦଳ ଭାଙ୍ଗିଯିବ। ଶକ୍ତି ଉଡିଯିବ। ସହଯୋଗ ଖସିଯିବ। ତାପରେ ଯାହାବି କଲେ ସେ ମାନିବାକୁ ବାଧ୍ୟ ହେବେ।

ମହିଷାସୁରର ଅତିଶୟ ଅତ୍ୟାଚାର ତାର ନିଧନ ପାଇଁ କାରଣ ହୋଇଥିଲା। ଶିଶୁ କୃଷ୍ଣ ଭିତରର ଅସୀମ ଶକ୍ତି ଓ କ୍ଷମତା ଧରାଶୟୀ କରିଦେଲା ପ୍ରବଳ ପ୍ରତାପୀ କଂସାସୁରକୁ।

ହଠାତ୍ ଉତ୍‌ଫୁଲ୍ଲ ହୋଇ ଚିତ୍କାରି ଉଠିଲା ଚୁଇଁ। ଦେବୀ ତାକୁ ଭଲ ପାଉନଥିଲେ ଏତେ ଆତ୍ମୀୟଓ ଅନ୍ତରଙ୍ଗ କଥା କହିଥାନ୍ତା କାହିଁକି। ଦେବୀ ଯେ ମନକିଣିଲା ଭଳି ଗେହ୍ଲେଇ କଥା କହିନାହିଁ; ଏକଥା ନୁହେଁ।

ମିଠା ମିଠା ତୋନି ତୋନି ଭାଷାରେ ପଥର ବି ତରଳି ମହମ ପାଲଟିଯିବ। କଥାରେ ଅଛି-ନାରୀ ଚାହିଁଲେ ଆକାଶର ଗ୍ରହ ନକ୍ଷତ୍ର ଚନ୍ଦ୍ର ସୂର୍ଯ୍ୟଙ୍କୁ ଟହଲେଇ ଦବ। ଧରଣୀକୁ ଖସାଇ ଆଣିବ। ହସ ହସ ମୁହଁର ସବୁଠି ବିଜୟ। ଗୋରା ମୁହଁର ସବୁଠି ଆଦର।

ଚୁଇଁ  କଥା ହେଇ ଯାଇଚି ହୋଟେଲ ମାଲିକ ସିଙ୍ଘାଣିଆ ବାବୁଙ୍କ ପୁଅ ଛୁଆବାବୁଙ୍କ ସହିତ। ଦୋକାନକୁ ଲାଗି ସଜା ହେଇଥିବା ବୈଠକ ଖାନାକୁ ଭଲ ଭାବରେ ଝଡାଝଡି କରି ଦେଇଛି ଚୁଇଁ। ଗୋଟେ ଛୋଟ ଖଟ। ତକିଆ ବିଛଣା ଓ ସାନ ଗଦିଟିଏ ପଡିଚି ତା ଉପରେ। ଘର ସାରା ଲଗା ହେଇଚି ଫିଲ୍ମ ହିରୋଇନମାନଙ୍କର ଆକସନ ଫଟୋ। ଛୋଟ ଗୋଟେ ସିଲିଂ ଫ୍ୟାନ ବୁଲୁଚି ଘାଇଁ ଘାଇଁ। ଛୁଆବାବୁ ଖରାବେଳେ ସେଠି ବିଶ୍ରାମ ନିଅନ୍ତି। ଦୋକାନର ହିସାବ କରନ୍ତି ବସି। ଚୁଇଁ ରାତିରେ ଶୁଏ ସେଇଠି- ତଳେ। ବାସ୍ନା ଛିଞ୍ଚି ଘରଟାକୁ ମହମହ କରିଦେଇଚି ଚୁଇଁ। ନିଜ ଟଙ୍କାରୁ ଆଣିଚି ସେଣ୍ଟ୍ । ସଜଫୁଲମାଳରେ ସଜେଇଚି ଶଙ୍କରଙ୍କୁ। ସବୁକାମ ଠିକ୍‌ଠାକ୍ ହେଇସାରିଛି। ଖାଲି ଅପେକ୍ଷା କେତେବେଳେ ଘଟିବ ଘଟଣା।

ଉନ୍ମାଦ ମଣିଷକୁ ନିଃଶେଷ କରିଦିଏ। ଅନ୍ଧ ଆବେଗ ମଣିଷର ଶକ୍ତିକ୍ଷରଣ କରିପକାଏ। ତା ଦୃଷ୍ଟି ଶକ୍ତିକୁ କାଢିନିଏ। ନିଶାଗ୍ରସ୍ତ ମଣିଷର ହିତାହିତ ଜ୍ଞାନ ହଜିଗଲା ପରି ସେ ଶିକାର ହୁଏ ହୀନ୍ ମାନସିକତାର। ଟଳମଳ ପାଦ ପକାଇ ସେ କଚଡା ଖାଏ ବାଟସାରା। କାଦୁଅ ପଙ୍କରେ ଲଟ୍ ପଟ ଚେହେରା ଖୋରାକ୍ ଯୋଗାଏ ଦେଖଣାହାରୀଙ୍କୁ ହସିବାର। କାହାରି ଟିକେବି ଦୟା ଜାତ ହୁଏ ନାହିଁ ବାଟରେ ଶୋଇଥିବା ନିଶାଖୋର ମଣିଷ ପାଇଁ। ମାଛି ଭଣଭଣ ମୁଦ୍ରାରେ ସେ ମରିଯିବାର ସ୍ୱପ୍ନ

ଦେଖୁଥାଏ। ସଚଳ, ସଜାଗ ପୃଥିବୀ ଚାଲିଥାଏ ତା ବାଟରେ ଆପଣା ଛାଏଁ କାହାକୁ ଅପେକ୍ଷା ନକରି।

ଟିମ୍ ଲିଡର ପିଣ୍ଟୁବାବୁ ଖାନ୍‌ଦାନ ଘର ପିଲା। ଥାର୍ଡ ଡିଭିଜନରେ ବି.ଏ. ପାଶ୍ କରି ଖଟିକରନ୍ତି ଏଇ ଛକରେ। ଛକଠୁଁ ଟିକିଏ ଦୂର ଲେନ୍‌ର ଶଙ୍ଖଉପରେ ବସି। ଗୋଟେ ଯୋଡେ ଘଟଣାରେ ଡକା ହେଇ ଯାଇଛନ୍ତି ପାଖ ଥାନାକୁ। ସେଥର ତାଙ୍କ ଲେନ୍‌ରେ ରହୁଥିବା ଜଣେ ଶିକ୍ଷୟିତ୍ରୀଙ୍କୁ ବାଜେକଥା କହି ଯାଇଥିଲେ ପୋଲିସ ଷ୍ଟେସନ। ଦେବୀ ଦଶହରା, ଗଣେଶ ପୂଜା, ସରସ୍ୱତୀ ପୂଜା, କ୍ରିକେଟ ଖେଳ, ଅଷ୍ଟପ୍ରହର ନାମଯଜ୍ଞ, ମନ୍ଦିରର ବାର୍ଷିକ ଉତ୍ସବ ଆଦି ଆୟୋଜନରେ ମୁଖ୍ୟ ଭୂମିକା ନେଇ ଦୋକାନୀମାନଙ୍କ ଠାରୁ ଆଦାୟ କରନ୍ତି ଚାନ୍ଦା ମୋଟା ଅଙ୍କରେ। ଯିଏ ନଦେଲା ତା ଦୋକାନ ବନ୍ଦ। ଲେନ୍‌ରେ କାମ କରୁଥିବା କଣ୍ଟ୍ରାକ୍ଟରମାନଙ୍କ ପକେଟରୁ କେମିତି ଝାଡିବାକୁ ହୁଏ ବଡ ବଡ ଲମ୍ୱାନୋଟ୍-ତା କାଇଦା ତାଙ୍କୁ ଜଣା। କେଇଟା ଟୋକା ଖାଇପିଇ ରହିଛନ୍ତି ପାଖରେ ଛାଇପରି। ଚାକିରୀ ବାକିରି କିଛିନାହିଁ। ସବୁତକ ବି.ଏ.ପାଶ୍ ବି.ଏ.ଫେଲ। ଥାର୍ଡ ଡିଭିଜନ। ବେକାର ବଡ ବଡ ଘର ଛୁଆ।

ପିଣ୍ଟୁ ବାବୁଙ୍କ ବାପା ସେକ୍ରେଟାରିଏଟ୍‌ରେ ଜଣେ ବଡ ଅଫିସର। ଏଇ ଗଲାବର୍ଷ ଚନ୍ଦକା ଜଙ୍ଗଲରୁ ହରିଣ ଶିକାର କରି ଧରାପଡିଥିଲେ। ଦି'ବର୍ଷ ତଳେ ଯାଇଥିଲେ କୋଣାର୍କ। ବୁଲୁଥିଲେ ସମୁଦ୍ର କୂଳରେ। ସେଠୁ ଯାଇ ବୁଲିଲେ ଜଙ୍ଗଲ ଭିତରେ। ପାଖ ଜଙ୍ଗଲରେ ଗଲେ ପଡେ କେଇଟା ଗାଁ। ନିର୍ଜନ ପୋଖରୀରେ ଗାଧୋଉଥିଲେ ଗାଁ ଝିଏ। ପିଣ୍ଟୁ ଆଉ ତା ସାଙ୍ଗମାନେ ଜଗିରହିଥିଲେ ଝିଅମାନଙ୍କୁ। ସବୁତକ ଝିଅ ଗାଁକୁ ଫେରି ଯାଉଥିଲା ବେଳେ ଦି'ଜଣ ରହିଥିଲେ ପଛକୁ। ବାଘମାନେ ହରିଣକୁ ଶିକାର କଲାପରି ଝପଟି ପଡିଥିଲେ ସାତଜଣ ଦି'ଟା ଝିଅଉପରେ। ହୋ ହଲର ଶୁଣି ଗାଁ ଲୋକ ଧାଇଁ ଆସି ଗାଡି ଜବତ କଲେ। ପୋଲିସରେ ଦେଲେ। ବାପାଙ୍କ କରାମତିରେ ଗୋଡହାତ ଧରି ଛାଡ ପାଇ ଫେରିଆସିଲେ ସହରକୁ। କିଛି ବି ଜଣା ପଡିଲା ନାହିଁ କାହାକୁ। ନଈପାଣି ନଈରେ ଗଲା।

ଚୁଇଁଠୁ ଏଇମିତି ସବୁ ଖବର ଶୁଣିଲା ପରେ ଦେବୀ ଠିକ୍ କରିଛି ପାନେ ଦବ ପିଣ୍ଟୁ ବାବୁକୁ। ସବୁଠୁ ବେଶୀ କଥା କହେ ସେ, ବଡ ପାଟିକରେ। ହାତଠାରି ଡାକେ। ଆଖି ନଚେଇ ଆଖିମାରେ। ଦାନ୍ତ ଦେଖେଇ ହସେ ଓ ଖଡେଇ ହୁଏ। ପଟେଇବାକୁ ଚେଷ୍ଟାକରେ। ଦେବୀ ଶୁଣିଚି ଝିଅମାନଙ୍କୁ ଭୟଭୀତ କରାଇ ଆପଣା ଜାଲରେ ଫସେଇବାରେ ସେ ଓସ୍ତାଦ। ନିରୀହ ସରଳ ଦୁର୍ବଳା ଝିଅମାନଙ୍କର ସର୍ବସ୍ୱ ଲୁଟି ସେମାନଙ୍କୁ ଝଡାଫୁଲ ପରି ଫୋପାଡିଦିଏ ବାହାରକୁ। ଏଇ ଛକରେ କୋଉଠି ଗୋଟେ ଘର ଭଡା ନେଇ ରଖିଛି ସିଏ। କେତେଥର କେତେ ଯେ କାନ୍ଦଣା ଶୁଣାଗଲାଣି ସେ ଘରୁ କେହି ତାର ହିସାବ ରଖିନି। ବଡ ଅଫିସର ପୁଅ ବୋଲି ଲେନ୍‌ରେ ରହୁଥିବା ତଳିଆ କର୍ମଚାରୀମାନେ ସାହାସ କରିପାରୁ ନାହାନ୍ତି ତା ଉପରକୁ ଆଙ୍ଗୁଠି ଉଠେଇ।

ନିର୍ଭୟ ଡନ ପରି ବଢେଇ ଚାଲିଛି ସେ ତାର ସାମ୍ରାଜ୍ୟ । ତା ଲେନରୁ ଆର ଲେନ । ସହରର ଗୋଟିଏ ଭାଗରୁ ଅନ୍ୟ ଭାଗ ।

ପିଣ୍ଟୁବାବୁଙ୍କ ବାପାଙ୍କ ଦପ୍ତରରେ କାମ କରୁଥିବା ସେକ୍‌ସନ ଅଫିସର ଚୌଧୁରୀ ବାବୁଙ୍କ ମଝିଆ ଝିଅ ଦେବୀ ଚୌଧୁରୀ । ନିର୍ଭୀକା ଓ ସ୍ପଷ୍ଟବାଦିନୀ । ସାହସ ଓ ଦୃଢତାର ସେ ଗୋଟେ ପାହାଡ । କଥା, କମେଣ୍ଟ କ'ଣ, ଦି ପାହାର ବାଡେଇଲେ ବି ତାକୁ କେହି ଦୁର୍ବଳ କରିଦେବା ଏତେ ସହଜ ନୁହେଁ । ଯେତିକି ସୁନ୍ଦର, ସେତିକି କଠୋର ।

ଏ ସହରକୁ ଆସିବା ଦିନଠୁ ପିଣ୍ଟୁର ସେ ହେଇସାରିଛି ସବୁଠୁ ବଡ ଟାର୍ଗେଟ । ପିଣ୍ଟୁର ଚାଲିଚଳଣି ଓ ଆଚରଣରେ ଅତିଷ୍ଠ ହେଇ ଦେବୀ ବି ଟାର୍ଗେଟ କରିସାରିଛି ପିଣ୍ଟୁକୁ । ସେ ଜାଣିଚି ଆଇନ ଅଛି । ପୋଲିସ ଅଛି । ତାକୁ ପ୍ରୟୋଗ କରାଯାଇପାରନ୍ତା । ହେଲେ ତାକୁ ପ୍ରୟୋଗ କରିବ କିଏ ? ଆଇନ ଯେତେପର୍ଯ୍ୟନ୍ତ ପ୍ରୟୋଗ ହୋଇନାହିଁ, ତାହାକୁ ଆଇନ କହିବା ନାହିଁ । କହିବା ବହିପୃଷ୍ଠାର ଶୃଙ୍ଖଳା ନିଷ୍ପ୍ରାଣ ଅକ୍ଷର । ଯାହାର କୁ ନାହିଁ, ଯିଏ ଶବପରି ପଡିରହିଛି ମୁଖସ୍ତ ମନ୍ତ୍ର ହେଇ । ତାକୁ ଆମେ କାନୁନ୍ କହିବା କେମିତି ? ଆଜିକାଲି ଆଇନର ଦ୍ୱାରସ୍ଥ ହେବା ଅର୍ଥ  ଆଇନଜୀବୀର ପକେଟ ପୂରେଇବା । ନିଷ୍ପତ୍ତିକୁ ଚାହିଁଚାହିଁ ଦିନଗଣିବା, ନପାଇବା ।

ଦେବୀ ଠିକ୍ କରିଚି ଆଇନକୁ ହାତକୁ ନବ । ମୃତ୍ୟୁ ମୁଖରେ ପଡିଥିବା ଯେକୌଣସି ଜୀବ ଯେପରି ବଂଚିବାର ସମସ୍ତ କୌଶଳ ଅବଲମ୍ବନ କରିଥାଏ । ବଂଚିବା ବା ନିଜକୁ ବଂଚାଇବା ବାଟରେ ତୁରନ୍ତ ନିଷ୍ପତ୍ତିକୁ ଛାଡିଦେଲେ ଅତ୍ୟାଚାର କାୟାବିସ୍ତାର କରିଚାଲିବ ଓ ପ୍ରତିଦିନ, ପ୍ରତ୍ୟହ ମୃତ୍ୟୁ ଯାଚି ଦଉଥିବ ।

ପୂର୍ବ ଯୋଜନା ମୁତାବକ ଚୁଇଁ କହିଦେଇଚି ପିଣ୍ଟୁ ବାବୁକୁ 'ହଇହେ ପିଣ୍ଟୁବାବୁ । କି ମନ୍ତ୍ର ମାରିଲ କେଜାଣି । ଚିଡିଆ ଏକା ମାଡରେ ସାବାଡ । ଏବେ ଯେମିତି କହିବ ସେମିତି ରାବିବ । ତମେ ଇଛା କଲେ ସେ ତମ ହାତରେ, କାନ୍ଧରେ, ଛାତିରେ ଉଡି  ଆସି ବସିବ । ଆମକୁ ଟିକେ ଶିଖେଇ ଦିଅନା ।

ପିଣ୍ଟୁ ଛାତି ଫୁଲି ଉଠିଲା- 'ଆବେ ଶଳା ଚୁଇଁ । ତୁବି ସ୍ୱପ୍ନ ଦେଖିଲୁଣି ଏ ଲାଲ ଚିଡିଆର । ତୁ ଜାଣିଥା ଯୋଉଟା ପିଣ୍ଟୁ ବାବୁର ମାଲ୍ ତା' ଉପରେ କାହାରି ଅଧିକାର ନାହିଁ । ସେ ଖାଇ ସାରିଲା ପରେ ତା' ଅଇଁଠା ଯିଏ ଖାଇବ ।

ଚୁଇଁ ତେଲେଇ କହିଲା-ହଉପଛେ ଅଇଁଠା, ଟିକେ ଆମ ଆଡେ ପଡୁ । ଆମେ ତ ସାରେ ଅଇଁଠା ଫଇଁଠା ଖିଆ ଲୋକ । ଜୀବନରେ କେବେ ସେ ସୌଭାଗ୍ୟ ମିଳିବ କି ନାହିଁ ଜାଣେନା । ତମ ନାଆଁରେ ଟିକେ ଇନ୍ଦ୍ରପୁରୀ ଦେଖିଆସନ୍ତେ ।

'ହଉ ଏତେ ଡ୍ୟାସ ହନା । ମୋତେ ଆଣି ଡିଆସିଲିଟା ଦେ । ହଁ ତମ ଲାଲପରୀ କ'ଣ ଖବର ପଠେଇଲେ ?

କହୁଚି ସାରେ। ଡିଆସିଲିଟା ଏଇଠି କୋଉଠି ଥିଲା। ହେଇ ନିଅ। ମ୍ୟାଡାମ କହିଲେ-ତାଙ୍କର ଏ ସହରରେ କେହି ନାହାନ୍ତି। ତମେ ତାଙ୍କର ଭାଇ ପରିକା। ଆଉ ଟୋକାଙ୍କ କଥା ତମେ ସାରେ ବୁଝିବ। ସେ ତମକୁ ଭଲ ପାଆନ୍ତି। ଆଉଗୁରା କିଏ ? ଆଜି ସଂଜକୁ ତମ ପାଇଁ ସେ ଅପେକ୍ଷା କରିଥିବେ ଆମ ଏଇ ହୋଟେଲରେ। ଛୁଆବାବୁ ପଳେଇ ଥିବେ ଘରକୁ। ତମେ ଏକୁଟିଆ ଆସିଲେ କ'ଣ କଥା ହେବେ। ହଁ, ଫେଣେ କହିଛନ୍ତି-ଆସିଲାବେଳେ କାହାକୁ ସାଙ୍ଗରେ ଆଣିବନାହିଁ କି କହିବ ନାହିଁ। ତମର ତାଙ୍କର ଭାବ ଅଛି ବୋଲି କେହିବି ଜାଣିବେନି ଯେମିତି। ଆମ ଛୁଆ ବାବୁଙ୍କ ଅଫିସ ଘରେ ତମର ତାଙ୍କର କଥାହବ। ହେଇଟି ମୋ ପାଉଣା ?

ହସି ହସି ପିଣ୍ଟୁବାବୁ ଦଶଟଙ୍କି ନୋଟଟି ତା ହାତକୁ ଫିଙ୍ଗିଦେଇ ଆତ୍ମତୃପ୍ତିରେ ନିଶ୍ୱାସଟା ଛାଡିଦେଲା ଦ୍ରବୀଭୂତ ମୁଦ୍ରାରେ। ଦେବୀ ଦୁର୍ଗାଙ୍କ ହସ ହସ ଚେହେରାରୁ ଝରିପଡୁଥିବା ଆହ୍ଲାଦର ରସ ପିଇ ଯେମିତି ମିଳେଇ ଯାଇଥିଲା ମହିଷା।

ସେଦିନ ସନ୍ଧ୍ୟାରେ ପିଣ୍ଟୁବାବୁର ବେଶ ଯିଏ ଦେଖିଛି ସିଏ ସନ୍ଦେହ କରିଛି। ହାତରେ କଡା ନାହିଁ । ବେକରେ ମୋଟା ରୁଦ୍ରାକ୍ଷ ମାଳୀ ନାହିଁ ଅବଶ୍ୟ ମୁଣ୍ଡରେ ଚୁଟି ଅଛି, ହେଲେ ସେ ଅଣ୍ଟାକଷ ଜିନ୍ସ ପେଣ୍ଟ ନାହିଁ କି ଢୋଲା ଚିତ୍ରବିଚିତ୍ର ବାନିଅନ ନାହିଁ। ଦାଢି ମଖା ମୁହଁରେ ଚିକ୍କଣ ଚମକ। ସ୍ନୋ କି ପାଉଡରର ବାସ୍ନା। ଜିନ୍ସ ବଦଳରେ ହଳେ ସୁନ୍ଦର ଚୁଡିଦାର୍। ହାତରେ ଗଜରା ମଲ୍ଲିମାଳ। ଜିନ୍ସ ପ୍ୟାଣ୍ଟର ସାଇଡ୍ ପକେଟରୁ କାଢି ଥୋଇ ଆସିଛି ଭୂଜାଲି। ଗୁଳି ଚଳେଇ ପାରୁଥିବା ପିସ୍ତୋଲ। ପିଣ୍ଟୁ ଓରଫ ପିଣ୍ଟୁଦାଦା ପାଲଟିଛି ପିଣ୍ଟୁବାବୁ। ଧୋବାଘର ଜୋଇଁ। ସହରର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି। ପୋଷାକ ଭିତରୁ କିଏ ଯେମିତି କହୁଚି-'ଦୁର୍ଦ୍ଦାନ୍ତ ଗୁଣ୍ଡା ପିଣ୍ଟୁଦାଦା ମରିଗଲା। ତା'ଭିତରୁ ଜନ୍ମ ନେଇଛି ରାଜନେତା ପିଣ୍ଟୁବାବୁ। ଗରିବଙ୍କ ମାଆ ବାପ। ପର ଝିଅବୋହୂଙ୍କ ତ୍ରାଣକର୍ତ୍ତା ପିଣ୍ଟୁଭାଇ।

ବହୁକଷ୍ଟରେ ପୋଷାକ ବଦଳେଇଚି ପିଣ୍ଟୁ। ଦେବୀର ଗୋଟେ ସାଧାରଣ ଅନୁରୋଧରେ ପିଣ୍ଟୁ ଭିତରେ ଓଲଟପାଲଟ ହୋଇ ଯାଇଛି ଆକାଶ ପାତାଳ। ବଦଳିଯାଇଥିଲେ ସଂସାରର ମଙ୍ଗଳ, ନବଦଳିଲେ ତା' ନିଜର ଅମଙ୍ଗଳ। କ୍ଷତି।

ସନ୍ଧ୍ୟା ପ୍ରାୟ ସାଢେ ପାଞ୍ଚ। ଅପେକ୍ଷାରତା ଦେବୀ ଉତ୍କଣ୍ଠିତା ମୁଦ୍ରାରେ। ତାକୁ ସାହାଯ୍ୟ କରିବ ଚୁଡ଼ିଁ। ଆଜି ଯାହା ହେବାର କଥା ହେଇ ଯିବ। ଅଣ୍ଟାରେ ଲୁଚେଇ ରଖିଛି ଗୋଟେ ନୂଆ ଟୋପାଜ୍ ବ୍ଲେଡ୍। ପିଣ୍ଟୁକୁ ଆଜିଠାରୁ ସାରାଜୀବନ ପାଇଁ ନପୁଂସକ କରିଦେବାର ଦୃଢ ନିଷ୍ପତ୍ତି ନେଇଛି ମନରେ। ନିଜକୁ କଳୁଷିତ, ଅପବିତ୍ର ଓ ପଦଦଳିତ କରି ସେ ରକ୍ଷା କରିବ ସମଗ୍ର ନାରୀଜାତିର ଇଜ୍ଜତ। ତା ଦୁର୍ବଳତାର

ସୁଯୋଗ ନେଇ ତା ପ୍ରତି ଦୁରାଚ୍ଚର ଘୋଷଣା କରୁଥିବା ମଣିଷକୁ ସେ ଦବ ସମୁଚିତ ଶାସ୍ତି ନିଜହାତରେ। ଯଦି ଚଣ୍ଡାଶୋକ ବଦଳି ପାଲଟିଯାଏ ଧର୍ମାଶୋକରେ ତେବେ ଦେବୀ ନିଜକୁ ସଅଁପି ଦେବ କାରୁବାକୀ ବେଶରେ ତା' ପାଦତଳେ। ଭକ୍ତି ଭାବନାରେ ସବୁଦିନ ପାଇଁ ଅତ୍ୟାଚ୍ଚର ନିପୀଡନ ଶେଷହେବ ଏ ଧରାବକ୍ଷରୁ।

ପ୍ରତିବାଦୀ ଯୁବକ ପ୍ରାଣରେ ପ୍ରେରଣା ହୋଇ ଯେଉଁଦିନ ଯୁବତୀ ତାର ଚିବୁକସ୍ପର୍ଶ କରିବ, ସେଦିନ ଦେଶରେ ଝରିବ ଘିଅ ଆଉ ମହୁ। ମାଟି ସୁନା ହୋଇଯିବ। ପବନ ବାସ୍ନା ପାଲଟିଯିବ। ବୁଝାପଡୁନାହିଁ ଯେଉଁ ପିଣ୍ଟୁଦାଦା ହୋଇ ସାରିଥିଲା ଆତଙ୍କର ଗୋଟେ କଳାବାଦଲ ସେ ଆଜି ବର୍ଷଣ ମୁଖର ହେଇଗଲା କେମିତି ? ସର୍ବସ୍ୱ ଲୁଟି ପାରୁଥିବା ଦୁର୍ଦ୍ଦାନ୍ତ ଅପରାଧୀ, ସର୍ବସ୍ୱ ସଅଁପି ଦେଲା ଗୋଟାଏ ସାମାନ୍ୟ ଝିଅର ପାଦତଳେ ?

ଯେଉଁ ଇତିହାସ ରହସ୍ୟ ହୋଇ ରହିଗଲା ଦେବୀ ଆଉ ପିଣ୍ଟୁ ପ୍ରତିସ୍ପର୍ଦ୍ଧା ଓ ଚ୍ୟାଲେଞ୍ଜ୍ ଭିତରେ। ତାହା ଚିରକାଳ ମଙ୍ଗଳଗୀତି ଗାନ କରୁଥିବ। ମଙ୍ଗଳ ସାହାନାଇରେ ପରିତୃପ୍ତ କରିଦେଉଥିବ ଆକାଶ ଓ ମାଟି। ଘୃଣା, ନିନ୍ଦା, ଅପବାଦ ଓ ଅଭିଶାପର ଶଳାକା ବଦଳି ହେଇଯାଉଥିବ ଆଶାର କିରଣ। ହତାଶା, ବ୍ୟର୍ଥତା ଓ ଅସାମର୍ଥ୍ୟ ବିଦାୟ ନେଉଥିବ ମଂଚ ଉପରୁ। ଶୁଭୁଥିବ ଜୀବନ ସଂଗୀତ।

ପିଣ୍ଟୁର ଏକାଜିଦ୍ ସେ ବାହାହବ ଦେବୀ ଚୌଧୁରୀକୁ। ହେଉ ପଛେ ସେ ଜଣେ ଅଧସ୍ତନର ଝିଅ। କେଉଁଠି ଲେଖା ହୋଇଚି ଦେବୀ ତା ପାଇଁ ଅଧସ୍ତନ ? ତେଣିକି ବାପା  ମାନିଲେ କେତେ ନମାନିଲେ କେତେ ? ଏ ତା ଜୀବନ ପାଇଁ ନିଷ୍ପତ୍ତି। କାହାରି ଅଯଥା ହସ୍ତକ୍ଷେପକୁ ସେ କେବେବି ବରଦାସ୍ତ କରିବ ନାହିଁ।

ପିଣ୍ଟୁ ବୋଉ ଅନେକ ବୁଝେଇଲା ପରେ ବି ବାପପୁଅ ଯୋଝା ଜିଦ୍‌ରେ ଅଟଳ। ଯେଉଁଟା ବାପାଙ୍କ ପାଇଁ ଆତ୍ମସମ୍ମାନର କଥା ସେଟା ସେ ସହଜରେ ଗ୍ରହଣ କରି ନେବେ କିପରି ? ତାଙ୍କ ସ୍ତରର-ସାଙ୍ଗସାଥୀଙ୍କୁ ଧରି ସେ କ'ଣ ଦ୍ୱାରସ୍ଥ ହୋଇ ପାରିବେ ଜଣେ କିରାଣୀ ପାଖରେ ?

ତମେ ମାଳତୀ (ପିଣ୍ଟୁବୋଉ) ନିଜକୁ ବୁଝି ପାରୁନ କେମିତି ? ପିଣ୍ଟୁବି କହିଦେଇଛି-ହଁ ବୋଉ। ମୋ କଥା ଯଦି ନରହିଲା ମୁଁ  ବି ଘର ଛାଡିଦେବି। ମୋ ମୁଣ୍ଡ ଉପରେ ପାହାଡ ଛିଣ୍ଡିପଡୁନା କାହିଁକି-ଦେବୀ ଏଘରର ବୋହୂ ହେଇ ଆସିବ ହିଁ ଆସିବ।

ବିଚରା ଚୁଇଁ ମୁଣ୍ଡରେ ହାତଦେଇ ପଚାରୁ ଥିଲା ଶୂନ୍ୟକୁ, ଆରେ ଚୁଇଁ ତୋର କ'ଣ ହବ କହିଲୁ ?? କ'ଣ ପାଇଁ ଏତେ କାଣ୍ଡ ଭିଆଇଲୁ ??

ବେଞ୍ଚ ଉପରୁ ଦିଶୁଥିଲା-ବସ୍‌ଚକାରେ ଲମ୍ବି ଯାଉଚି ରାସ୍ତା ତା ଆଖିଆଗରେ।



## ବିଷକନ୍ୟା

ନାଁ ତାର ଶ୍ରଦ୍ଧା । ସଂଜ୍ଞା ତା'ର ସୁମନ । ଭଲନାଁ- ଶ୍ରଦ୍ଧାସୁମନ । ଶ୍ରଦ୍ଧାରେ ସଂପର୍କୀୟମାନେ ଡାକନ୍ତି ସୁମନ । ସୁମନ ଅର୍ଥ ଫୁଲ, ଫୁଲକୁ ସଭିଏଁ ଭଲପାଆନ୍ତି । କୀଟପତଙ୍ଗରୁ ପ୍ରାଣୀ ସକଳ ସୁମନ ସମସ୍ତଙ୍କର ପ୍ରିୟ । ଅତି ଆପଣାର । ଅନ୍ତରଙ୍ଗ । ଆତ୍ମୀୟ ।

ବର୍ଷା ପରି ସେ ଛମ୍‌ଛମ୍ ଯେମିତି ପାଦର ପାଉଁଜି, ତରଳ ଯେମିତି ଆଖିକଣର ଲୁଣିଆ ଲୁହ । ଢ଼ଳ ଢ଼ଳ ସରସୀର ଜଳ । ଦର୍ପଣର ମୁହଁପରି ସେମିତି ସରଳ । କଥା ତାର ମିଠା, ପ୍ରେମର କବିତା, ହସ ତାର ଧଡିଧାଡି ମୁକ୍ତା । ଆତ୍ମହରା ଉସୁକତା ଜହ୍ନପରି ଆକର୍ଷଣର ଉତ୍ସ ତା ମୁହଁରେ, ଜ୍ୟୋସ୍ନାପରି ଉଜ୍ଜ୍ୱଳ ତା ଚେହେରା । ସ୍ରୋତସ୍ୱିନୀ ନଦୀର ଭଉଁର, ଟାଣିନିଏ ପାତାଳକୁ ଜୀବଜନ୍ତୁ କୁଟାକାଠି ଦେଖଣାହାରି । ଦୃଷ୍ଟିଟଣା ଗଣ୍ଡ । ଘନକୃଷ୍ଣ କୁଟୀଳ କବରୀ ସତେକି ମାୟାପୁରୀ । ଝୁଲିଲେ ମଲ୍ଲୀମାଳ ଗଜରା ଭୁଲାଇଦିଏ ଜରା । ଫେରାଇ ଆଣେ ଯୌବନ ଅସରା ।

ସଭିଏଁ ଶ୍ରଦ୍ଧାକରନ୍ତି ସୁମନପରି । ସେ ବି ଶ୍ରଦ୍ଧା ଦିଏ ସଭିଙ୍କୁ ସୁମନପରି । ଫୁଲରେ ବାସ୍ନା ଏତେ ଯେ ଯେତେକ ମହୁମାଛି ଓ ପ୍ରଜାପତି ଆସି ଉଡ଼ନ୍ତି ତା' ଚାରିକଡ଼େ, ଫୁଲଟା ଏତେ ସୁନ୍ଦର ଯେ ଯେତେକ ଗ୍ରାହାକ, ମାଳି, ମହାପାତ୍ର, ରଜାପ୍ରଜା, ରୋଗୀ, ଭୋଗୀ, ଯୋଗୀ ସଭିଏଁ ଅନାଇ ରହନ୍ତି 'ସାଲାର୍‌ଜଙ୍ଗ ମିଉଜିୟମ୍‌ର ଇଟାଲୀ ସୁନ୍ଦରୀ ଓଢ଼ଣାପକା ରିବେକାକୁ ଚାହିଁ ଯେମିତି ଥକ୍‌କା ହୋଇଯାଏ ଦର୍ଶକ । ଆଖି ତାର ଛୁରୀ, କାଟି ଟିକ୍‌ଟିକ୍ କରି ଦିଏ କଳିଜା ଦେଖଣାହାରିର । ପଲକ ତାର ଐନ୍ଦ୍ରଜାଲିକର କାଉଁରୀ କାଠି । ଭିଆଇ ଦିଏ ଯାଦୁ ସ୍ପର୍ଶ ମାତ୍ରେଇ । ଯେଉଁ ମୁଦ୍ରାରେ ଚାଲେ କି ଠିଆ ହୁଏ, ତାକୁ ଷ୍ଟାଚ୍ୟୁକରି ଦେଲେ ସହରର ଚୌମଥାନରେ ପଥିକର ମନ ପୂରିଉଠିବ ଅକ୍ଳେଶରେ । ଏକ ପରିପୂର୍ଣ୍ଣ ପୃଥିବୀର ସେ ଏକ କଳପନା । ଏକ କୃତାର୍ଥ ଅଭିଯାନର ସେ ଏକ ସନ୍ତୁଷ୍ଟ କାମନା ।

ବାପା ସଦାନନ୍ଦ ସୁମନ, ବୋଉନାଁ ପ୍ରୀତିଲଗ୍ନା ସୁମନ । ଡ଼ାକନା ପ୍ରୀତି । ଥିଲା ପ୍ରୀତିଲଗ୍ନା ସେହେଗଲ୍ । ବିବାହ ପରଠୁ ବାପାଙ୍କ ଇଚ୍ଛାରେ ଆଫିଡେଭିଟ୍ କରି ହେଲା

ପ୍ରୀତିଲଗ୍ନା ସୁମନ । ବାପା ଦିନେ ହସିହସି କହୁଥିଲେ - 'ମୁଁ ଜାତି ପ୍ରଥାରେ ବିଶ୍ୱାସ କରେନା । ତା'ର ସଂକୁଚିତ, କୁତ୍ସିତ ସଂଜ୍ଞାକୁ ମୁଁ ଘୃଣା କରେ । ସ୍ୱାମୀ, ଶର୍ମା ସେହଗଲ, ସେନ୍ , ସେନଗୁପ୍ତ ଆଦି ମଣିଷ ଭିତରେ ଫାଟ ସୃଷ୍ଟି କରିବାପାଇଁ, ମଣିଷ ଭିତରେ ପାଚେରୀ ପକାଇବା ପାଇଁ, ଗୋଟିଏ ରକ୍ତରେ ଗାରକାଟି ଅଲଗା କରିଦେବା ପାଇଁ, ଗୋଟିଏ ଗୋଟିଏ ଅନାବଶ୍ୟକ କାରଣ । ଯୋଉଠୁ ଆରମ୍ଭହୁଏ ମଣିଷପଣିଆର ହତ୍ୟା । ମଣିଷ ଗୋଟିଏ । ତା ଜାତି ଗୋଟିଏ । ବାସ୍ । ସେତିକି ଆଉ କିଛି ନାହିଁ । ହାତୀ ଘୋଡ଼ା ଛେଳି ତା' ସାଙ୍ଗେ ସମାନ ହୋଇପାରିବେ ନାହିଁ । ବୁଦ୍ଧିମାନ ଶିମ୍ପାଜୀ, ସବୁଠୁ ଉଚ୍ଚା ଜିରାଫ୍ ତା ତୁଲ ନୁହଁ । ସେ ପାହାଡ଼ ସମୁଦ୍ରଳ ନଈ ଓ ଆକାଶଠୁଁ ବଡ଼ । ସେ କାଳବକ୍ଷରେ କାଳୋତୀର୍ଣ୍ଣ । ସେ, ଜୀବ ମଧ୍ୟରେ ଜୀବ ଶ୍ରେଷ୍ଠ । ସାଥୀ ସେ, ସାରଥୀ ସେ ସ୍ୱାକ୍ଷର ସେ, ସନ୍ତାନ ସେ ଅମୃତର । ନାହିଁ ମୃତ୍ୟୁ ଯାହାର ।

ମୁଁ ଫୁଲର ସୁଗନ୍ଧ ଓ ସୌନ୍ଦର୍ଯ୍ୟପରି । ମୁଁ ପତ୍ରର ସବୁଜିମା ପରି । ମୁଁ ସୂର୍ଯ୍ୟର ତେଜପରି । ଚନ୍ଦ୍ରର ଶୀତଳତା ପରି । ମୁଁ ସନାତନ । ମୁଁ ଚିରନ୍ତନ । ଏଥିରେ ଭେଦ କାହିଁ ? ବିଭେଦ କାହିଁ ? ନାମ ଓ ସଂଜ୍ଞା ମଣିଷର ପରିଚୟ ନୁହେଁ । କର୍ମ ଓ ପ୍ରଜ୍ଞା ତା'ର ପରିଚୟ । ଯେତକ ନାମ ସେ ଏକ ଏକ ସଂକେତ । ଗୋଟିଏ ମଣିଷରୁ ଗୋଟିଏ ପର୍ଯ୍ୟନ୍ତ ଦୂରତ୍ୱ । ଗୋଟିଏ ସୃଷ୍ଟିରୁ ଆଉ ଗୋଟିଏ ସୃଷ୍ଟି ପର୍ଯ୍ୟନ୍ତ ପଥ ।

ମାଆ କହୁଥିଲା - 'ସେ ଥିଲେ । ପ୍ରତିସ୍ପର୍ଦ୍ଧାର ଜୀବନ୍ତ ପ୍ରତିଭୂ । କଥାରେ କାମରେ ରୋକ୍‌ଠୋକ୍ । ହଁ ତ ହଁ ନାହିଁ ତ ନାହିଁ । ଡରଭୟ ତାଙ୍କ ଦୁଆର ପଶୁନଥିଲା ଧର୍ମ, ନ୍ୟାୟ ଓ ଅଧିକାର ପାଇଁ ସେ ଲଢ଼ି ଶିଖିଥିଲେ ଜୀବନରେ । ବ୍ରତ କରିଥିଲେ ଜୀବନସାରା । ତା'ର ପରିଣାମ ହେଲା ରୋଡ୍ ଆକ୍‌ସିଡେଣ୍ଟ । ସେ ଦିନ ମୁଁ କହୁଚି ଛାର୍ କେଇଟା ଟଙ୍କା ଚାନ୍ଦା ଦେଇ ଦେଇଥିଲେ ଆମର ଯାଇଥାନ୍ତା । ଟଙ୍କା ଦି' ହଜାର କଥା । ପକେଟ୍‌ମାର ହୋଇଗଲା କି ବାଟରେ ଖସିପଡ଼ିଲା । ତା ପାଇଁ ଏ ଡନ୍‌ମାଫିଆ ଟୋକାଙ୍କ ସାଙ୍ଗରେ ଯୁକ୍ତିକରିବାର ଆମର କଅଣ ଦର୍କାର ଥିଲା ? ଆନ୍ୟାୟ ଅଧର୍ମକୁ ନୀରବରେ ସମର୍ଥନ କରୁଥିବା ନପୁଂସକ ସମାଜରେ ତମେ ପାଟି କଲେ ତମ ପାଟି ଶୁଣିବ କିଏ ? ସଙ୍ଗୀନ୍‌ମୁନରେ ତମ ପାଟି ବନ୍ଦ କରିଦିଆଯିବ । ତମେ କେଇଜଣଙ୍କର କ୍ରୋଧର ଶୀକାର ହବ । କେଇଜଣଙ୍କ ଆକ୍ରୋଶରେ ପଡ଼ିବ । ତମ ଉପରେ ହୃଦୟହୀନ ଜୁଲମ୍ ହେଉଥିବ । ଲୋକେ ଦେଖୁଥିବେ ଅଥଚ ଲାଙ୍ଗୁଡ଼ ଜାକି ବାଟ ଭାଙ୍ଗି ଚାଲି ଯାଉଥିବେ । ମିଳିତ ପ୍ରତିବାଦ ନ କରି । ପଛପଟେ ତମର ଦୋଷ ଦୁର୍ବଳତା, ଦୁର୍ଗୁଣ ଚର୍ଚ୍ଚା କରୁଥଇବେ । ଭୟ ଆଉ ଭକ୍ତିରେ ମାଫିଆମାନଙ୍କ କାର୍ଯ୍ୟକଳାପ ନିନ୍ଦା ନ କରି ନୀରବ ରହୁଥିବେ । ଦେଖି ନ ଦେଖିବାର ଆତ୍ମପ୍ରସାଦ ଲଭୁଥିବେ । ସେହି ସ୍ଥଳରେ ଆଖିକୁ ଚଷମା ଘୋଡ଼ାଇ କାଚଗୁଳି ସଜାଇ ସାରା ଦୁନିଆଁର ଦୃଶ୍ୟକୁ ଲୁଚି ନଉଥିବେ ।

ସହରସାରା ସମସ୍ତେ ଜାଣିଥିଲେ ରୋଡ଼ ଉପରେ ସଦାନନ୍ଦ ସୁମନକୁ କିଏ ଟ୍ରକ୍ ମଡ଼ାଇଲା ? କାହା ନିର୍ଦ୍ଦେଶରେ ଟ୍ରକ୍ ମଡ଼ାଇଗଲା । କୋଉ ସମୟରେ ଏବଂ କୋଉଠି ମଡ଼ାଗଲା ?

ସମାଜରେ ଥିବା ଗରିବ ଗୁରୁବାଙ୍କୁ ଆତଙ୍କିତ କରିବାପାଇଁ କ୍ଷମତାସୀନ, ଧନୀ ପୁଞ୍ଜିପତିମାନେ ସଂତ୍ରାସ ସୃଷ୍ଟି କରନ୍ତି । ସଂତ୍ରାସ ସେମାନଙ୍କ ଲାଳିତ, ପାଳିତ ମାନସ ସନ୍ତାନ । ପ୍ରିୟ ଓ ପ୍ରାଣର ଆପଣାର । ସଂତ୍ରାସ ନାଆଁରେ ନିର୍ଜନ ଓ ନିସ୍ତବ୍ଧ ଇଲାକାରୁ ଲୁଟନ୍ତି ଜୀବନ । ଆବଶିଷ୍ଟ ସମାଜ ଆଖିରେ ଧୂଳି ଦେଇ ସଂତ୍ରାସର ଜୋରଦାର୍ ମୁକାବିଲା ପାଇଁ ଆହ୍ୱାନ କରନ୍ତି ସଭାମଂଚରେ । ଦିନରେ ଜନତାଙ୍କ ସାମ୍ନାରେ । ରାତିରେ ମନ୍ତ୍ରଣା କରନ୍ତି,ଏକାଠି ବସି ସେଇ ଚୋର ତସ୍କର ଅପରାଧୀ ଯୌନପିପାସୁ ସୈତାନମାନଙ୍କ ସହିତ । ଚତୁରା ଚତୁରେ କୋଳାକୋଳି ହୋଇ ଫିଙ୍ଗି ଦିଅନ୍ତି ଗୋଟିଏ ପ୍ରସଙ୍ଗ ଗୋଟିଏ ଇସୁ, ଗୋଟିଏ ଦୁର୍ଘଟଣା ସମାଜ ମଧ୍ୟକୁ । ଚଣ୍ଡୀ ହୋଇ ଲାଗନ୍ତି ଓ ଗୁଣିଆ ହୋଇ ଝାଡ଼ିବାର ଯତ୍ନ କରନ୍ତି । ଇସୁକୁ ଗୋଡ଼ାଇ ଗୋଡ଼ାଇ ସମାଜ ତା ପିଛାକରି, ଧରିନେଲା ବେଳକୁ ବଦଳାଇ ଦିଅନ୍ତି ବାଟ ପ୍ରସଙ୍ଗର । ରୂପ ଦେଇ ଦିଅନ୍ତି ସେଇ ପ୍ରସଙ୍ଗ ବା ଇସୁକୁ ଆଉ ଏକ ସୁବିଧା ନାଆଁରେ । ଠକି ହୋଇଯାଆନ୍ତି ପଛେ ପଛେ ଚୋର ଚୋର !! କହି ଦଉଡୁ ଥିବା ଲୋକେ । ଚୋର ନିଜେ ତାଙ୍କ ସାଙ୍ଗେ ଚୋର ! ଚୋର !! କହି ଦଉଡୁଥାଏ । ମଉକା ଦେଖି ଖସିଯାଏ । ଅସଂଗଠିତ ସରଳ ବିଶ୍ୱାସୀ, ନିଷ୍କପଟୀ ମଣିଷ ଭୁଲିଯାଏ କଥା ଗତ ଦିନର । ଛଳନା, ପ୍ରତିଜ୍ଞା, ପ୍ରତାରଣା ।

ଠିକ୍‌କଥା କହୁଥିବା ସଦାନନ୍ଦ ବାବୁଙ୍କୁ ଦିନ ଦ୍ୱିପ୍ରହରରେ ବିଟ୍ ରାସ୍ତା ଉପରେ ରଙ୍ଗ୍‌ସାଇଡ୍‌ରେ ଟ୍ରକ୍‌ମଡ଼ାଇ ମାରିଦେଲା ପରେ ତା'ର କାରଣ ଭାବେ ଉଭା ହେଲା ଦୁଇଟା କଥା ।

କେନ୍ଦ୍ର ସେକ୍ରେଟାରିଏଟ୍‌ର ସେ ଥିଲେ ଜଣେ ଉଚ୍ଚପାହ୍ୟା ଅଫିସର । ସଚ୍ଚୋଟ, ନିଷ୍ପାପର, ସତ୍ୟବାଦୀ ଆଉ ନିର୍ଭୀକ ସଚ୍ଚିବ । ଦିଲ୍ଲୀ କ୍ୟାଡ଼ରର ଆଇ.ଏ.ଏସ୍ । କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ଫାଇଲ୍ ଥିଲା ତାଙ୍କ ପାଖରେ । ଥିଲା ଏକ ନୋଟ୍ । ପ୍ରକାଶ ହେଲେ ଗୋଟେ ସରକାର ଚାଲିଯିବ । ଯାହା ଭିତରେ । ସେଇ ନୋଟ୍ ବଦଳାଇ ଆଉଥରେ ସେ ଫାଇଲ୍ ପ୍ରପୋଜ୍ କରିବାପାଇଁ ଚାପ ପଡ଼ିଥିଲା ତାଙ୍କ ଉପରେ ଅନେକ । ଅନମନୀୟ ସଦାନନ୍ଦ ନିଜ ନିଷ୍ପତ୍ତି ଉପରେ ଅଟଳ ରହି ପଳାଇ ଆସିଲେ ଓଡ଼ିଶା । ଛୁଟି ନେଇ । ସ୍ୱାସ୍ଥ୍ୟଗତ କାରଣ ଦର୍ଶାଇ । ସେଇ ହେଲା ତାଙ୍କ ମୃତ୍ୟୁର କାରଣ । ମାତ୍ର ଏକଥାକୁ ଠିକଣା ସମୟରେ ଯୋଜନାବଦ୍ଧ ଭାବରେ ସମାପନ କରାଯାଇଥିବାରୁ ରୋଡ଼ ଆକ୍ସିଡ଼େଣ୍ଟରେ ଅପରାଧ ବୋଳା ହୋଲା ମାଫିଆ ଉପରେ । ମାଫିଆବି ତାକୁ ହସିହସି ସ୍ୱୀକାର କରିନେଲା । ସଦାନନ୍ଦକୁ ଜଣାଥିଲା ସବୁ ଗୁମର । ବଂଚି ରହିଥିଲେ ସେ ଗୋଟେ ବିପଦ ହୋଇ ଝୁଲିଥାନ୍ତା ମୁଣ୍ଡ ଉପରେ । କାଳଗଲା

ମୁଁ ଭାବୁଚି, ଚାନ୍ଦାମାଗିବା, ପୁଣି ଦୁଇହଜାର ଶହେଟଙ୍କା, ଥିଲା ସେଇ ଫାଇଲ୍ ଘଟଣାର ଗୋଟାଏ ଅଂଶ । କେହି ମୁଣ୍ଡ ଖେଳାଇ ନାହାନ୍ତି ବର୍ଷେକାଳ ।

ବୋଉ କଲିକତାରୁ ଫେରିଆସି କ୍ରୋଧୀ ନାଗୁଣୀପରି ଫଣଫଣ ହୋଇ ନୀରବରେ ସଭିଙ୍କୁ ଚାହିଁ ଭାବିଲା । ବ୍ୟାଙ୍କ୍ ଚାକିରୀରୁ ଛୁଟି ନେଇ ଆସିବସିଲା ଓଡ଼ିଶାରେ । ତା 'ନୀରବତାରେ ଅପରାଧୀମାନେ ମ୍ରିୟମାଣ ହୋଇଉଠିଲେ । ସେ କିଛିଗୋଟେ ଖୋଜୁଥିଲା ଯାହାର ସୂରାକ୍ ସେମାନେ ପାଇଯାଇଥିଲେ । ଆକ୍ରମଣ କଲେ ତାକୁ ତିନିଥର । ଭାଗ୍ୟବଳରେ ବର୍ତ୍ତିଗଲା । ସେ ସେଇ ତିନିଥରଯାକ, କେତେଟା ଶାରୀରିକ କ୍ଷତ ସହି ନେଲା ଦାନ୍ତଚିପି ।

ସେଦିନ ଥାଏ ରବିବାର । ଛୁଟିଦିନ, ଦୋକାନ ବଜାର ଗହଗହା କଲିକତାରୁ ଆସି ବୋଉ ମୁଁ ଯାଇଥାଉ ସପିଙ୍ଗ୍ ପାଇଁ । ସଂଜ ନଇଁ ଆସିଲାଣି । ସହରର ଉଜ୍ଜ୍ୱଳ ଆଲୋକରେ ସବୁକିଛି ଦୃଶ୍ୟମାନ ହେଉଥାଏ ଦିନପରି । ହଠାତ୍ ଲାଇଟ୍ ଅଫ୍ ହେଲା । ଘରିଆଡ଼ ଅନ୍ଧାର । ଆମପାଖ ଦେଇ ଚାଲି ଚାଲି ଯାଉଥିବା ଛଅଟା ଭେଣ୍ଡା ଯୁଆନ୍ ଗୁଣ୍ଡା ଲୋକ ଝଂପି ପଡ଼ିଲେ ବୋଉ ଉପରେ । ଟେକି ନେଲେ କିଛି ଦୂର । ଭୟ ଆଉ ଆତଙ୍କରେ ନିଜକୁ ବଂଚାଇ ମୁଁ ପଶିଗଲି ଗୋଟେ କ୍ୟାବିନ୍‌ତଳେ ମୋତେ ଅବଶ୍ୟ ଖୋଜିଲେ ଏପଟେ ସେପଟେ ଧାଇଁଧାଇଁ ସମୋନେ । ଭାଗ୍ୟବଳରୁ ବଞ୍ଚିଗଲି ସେଦିନ ବୟସ ମୋର ଥିଲା ସାତ୍ କି ଆଠ୍ । ପଢୁଥିଲି ଷ୍ଟାଣ୍ଡାର୍ଡ ଥ୍ରୀରେ । ବୋଉ ପ୍ରାଣବିକଳରେ ଚିତ୍କାର କରୁଥିଲା ଦୋକାନିଗୁଡା ଧଡ୍‌ଧାଡ୍ ଦୋକାନ ପକାଇ ଧାଇଁଲେ ଯେଝା ଘର । ଜନସାଧାରଣ ଛତ୍ରଭଙ୍ଗ ଦେଲେ । ଛେଳିମେଣ୍ଢରେ ପଶିଗଲେ ବାଘ । ଗାଡିମଟର ଧାଇଁଲେ ରାସ୍ତାରେ ମାତ୍ର କେଇ ମିନିଟ୍‌ରେ ଶୂନ୍‌ଶାନ୍ ହୋଇଗଲା ଜନଗହଳିପୂର୍ଣ୍ଣ ଏତେ ବଡ ବଜାର । ବୋଉ ଚିତ୍କାରୁ ଥିଲା ଶୁଣାଯାଉ ନଥିଲା କାହାକୁ ।

ଆକାଶରେ ହଜିଯାଉଥିଲା ତା'ର କରୁଣ ଆକୁତି । ଆକୁଳ ନିବେଦନ ଆତ୍ମରକ୍ଷାର ଆବେଦନ । ଷ୍ଟ୍ରୀଟ୍‌ର ଲାଇଟ୍ ପରି ବଜାରଟା ଅନ୍ଧ ଓ ଜଡ ପାଲଟି ଯାଇଥିଲା ଆଦିମତାର ଅତ୍ୟାଚାରକୁ ମୁଣ୍ଡପାତି ସହିଯାଉଥିଲା ପ୍ରକୃତି ନୀରବରେ । ନାରୀ ପ୍ରତି ଏତେବଡ ନିର୍ଯ୍ୟତନା କେମିତି ସହିପାରୁଥିଲା ଧରିତ୍ରୀ । ଉପାୟ ନଥିଲା ଥରେ ଜଡ ପାଲଟି ଗଲେ ତାକୁ ଶୁଭେ ନାହିଁ କି ଦିଶେ ନାହିଁ କିଛି । ପଥର ହୃଦୟରେ ପିଟିହୋଇ ପ୍ରତିଗିର ଚୂନା ହୋଇଯାଏ ବାରବାର ।

କ୍ୟାବିନ୍ ତଳୁ ମୁଁ ଚାହିଁ ଦେଖୁଥିଲି ଜଣକ ପରେ ଜଣ ହୋଇ ଧର୍ଷଣ କଲେ । ଶେଷ ଜଣକ ବେଳକୁ ତା'ର ସ୍ୱର ନୀରବି ଯାଇଥିଲା । 'ଆରେ ମରିଗଲା' ବୋଲି କହି ଛାଡ଼ିଦେଇ ପଳାଇଲେ । ସେମାନଙ୍କ ଭିତରୁ ଜଣେ ଧାଇଁଆସି ତା' ଲୁଗାକାନିକୁ ତାରି ବେକରେ ଗୁଳାଇ କଷିଲା ଖୁବ୍ ଟାଣ କରି । ଓଟାରି ଓଟାରି ଆଣି ଫିଙ୍ଗିଦେଲା ମୁଁ ଲୁଚିଥିବା କ୍ୟାବିନ୍ କଡରେ । ହାତରେ ଥିଲା ଗ୍ଲୋବ୍ ସମସ୍ତଙ୍କର ଦେହରେଥିଲା କଳା ପୋଷାକ ।

ଚାରିଆଡ କୋକୁଅ ଭୟ ଓ ଶୂନ୍‌ଶାନ୍ । ନିଜକୁ ବଞ୍ଚାଇବାକୁ ଯାଇ ମୁଁ ଦେଖନି ବୋଉକୁ । ଶୁକୁଶୁକୁ ହଉଥିଲା କି ମାରିସାରିଥିଲା ଲାଇଟ୍ ଜଳିଗଲା ପୋଲିସ୍ ସାଇରେନ୍ ବଜାଇ ପହଞ୍ଚିଗଲା ଶବ ପାଖରେ ସେତେବେଳକୁ ମୁଁ ବାହାରି ଧାଉଁଥିଲି ଅମଡ଼ା ଲେନ୍‌ରୁ ଲେନ୍ ପୁଲିସ୍ ମୋ ପିଛା କଲା ପାଇଲା ନାହିଁ । ଫେରିଗଲା ଅଧାବାଟରୁ । ମୁଁ ଲୁଚିସାରିଥିଲି ଗୋଟିଏ କ୍ୱାଟରର ଗୁହାଳ ଭିତରେ । ମୋତେ ଲାଗିଲା ଏ ପୁଲିସ୍‌ବାଲା ଗୁଣ୍ଡାଗୁଡାଙ୍କର ଚାମଚା ସାଙ୍ଗ । ମୋତେ ଧରିନେଇ ସଅଁପି ଦେବେ ସେମାନଙ୍କ ହାତରେ । କିଛି ବିଚିତ୍ର ନୁହେଁ । । ସେଇଦିନ ପରଠୁଁ ମୋତେ ଦେଖିନାହିଁ ମୋ ସହର ଆଜିଯାଏ । ମୁଁ ପଳାଇ ଆସିଲି କଲିକତା ଏକା ଏକା ଗୋଟିଏ ଟ୍ରେନ୍‌ରେ । ବିନା ଟିକେଟ୍‌ରେ । କଲିକତାରେ ଆମେ ଥିଲୁ । ବୋଉ ଥିଲା ଜଣେ ଅଫିସର । ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କରେ । ଭାଇ ଥିଲା, ପଢୁଥିଲା ପ୍ରେସିଡେନ୍‌ସି କଲେଜରେ । ମୋଠୁ ଥିଲା ନଅଦଶ ବର୍ଷ ବଡ଼ । ମୁଁ ପଢୁଥିଲି ସେଣ୍ଟମେରୀ ଇଂଲିସ୍ ସ୍କୁଲରେ । ଶୁଣିଲି ବୋଉର ଶବ ପଡ଼ିରହିଲା ସେଦିନ ରାତିଯାଏ । ପୁଲିସ୍ ଗୋଟିଏ ମାମଲା ରୁଜୁ କଲା । କହିଲା ଲାସ୍‌ଟା ବେଓ୍ୱାରିସ୍ । ମ୍ୟୁନିସିପାଲିଟି ଦାହକଲା ନେଇ ପୁଲିସ୍ ଆଦେଶରେ । ଆଜିବି ବୁଲୁଛନ୍ତି ସେଇ ଅପରାଧୀ ସେମିତି । ଘଟାଇ ଚାଲିଛନ୍ତି ଅପରାଧ ଗୋଟିଏ ପରେ ଗୋଟିଏ ନିର୍ଭୟରେ ।

ନିମ୍ନ ମଧ୍ୟବିତ୍ତ ମଣିଷର ବିପର୍ଯ୍ୟୟ ପାଇଁ କିଏ ଦାୟୀ ? କେଉଁମାନଙ୍କ ସ୍ୱାର୍ଥ ରକ୍ଷାପାଇଁ ଏଇ ଶ୍ରେଣୀର ଲୋକଗୁଡ଼ା ପୋକମାଛି ପରି ଜୀବନ ବଂଚନ୍ତି । ଅକାଳରେ ନଳାନର୍ଦ୍ଦମାରେ ଟଳିପଡନ୍ତି । ଦାହ ହେବା ପାଇଁ ଯାହାଙ୍କ ଭାଗ୍ୟରେ ମୁଖାଗ୍ନି ଟିକେ ସମ୍ଭବ ହୁଏନା ମୃତ୍ୟୁପରେ । ବଂଚିବାଯାକେ ମୃତ୍ୟୁ ସହିତ ଲଢ଼ିଲଢ଼ି ନିଅଣ୍ଟ ପଡେ ଯେ ମୃତ୍ୟୁପରେ ବି ଯୁଝିବାକୁ ହୁଏ ସମସ୍ୟା ସହିତ ।

ମୋର ବୋଲି କେହି ନାହାନ୍ତି, ଏ ସଂସାରରେ । ନିଜର ବୋଲି ଅଛି କିଛି ବାପାଙ୍କର ବ୍ୟାଙ୍କ ବାଲାନ୍‌ସ । ତା' ପୁଣି ଥିଲା ମୋ ବାହାଘର ପାଇଁ । ସେଇ ନିକ୍ଷତିରୁ ଓହରି ସାରିଛି ଆଜକୁ ପାଞ୍ଚବର୍ଷ ତଳୁ । ଘଟଣାର କୋଡ଼ିଏ ବର୍ଷ ପରେ ବି ଯାହା ମୋତେ ସବୁଠୁ ଅଧିକ ମର୍ମାହତ କଲା ସେ ଥିଲା ମୋ ଭାଇର ଅକାଳ ମୃତ୍ୟୁ ।

ଭାଇ ମୋର କାଲିଫର୍ଣ୍ଣିଆରେ ହ୍ୟୁମାନ୍ ରାଇଟ୍‌ସରେ ମାଷ୍ଟର ଡିଗ୍ରୀ କରି ଆସି ଜଏନ୍ କଲା ଦିଲ୍ଲୀ ୟୁନିଭରସିଟିରେ । ଗତ ବର୍ଷ ବମ୍‌ବ୍ଲାଷ୍ଟରେ ତା'ର ସ୍ୱର୍ଗାବାସ ହେଲା ଗୋଟିଏ ମାର୍କେଟ ଭିତରେ । ମାର୍କେଟିଂ କରୁଥିଲାବେଳେ । ମୁଁ ଯାଇ ଶବ ଖୋଜିଲି ମିଳିଲା କେଇଖଣ୍ଡ ଦେହର ଟୁକୁଡ଼ା । ମୁଁ ଆତ୍ମସତ୍ତା ହରାଇ ବସିଲି । କାନ୍ଦିଲି ବହୁତ । ନିଜକୁ ନିଜେ ଚୁପ୍ କଲି । ବୁଝାଇଲି । ଦମ୍ଭ ଧରିଲି । ଜୀବନର ବାଟଭାଙ୍ଗି ଦେଲି । ଦେଖିଲି ମୋର ପରିପୂର୍ଣ୍ଣ, ପ୍ରାଚୁର୍ଯ୍ୟପୂର୍ଣ୍ଣ ଜୀବନ ହେବାକୁ ଲାଗିଲା ନିଃସହାୟ ନିରାସକ୍ତ ନିର୍ବିକାର ଓ କଠୋର । ଅଗ୍ନିମୟ ହୋଇଗଲା ମୋର ସମଗ୍ର ଶରୀର । ଭିତରେ ଭିତରେ ମୁଁ ଜଳିବାକୁ ଲାଗିଲି ହୁତ୍ ହୁତ୍ ।

ଘନୀଭୁତ ବର୍ଷା କେବେ ଘରକରି ରହିପାରେନା ଶୂନ୍ୟରେ । ଖସିପଡେ ମାଟିକୁ । ଟାଣ ମାଟିକୁ ଛେଚି ନରମକରି ବହିଯାଏ ସମୁଦ୍ର ଆଡ଼କୁ । ସାଥୀରେ ବୋହି ନେଇଯାଏ କୁଟା, କାଠି, ପତ୍ର, ଓ ମହାମେରୁ ଦ୍ରୁମ । ସାମ୍ନାରେ ପଡ଼ିଲେ ତାଡ଼ି ଫିଙ୍ଗିଦିଏ ନବତଳ ପ୍ରାସାଦ । ଅନ୍ୟାୟକୁ ବରଦାସ୍ତ ନକରି ପବନବି ବଦାଳାଇ ଦିଏ ନିଷ୍ପତ୍ତି ନିଜର । ଧରେ ଉଗ୍ରରୂପ । ବତାସ କିମ୍ବା ମହାଭାତ୍ୟାର । ଅଗ୍ନି ଯୋଗାଏ ଆଲୋକ ଓ ଶକ୍ତି । ଆବଶ୍ୟକ ହେଲେ ପୋଡ଼ି ପାଉଁଶ କରିଦିଏ ସୁରମ୍ୟ ହର୍ମ୍ୟ । ସାରାଟା ସହର । ଯୁଗ ଯୁଗର ମାଟି ଧରେ ଆପଣା ବକ୍ଷରେ ମଣିଷ, ପଶୁପକ୍ଷୀ, ଓ ଜୀବଜଗତ ଯୋଗାଇ ଦିଏ ଫଳ ଫୁଲ ଓ ସୁନାର ଫସଲ । ରୁଷ୍ଟ ହେଲେ ଭାଙ୍ଗିଦିଏ ନନ୍ଦନବନ ଓ ଧସେଇ ପକାଏ ସୁନ୍ଦର ସକାଳ, ସଭ୍ୟତା ସକଳ ।

ବ୍ରିଲିଆଣ୍ଟ ଶ୍ରଦ୍ଧା । ଇଛା କରିଥିଲେ ଆପଣେଇ ପାରିଥାନ୍ତା ଯେକୌଣସି ବୃତ୍ତି । ସଫ୍‌ଟୱେୟାର ଓ ମ୍ୟାନେଜ୍‌ମେଣ୍ଟ କଳାପରେ ତା' ପାଇଁକି ନିଯୁକ୍ତିର ଅଭାବ ନଥିଲା । ଗୋଟି ଗୋଟି କରି ସବୁ ହରାଇ ବସିଲା ପରେ ସେ ମାନି ନେଇଥିଲା ବଂଚିବା ପାଇଁ ଏକ ଛଳନା । ବୃତ୍ତି ସେହି ଛଳନାର ସାମାନ୍ୟ ଗୋଟେ ଅଂଶ । ଲକ୍ଷ୍ୟସ୍ଥଳ ବା ଗୋଲରେ ପହଞ୍ଚିବାର ଉତ୍ତମ ମାର୍ଗ । ମାଧ୍ୟମ, ନୂଆ ବାଟ ତିଆରି କରିବାର ଚରମ ଯୋଜନା । ସମସ୍ୟାର ସମାଧାନ ଖୋଜିପାଇବ । ଆବିଷ୍କାର । ଉପାୟ ଆବିଷ୍କାର ।

ଉଦ୍‌ଭିନ୍ନ ଯୌବନା ଷୋଡ଼ଶୀ ଶ୍ରଦ୍ଧା ଏବେ ବଜାରର ଏକ ପଣ୍ୟଦ୍ରବ୍ୟ । କଲିକତା ହାଇକୋର୍ଟରେ ଆଫିଡେଭିଟ୍ କରି ବଦାଳାଇ ଦେଇଛି ନାଁ ଶ୍ରଦ୍ଧା ସୁମନରୁ ସୁକନ୍ୟା ଆନନ୍ଦ । ଇଣ୍ଡିଆନ୍ , ୟୁରୋପିୟାନ୍ , ବ୍ରିଟୀଶ ଆଉ ଟ୍ରାନ୍‌ସ୍ ସାଇବେରିଆନ୍ ଆଦି ଏୟାର୍ ଲାଇନ୍‌ସରେ ତା'ର ବହୁତ ଖାତିର । କାଟ୍‌ତି, ଚାହିଦା, ବହୁ ନାଁ ।

ଏୟାର ହୋଷ୍ଟେସ୍ ବୃତ୍ତି ମଧ୍ୟକୁ ପଶିବା ଦିନଠୁ ଭାରତୀୟ ବିମାନ ଚଳାଚଳ ମନ୍ତ୍ରଣାଳୟରେ ଖେଳିଯାଇଛି ଆନନ୍ଦର ଲହର । ସୁକନ୍ୟାର ସୁଗନ୍ଧରେ ଆକାଶ - ମାଟି ହୋଇଯାଇଛି ମଧୁମୟ ଯେତେଯେତେ ଗୁରୁତ୍ୱପୂର୍ଣ୍ଣ ଦୀର୍ଘ ଉଡ଼ାଣ । ଭିଭିଆଇପି, ଭିଆଇପି ଉଡ଼ାଣ- ସେଥିରେ ସୁକନ୍ୟାର ଭୂମିକା ଢ଼େର ବେଶୀ । ତାକୁ ଜଣେଇ ଦିଆଯାଏ କେଉଁଦିନ କେଉଁ ବିମାନରେ ଯାତ୍ରା କାହାର ? ଯିବ କୋଉଠୁ କୋଉଠି ? ଏୟାର ହୋଷ୍ଟେସ୍ ସୁକନ୍ୟା ଦେଶର ଏକ ସ୍ୱନାମଧନ୍ୟ ନାମ । ଖୋଲିଚି ଗୋଟେ ଏୟାର ହୋଷ୍ଟେସ୍ ଟ୍ରେନିଂ ସେଣ୍ଟର । ପ୍ରଥମେ ଥିଲା କଲିକତାରେ । ତା'ପରେ ବମ୍ବେ, ମାଡ୍ରାସ, ଦିଲ୍ଲୀ , ବାଙ୍ଗାଲୋର, ହାଇଦ୍ରାବଦ୍ , ଓ ଭୁବନେଶ୍ୱର । କ୍ରମେ ବଢ଼ି ବଢ଼ି ତାହା ପ୍ରତ୍ୟେକ ପ୍ରଦେଶ ଓ କେନ୍ଦ୍ରଶାସିତ ଅଂଚଳର ରାଜଧାନୀକୁ ବଢ଼ିଯାଇଛି । କେବଳ ସଭ୍ୟ , ଶିକ୍ଷିତା , ସୁନ୍ଦରୀ , ଓ ଅସହାୟତାର ଶିକାର ହୋଇଥିବା କନ୍ୟାମାନଙ୍କୁ ଦେଶରୁ ଖୋଜି ଆଣି ଦଉଚି ଟ୍ରେନିଂ ସୁକନ୍ୟା । ଟ୍ରେନିଂ ସହିତ ଚାଲିଛି ଗୁପ୍ତ ମଧୁଶାଳା । ଏଇ ମଧୁଶାଳାରେ ଅନେକ ଆୟ । ଅନେକ ବ୍ୟୟବି । ଏହାକୁ

ପ୍ରକୃତରେ ମଧୁଶାଳା ନ କହି କୁହାଯାଇପାରେ 'ହୋଟେଲ୍ ଶିକ୍ଷ' ତାରକା ହୋଟେଲ୍ ଶିକ୍ଷ । ପଞ୍ଚ ତାରକା ତିନି ତାରକା ଇତ୍ୟାଦି । ଅତିପ୍ରାଚୁର୍ଯ୍ୟପୂର୍ଣ୍ଣ କନଫରେନସ୍ ହଲରେ ଟ୍ରେନିଂ ଚାଲେ ମାସ ମାସ ବର୍ଷ ବର୍ଷ । ଟ୍ରେନିଂ ପରେ କୋଠରୀ ସାମ୍ନାରେ ଜଳୁଥାଏ ନାଲିବତୀ । କହୁଥାଏ - 'ପ୍ରବେଶ ନିଷେଧ' । ଅନ୍ଧାର କୋଠରୀରେ ପ୍ରତିଦିନ ଦେଉଥାନ୍ତି ଆତ୍ମାହୁତି ମଧୁବାଳାମାନେ । ଜୀବନରେ ଅନେକବାର ଆତ୍ମାହୁତି ଦେଲାପରେ ଆଉ ଆବଶ୍ୟକ ହୁଏନା ମରିବାର । ମୃତ୍ୟୁ ହେଇଯାଏ ଏକ ଦେହସୁହା ବ୍ୟାପାର । ଗ୍ରାହକମାନେ ଆସନ୍ତି ଗେଷ୍ଟ ହୋଇ । ବିଶିଷ୍ଟ ଓ ବିଜ୍ଞ ମଣିଷପରି ସେମାନେ ଭାଷଣ ଦିଅନ୍ତି ମଂଚରେ । ହୋଷ୍ଟେସ୍ ଟ୍ରେନିଂରେ କୃତ୍ୟକୃତ୍ୟ ହୋଇଯାଆନ୍ତି ମଧୁବାଳାମାନେ । ଏ ଥାଏ ଗ୍ରାହକ ବାବୁମାନଙ୍କର ସିଲେକ୍‌ସନ୍ ସେସନ୍ । ରୂପସୀମାନଙ୍କ ସହିତ ଏକରକମ ମିଟ୍ ।

ଦେଶର କୋଉ କୋଣରେ କୋଉ ମଧୁଶାଳାକୁ ପସନ୍ଦ କରେ କିଏ । କେତେ ଅଧିକ ଉପସ୍ଥାନ ହୁଏ ତା'ର ସବୁ ଜାଣେ ସୁକନ୍ୟା କଲିକତାରେ ଥାଇ । ନେଟ୍‌ୱାର୍କ ବଳରେ । କୋଉ ମନ୍ତ୍ରୀ କୋଉ ଆଇଏଏସ ଅଫିସର, କୋଉ ଆଇଜି, ଡିଜି, କଣ୍ଟ୍ରାକ୍ଟର, କ୍ୟାପିଟାଲିଷ୍ଟ ସାମ୍ବାଦିକ, ସମାଜସେବୀ, ସନ୍ତ୍ରାସବାଦୀଙ୍କର ସବୁଠୁ ବେଶୀ ପସନ୍ଦ କଅଣ ? ସବୁ ଜାଣେ ସୁକନ୍ୟା । ଗୋଟିଏ ସ୍ଥାନରେ ବସି ସାରଭାରତରେ ବାଘଛେଳି ଏକା ତୁଠରେ ପାଣି ପିଆଏ ।

ଦୀର୍ଘ ପନ୍ଦର ବର୍ଷର ଅଭିଜ୍ଞତାରୁ ସେ ବୁଝିପାରିଚି ଦେଶର ବିପର୍ଯ୍ୟୟର କାରଣମାନ ଜନ୍ମ ନେଉଛି କୋଉଠୁ । କେଉଁମାନେ ଗୋଟାଏ ପ୍ରଶାନ୍ତ ପଟ୍ଟଭୂମିରେ ଖେଳାଇ ଦିଅନ୍ତି ରକ୍ତର ହୋଲି । ଜଳାଇ ଦିଅନ୍ତି ଲେଲିହାନ ଅଗ୍ନିଶିଖା । କାହା ଇଂଗିତରେ ଫୁଟେ ବମ୍, ଆଉ ମରି ଲୋଟିପଡ଼ନ୍ତି ମଧ୍ୟବିତ୍ତ ଲୋକମାନେ । କେଉଁମାନେ ସମାଜର ସୈତାନମାନଙ୍କୁ ପିଞ୍ଜରାରୁ ଖୋଲି ଛାଡ଼ିଦିଅନ୍ତି ଭୋକିଲା ବାଘମାନଙ୍କପରି । ଦାନ୍ତରେ କାମୁଡ଼ି ବିଦାରୀ ଖିନ୍ ଭିନ୍ କରିଦିଅନ୍ତି ସମାଜକୁ ଏଇ ପିଶାଚମାନଙ୍କ ଦ୍ୱାରା

ଛାର ଗୋଟେ ଏୟାର ହୋଷ୍ଟେସ୍ ଡ଼ାକରା ଦେବ- 'ଯୁଦ୍ଧଂ ଦେହି' ଏଡ଼େବଡ଼ ସଶକ୍ତ ସଂଗଠିତ ବାହିନୀ ବରୁଦ୍ଧରେ ?

ପାହାଡ଼କୁ ଟେକା ମାରିଲେ ଚୂନା ହୋଇଯିବ ।

ବୁଦ୍ଧି ଆଉ ଚତୁରତା ନିକଟରେ ସବୁବେଳେ କ୍ଷମତା, ପରାକ୍ରମ ଓ ଶକ୍ତି ହାର ମାନେ ।

ଭାରତ ସାରା ବିଛେଇ ଦେଇଚି ଜାଲ ସୁକନ୍ୟା । ଠିକଣା ସମୟରେ ଆରମ୍ଭ କରିବ 'ଅପରେସନ୍ ଅପରାଧ' ଯାହାର ନାଁ ରହିବ - 'ବିଷବଳୟ' । ସୁକନ୍ୟାମାନେ ତୟାର ଅଛନ୍ତି ଭାରତସାରା । ବର୍ଷକତଳୁ ଚାଲିଛି ପରୀକ୍ଷା ନିରୀକ୍ଷା । ଶତକଡ଼ା ଅନେଶ୍ୱତ ଭାଗ ମିଳିଚି ସଫଳତା । କାଁଭାଁ ଗୋଟେ ଯୋଡ଼େ ଘଟଣା ସ୍ଥାନ ନେଇଚି । ରିପୋର୍ଟରମାନଙ୍କର ନିଜର ହୋଇଥିବାରୁ ଚପିଯାଇଚି ଆପେ ଆପେ ।

କଣ୍ଟାକୁ କଣ୍ଟାରେ କଢ଼ାଯାଏ । ଅପରାଧକୁ ଅପରାଧରେ ହିଁ ନିର୍ମୂଳ କରିହେବ । ଗୋଟିଏ ଛୋଟ ଅପରାଧକୁ ବଡ଼ ଅପରାଧ ଦ୍ୱାରା ଆଉ ଖୁବ୍ ବଡ଼ ଅପରାଧକୁ ଛୋଟ ଛୋଟ ସଂଗଠିତ ଅନେକ ଅପରାଧ ଦ୍ୱାରା ।

ସକାଳ ହେଲା, ହକର ଚିତ୍କାର କରି ଦୁଆରେ ଦୁଆରେ କହି କହିଗଲା - 'ପଢ଼ନ୍ତୁ ! ପଢ଼ନ୍ତୁ !!' ଆଜିର ତାଜା ଖବର -"ଭାରତର ମହାନଗରୀରେ ବିଷ ବର୍ଷା ! ବର୍ଷାମାଡ଼ରେ ସାତଶହ ପଚାଶ ଜଣ ଧରାଶାୟୀ, ସବୁଯାକ ନେତୃସ୍ଥାନୀୟ, ଦେଶ ବିଦେଶର !"

ସକାଳୁ ସକାଳୁ ବିଶ୍ୱକୁ ଚହଲାଇ ଦେଲା ଏ ଖବର । ମରିଛନ୍ତି ଯେତେ ତା'ର ସଠିକ୍ ହିସାବ ମଳିନାହିଁ । ମିଳିଲାବେଳକୁ ଏହି ସଂଖ୍ୟା ଆହୁରି ଅଧିକ ହୋଇପାରେ । ସମସ୍ତଙ୍କ ମୃତ୍ୟୁର କାରଣ 'ବିଷ' ଓ ସବୁ ମୃତ୍ୟୁ ଏକା ଢ଼ଙ୍ଗର । ସମସ୍ତଙ୍କ ଘଟଣାପ୍ରସଙ୍ଗ ମଧ୍ୟ ଏକାପ୍ରକାରର । ଅଧିକାଂଶ ମଦ ପିଇଥିଲେ ମାତ୍ର ମଦରେ ବିଷ ଥିବାର କୌଣସି ପ୍ରମାଣ ମିଳି ନାହିଁ । ଏୟାର ହୋଷ୍ଟେସ୍‌ମାନଙ୍କର ଟ୍ରେନିଂ ସେଣ୍ଟରର ଥିଲା ବାର୍ଷିକ ଉତ୍ସବ । ଅତିଥି ଭାବେ ନିମନ୍ତ୍ରିତ ହୋଇ ଆସିଥିଲେ ଏମାନେ ରାତ୍ରିଯାପନ କରିଥିଲେ । ସମସ୍ତଙ୍କ ଓଠରୁ ମିଳିଥିଲା ପୋଟାସିଅମ୍ ସାଇନାଇଡ଼୍ ର ଅବଶେଷ ଓ କିଛି କସ୍‌ମେଟିକସ୍ । ସଭିଏଁ ଥିଲେ ଉଲଗ୍ନ । ଅନ୍ତର୍ବାସ ଖୋଲା ପଡ଼ିଥିଲା ତଳେ । ପ୍ରତି ମୃତଙ୍କ କୋଠରୀରୁ ମିଳିଛି ଗୋଟେ ଗୋଟେ ଚିଠି - 'ସାବଧାନ ! ଏ ଥିଲା 'ଅପରେସନ୍ ପଏଜନ୍ ' ଅପରାଧୀଙ୍କୁ ଠିକ୍ ଦଣ୍ଡ ଦିଆଯାଇଛି । ଯା ପରେ ଆସୁଛି 'ଅପରେସନ୍ ଟ୍ରିଟ୍‌ମେଣ୍ଟ !' ଲାଞ୍ଚ ମିଛ, ଦୁର୍ନୀତି, ଭେଜାଲରେ ବୁଡ଼ି ରହିଥିବା ଦେଶଦ୍ରୋହୀମାନଙ୍କ ପାଇଁ ।

ଏତେବଡ଼ ସାଜିସର ଅପରାଧ କେହି ମୁଣ୍ଡକୁ ନେଇନହାନ୍ତି । ଚିଠି, ପଟାସିୟମ୍ ସାଇନାଇଡ଼୍ ଓ କସ୍‌ମେଟିକ୍‌ସର ସୂତ୍ରଧରି ପୋଲିସ୍ ପହଞ୍ଚି ପାରିଛି ସୁକନ୍ୟା ଆନନ୍ଦ ନିକଟରେ ।

ପୋଲିସ୍‌କୁ ଜବାବ ଦେଇ ସୁକନ୍ୟା ଯୁକ୍ତି କରୁଥିଲା - ଆମକୁ ଆପଣ ଦୁର୍ବଳବୋଲି ଭାବନ୍ତୁ ନାହିଁ । ବାହ୍ୟସନ୍ତ୍ରାସ ଅପେକ୍ଷା ଏ ଯେଉଁ ଭିତରି ସନ୍ତ୍ରାସ ଚାଲିଛି ତାକୁ ମୂଳପୋଛ କରିବ କିଏ ? ଯେଉଁମାନେ କ୍ଷମତା ଓ ପଇସା ବଳରେ ଖୋଜି ଖୋଜି ଆଣି ସୁନ୍ଦରୀ ଯୁବତୀ ଝିଅଙ୍କର ସର୍ବସ୍ୱ ଲୁଟିନେଉଛନ୍ତି , ତା'ର ପ୍ରତିବାଦ କରିବ କିଏ ? ସେ କ'ଣ ଅପରାଧ ନୁହେଁ । ସେମାନଙ୍କ ପାଇଁ ଶାସ୍ତି କଅଣ ? ନିଜର ପ୍ରାଣରକ୍ଷା କରିବାକୁ ଯାଇ ଯେଉଁ ପ୍ରତିବାଦ ହେଲା, ଅତ୍ୟାଚାରର ମୂଳୋତ୍ପାଟନ ପାଇଁ ଯେଉଁ ଦୁଃସାହାସ ପ୍ରକାଶ ପାଇଲା, ତାକୁ ଆପଣ କହୁଛନ୍ତି ଅପରାଧ ?

ମଶାଟିଏ ବସି ଆପଣଙ୍କ ଦେହରୁ କାହିଁ ଟିକିଏ ରକ୍ତ ଶୋଷିନେଲେ ଆପଣ ହଠାତ୍ ନିର୍ଦ୍ଦୟ ହୋଇ ଗୋଟାଏ ଶକ୍ତ ଚାପୁଡ଼ାରେ ମଶାକୁ ଯମାଳୟ ପଠାଇ ଦେଇ

ଆଶ୍ୱସ୍ତ ହେଉଛନ୍ତି । ଆନନ୍ଦ ବି ପାଉଛନ୍ତି ଅଥଚ ସେଇ ପ୍ରତିବାଦକୁ ଆପଣ କହୁଛନ୍ତି 'କ୍ରାଇମ୍ ।  ଜଙ୍ଗଲରେ ଶୋଇଥିବା ବାଘକୁ ଶିକାର କରିବା ଓ ମଣିଷକୁ ଆକ୍ରମଣ କରୁଥିବା ବାଘକୁ ଗୁଳିକରି ମାରିଦେବା  ଏ ଦୁଇଟି ମଧ୍ୟରୁ କେଉଁଟି ଅପରାଧ ? ନିଶ୍ଚିତ ମୃତ୍ୟୁରୁ ବଂଚିବା ପାଇଁ ଆତ୍ମରକ୍ଷାର ଯେକୌଣସି ଉପାୟ ଅବଲମ୍ବନ କରିବା କ'ଣ ଶ୍ରେୟସ୍କର ନୁହେଁ ?

ସୁକନ୍ୟା ଜୋର ଦେଇ କହୁଥିଲା - 'ଆପଣ ମୋତେ ବାନ୍ଧି ନେବେ ମୁଁ ଜାଣିଛି , ଏହା ଆଦୌ ନୂଆ କଥା ନୁହେଁ । ମୋର ବି ଭୟ ନାହିଁ, ଫାଶୀରେ ଝୁଲିବା ପାଇଁ । କିନ୍ତୁ ମନେ ରଖନ୍ତୁ ସେଇ ଫାଶୀକାଠରୁ ଜନ୍ମ ନେବେ ଯେତେ ସୁକନ୍ୟା ତାଙ୍କ ତପ୍ତ ଓ ଖର ନିଶ୍ୱାସରେ ଏ ଦେଶଦ୍ରୋହୀ, ଦୁର୍ନୀତିଖୋର୍ ଛଦ୍ମବେଶୀମାନଙ୍କର ବିଳାସ କକ୍ଷ ପୋଡ଼ି ପାଉଁଶ ହୋଇଯିବ । ସେଦିନ ବେଶୀ ଦୂର ନୁହେଁ , ଅତି ନିକଟରେ ।

ଦିନ ଆସିବ ଯେଉଁଦିନ ଭାରତବର୍ଷର ପ୍ରତ୍ୟେକ ମାଆ ଓ ଭଉଣୀ ବିଗତ ସ୍ୱାଧୀନତା ସଂଗ୍ରାମରେ ସତ୍ୟ ଓ ନ୍ୟାୟ ପାଇଁ ଝାସ ଦେଇଥିବା ମାଆ ଓ ଭଉଣୀ ମାନଙ୍କ ପରି ପ୍ରମାଣ ଦେବେ, ତ୍ୟାଗ ଓ ଦେଶପ୍ରାଣତାର । ଦେଶ ଆଜି ବିକ୍ରି ହୋଇଚାଲିଛି  ଛଦ୍ମବେଶୀମାନଙ୍କ ହାତରେ । ପୁଣୀ ଗୋଟେ ସ୍ୱତନ୍ତ୍ରତା ସଂଗ୍ରାମର ଡ଼ାକରା ଆସିଛି । ଯେଉଁଦିନ ଭଉଣୀ କରିବ ଭାଇର, ସ୍ତ୍ରୀ କରିବ ସ୍ୱାମିର, କନ୍ୟା କରିବ ପିତାର ଓ ପ୍ରେମିକା କରିବ ପ୍ରେମିକର ବିରୋଧ । ଦେଶଦ୍ରୋହ ଦୁର୍ନୀତି ଅନ୍ୟାୟ ଅତ୍ୟାଚାରପାଇଁ ସେଦିନ ଭାରତ ଆଉ ମାଟିର ଭାରତ ହୋଇ ରହିବ ନାହିଁ , ସୁନାର ଭାରତ ପାଲଟିଯିବ । ସତ୍ୟ ଶାନ୍ତି, ଅହିଂସାର ଦେଶ ପୁଣିଥରେ ପ୍ରମାଣକରି ଦେଖାଇଦେବ ତାର ମହତ୍ୱ ବିଶ୍ୱବକ୍ଷରେ ।

ଆପଣ ଯଦି ଠିକ୍ ମାଆର ଠିକ୍ ପୁଅ ହୋଇଥିବେ ମୋତେ ଆରେଷ୍ଟ କରିବେ । ମୋ' ହାତରେ ହାତକଡ଼ି ପିନ୍ଧାଇବେ । ମୋତେ ଆପଣଙ୍କ ଆଇନ୍ ବଳରେ ଅପରାଧିନୀ  ଘୋଷଣା କରିବେ ।

ସାହସ ଅଛି ତ ?

ଭାବୁଛନ୍ତି କଅଣ ?



## ଦଶହରା ଭେଟି

ନଈ ତା' ବାଟରେ ବହିଚାଲିଗଲା । ମଣିଷର ଯାବତୀୟ ଦୁଃଖ, ଦୁର୍ବିପାକ, ବ୍ୟଥାବେଦନା, ଆନନ୍ଦ - ଅଭିସାର ବହିଗଲା ନଈ ସୁଅରେ । ରାସ୍ତାକଡର ବୁଲାଫକୀର ପାଲଟିଗଲେ କିଛିକାଳ ସଭିଏଁ । ଧାଇଁଲେ ଥାଳ ନେଇ ରିଲିଫକେନ୍ଦ୍ର । ଆଖିର ସ୍ୱପ୍ନ, ମନର ମୋହ, ଦେହର ଦହନ ସବୁ ଲିଭିଗଲା ନିମିଷକରେ ଝଲକାଏ ସୁଅରେ ।

ପ୍ରକୃତି ବିଚାର ମଣିଷ ବିଚାରରୁ ଫରକ ।

ଯାହା ଅଛି ତାକୁ ଲୁଚାଇ ଯାହା ନାହିଁ ତାକୁ ଆଣିଦିଏ । କାଲିକଥା ଆଜିକୁ ନିଆରା କରେ । ହସୁରା ମୁହଁରେ ଲୁହବୋଳି, ଅଶ୍ରୁଳ ଆଖିପତାରେ ହସର ଛିଟା ପକାଇ ଦିଏ । କାର କ'ଣ ହେଲା, କ'ଣ ହେଇଥାନ୍ତା, କ'ଣ ହବ । ଏସବୁ ତାର ଦେଖିବାର ନାହିଁ ।

ବଢିପାଣି ଖସିଗଲାଣି ।

ଗାଁର ଯିଏ ଯୁଆଡେ ଥିଲେ ଆସିଲେ । ଯିଏତ ଗଲେଗଲେ ତାଙ୍କ କଥା ପଚାରେ କିଏ ? ବାକି ଯେଉଁମାନେ ଛାତବାଡ ଧରି ବଂଚି ରହିଗଲେ ; ସେମାନେ କଣ କରନ୍ତେ ? ଜୀବନ ବଂଚିବାକୁ ହବ । କଣ୍ଟା କାଟିବାକୁ ହବ । କାଦୁଅ ଘାଣ୍ଟିବାକୁ ହବ । ଜୁଆର ଭଙ୍ଗା ଦୁନିଆରେ ପଡିଥିବା ପରସ୍ତ ପରସ୍ତ ପଙ୍କତଳୁ ଗୁପ୍ତଧନ ଅଣ୍ଡାଳିବାକୁ ହବ । ପଟୁଫଟାଇ ଖୋଜିବାକୁ ପଡିବ ହଜିଲା ଐଶ୍ୱର୍ଯ୍ୟ । ତେଜିଲା ଐତିହ୍ୟ । ଅରଜିଲା ଗୌରବକୁ ପୁନଃଉଦ୍ଧାର କରିବାକୁ ହବ ।

ଆଠଦିନ ତଳେ ହଠାତ୍ ଦିନେ ପଶିଆସିଲା ଭୀମକାୟ ସ୍ରୋତ । ସେଦିନ ନିଧୂମବର୍ଷା । ଆକାଶ ଫାଟିଯାଇଥିଲା କି ସତେ, ବର୍ଷାର ଏ ଓଳିରୁ ସେଓଳିକୁ ତର ନଥିଲା କି ମଣିଷ ଜୀବିତ କି ମୃତ କିଛି ଖବର ନଥିଲା । ଅଖିଆ ଅପିଆ ବିକଳ ପ୍ରାଣ । ବାଦୁଡି ଜୀବନ ନେଇ ଝୁଲି ଝୁଲି ଗଛଡାଳରେ ବଂଚି ରହିଥିଲା ମଣିଷ

ସେଦିନ । ଆଖି ଆଗରେ ତୀଖ ସ୍ରୋତ । ଭାସୁଥାଏ ଘରଦ୍ୱାର । କୁଟାକାଠି କାଠଗର ପଶୁ, ଓ ମଣିଷ , ଗାଁ ଟା ଯାକ ଧୋଇ ହୋଇଗଲେ ଯିଏ ଯେତେ ଥିଲେ । ସୁଅଚାଟି ନେଲା ଧନ, ମନ ଓ ମଣିଷ । ଆଖି ସାମ୍ନାରେ ଭାସିଗଲା ସାନ ଦିଅର । ଭାରି ଆପଣାର । ଦେହଲଗା । ସ୍ନେହଶୀଳ । ମନ ପାଇଲେ ଛେପଚାଟିଦବ । ଭାସିଗଲେ ବଡଯାଆ । ଶାଶୁଙ୍କୁ ଦି'ପଟା ଜବର ହେଇ ବସିଥିବେ କାମ ସରିବା ଯାକେ । ମୁରବୀ ପଣରେ ପୋଖତ । ପିଲାଙ୍କର ଭାରିଡର । ଭାସିଗଲେ ଲେଖା ଯୋଖାରେ ଗାଁ ସେମୁଣ୍ଡ ରାମୁକକେଇ । ପରପାଇଁ କାନ୍ଦୁଥିବେ ସବୁବେଳେ । ଗାଁଟା ଯାକର ନନା । ନନାଙ୍କ ମୁଣ୍ଡରେ ଗାଁ ଗୋଟାକର ଭାର । ପିଲାଠୁ ବୁଡା ତଙ୍କର ନିଜର । କିଏ ଅଛି ? ତାଙ୍କ ପରେ ରଖିବ ଏ ଗାଁ ଏକାଠିକରି । ଛ'ଖଣ୍ଡନକରି । ସାମୁକକା ବି କୁଆଡେ ଗଲେ କିଛି ଖବରନାହିଁ ଆଜି ଯାକେ । ଏମିତି ଖୋଜି ବସିଲେ ଗାଁ ଗୋଟାକରୁ ତିନିପା ଲୋକ ଦେଖା ମିଳୁନାହାନ୍ତି । ସୁଅଚାଟି ନେଇଥିଲା ଭୂଗୋଳ ପୃଷ୍ଠାରୁ ସେମାନଙ୍କର ନାଆଁ ।

ରାଧା ବସିଛି ରିଲିଫ୍ କ୍ୟାମ୍ପରେ । ପାଖରେ ଶୁଖିଲାରୁଟି ଆଉ ପାଣିଆ ଡାଲି । ସ୍ୱେଛାସେବୀମାନଙ୍କର ବାରମ୍ବାର ତାଗିଦା - ଖାଇନିଅ ।

ସେମାନେ ଆଜି ନହେଲେ କାଲି ଫେରିବେ । ତମେ ଖାଇନିଅ ।। ଓପାସରହି ଦେହକୁ କଷ୍ଟ ଦେଇ ତମେ ପାଇବ କଅଣ ?

ପଙ୍କ, ପଙ୍କପାଣି ଓ ପଟୁମାଟିର ଚନ୍ଦନ ବୋଲି ହୋଇ ରାଧାବସିଛି ମାଟି ବିଛଣାରେ । ତୂଳୀତଳ୍ପ ଶେଜର ସମ୍ମୋହ ଭାଙ୍ଗିଯାଇଛି । ଖାଲି ଯେ ତାର, ଏ କଥା ନୁହେଁ, ସଭିଙ୍କର ।

ପ୍ରକୃତିମଣିଷର ଚିରକାଳ ପରମଶିକ୍ଷାଦାତା । ମଣିଷର ସୁଖଦୁଃଖର ସାଥୀ । ବାହାରିଗଲା ପୁଅକୁ ବାହୁଡାଇ ଆଣେ ଘରକୁ । ଧକ୍କାଦିଏ । ଧୋକାଦିଏ । ପୁଣିଧରା ଦେଇ ସଅଁପି ଦିଏ ଯେତେକ ଧନ ଦଉଲତ । ମାନମହତ ସବୁ ।

କିଏ କେମିତି ଫେରିଲେଣି ଗାଁକୁ ।

ସ୍ୱେଚ୍ଛା ସେବୀଙ୍କ ମର୍ଜି ନିକଟରେ କାଳକଟେଇ ଅର୍ଦ୍ଧନଗ୍ନ, ଅର୍ଦ୍ଧଭୁକ୍ତ ବାସହୀନ ମଣିଷଛୁଆ ସବୁକଥା ଭୁଲି ପୁଣି ଲାଗିପଡିଲାଣି ବଂଚିବା ସଂଘର୍ଷରେ । ଘର ଚାଲିଯାଇଛି । ସଂପଦ ଚାଲିଯାଇଛି । ନିଜର ସଭିଏଁ ଚାଲିଯାଇଛନ୍ତି । ସର୍ବସ୍ୱ ହରାଇ ସାରିଲାପରେ ପୁଣିଥରେ ସ୍ୱପ୍ନ ଦେଖୁଛି ବଂଚିବାର । ତୋଳିବ ଘର । ଆର୍ଜିବ ସଂପଦ । ଯୋଡିବ ସଂପର୍କ ।

ମୋହମାୟ ଦୁନିଆଁର ଏତ ସବୁଠୁ ବଡ ବୈଚିତ୍ର୍ୟ "ମୃତ୍ୟୁମୁଖର ମଣିଷ ବଂଚିବା ପାଇଁ ଅବିରତ ସଂଗ୍ରାମ କରେ ।"

ଖାଇନିଅ ମା ! ଖାଇନିଅ । ଆମେ ସେମାନଙ୍କୁ ଖୋଜିବାହାର କରିବୁ । ଯୋଉଠି ଥାନ୍ତୁ ନା କାହିଁକି ? ସ୍ୱେଚ୍ଛାସେବୀର କୋମଳ ମା' ଡାକରେ ଚହଲିଗଲା ଚେତନା 'ରାଧାର' । ଦଳିଚକଟି ମନ୍ଥି ହେଇଗଲା ପାଦତଳର ମାଟି । ବେଲୁନ୍ ପରି ଫୁଲିଥିବା ଆକାଶ କଣ୍ଟାବାଜି ଫୁସ୍‌କି ଗଲା । ପାହାଡମାନେ ଉଡିବାକୁ ଲାଗିଲେ । ସମୁଦ୍ରମାନେ ପାହାଡ ପାଲଟି ଠିଆ ହେଲେ । ରାଧା ବତାସ ବିଧ୍ୱସ୍ତ ଇଲାକାର କ୍ଷତବିକ୍ଷତ ଅସହାୟ ଚଢେଇ ପରି ପଡିରହି ଶୁକୁଶୁକୁ ହେଉଥିଲା ।

ଶୁଖିଲା ରୁଟି ଭିତରୁ କିଏ ଯେମିତି ହାତଠାରି ଡାକୁଥିଲା । "ମା ! ତୁଆସି ଆମକୁ ନେଇଯା ! ଆମେ ତୋ ପାଖରେ ରହିବୁ । ତୁ ଆନା !!!" ବଡ ତିନିଟା ତାଙ୍କ ସାଥୀରେ ଗେଲବସରର ସ୍ୱାମୀକଥା ପଛକୁ ଠେଲି ରାଧା ମନେ ପକାଉଥିଲା ତା କୋଳର ବକଟେନାକୁ ଛୁଆ, ମନୁଆ କଥା । ଅନ୍ନଛତ୍ରରେ ବସି ଅଲକ୍ଷ୍ୟରେ ସେ ଚିତ୍କାର କରି ସାରିଲାଣି କେଇଥର ମନୁଆ ! ମନୁଆ !! ତା ଆଖି ଆଗରେ ନାଚି ଉଠୁଚି ସେଦିନର କି କରୁଣ କି ଭୟଙ୍କର ଦୃଶ୍ୟ । ଛାତି ପଥର ନହେଲେ ତାକୁ ସହଜରେ ପାଶୋରିବା କଷ୍ଟ ।

ପ୍ରଥମେ ଆସିଲା ଝିପି ଝିପି ଅସରା । ତାପରେ ଲଗାଣ ବର୍ଷା । ତିନିଦିନ ତିନିରାତି ଝଡି, ଅବିରାମ । ପଦାକୁ କାଢିଦେଲା ନାହିଁ କାହାକୁ । ଗୋରୁ, ଗାଈ , ଛେଳି, ମେଣ୍ଢା, କୁକୁଡା ଓ ମଣିଷ । ଝଡି ସାଙ୍ଗକୁ ଆସିଲା ବଢି ସମୁଦ୍ରପ୍ରମାଣେ ଫେଣଲଗା ନଈ ସୁଅ । ରାକ୍ଷସପରି ଫୁଲୁଥିଲା ଦେହତାର ।

ଜୀବନ ବିକଳରେ ଧାଉଁଥିଲେ ଗାଁ ଲୋକେ । ଧାଉଁଥିଲା ଗୋବିନ୍ଦ । ଧାଉଁଥିଲେ ପିଲା ତିନିଟା । କାନ୍ଧରେ ଥିଲା ସାନପୁଅ ମନୁଆଁ । ବୟସ ଦି ବର୍ଷ ଛଅ ମାସ । ଶୁଖିଲା ଭୂଇଁରେ ହେଲା ପାଣିଭୟ । ପାଦରେ ପାଣିଲାଗିଲା ଓ ଲାଗିଲା ସୁଅଭୟ । ଗାଁ ଦାଣ୍ଡରୁ ସାଇମୋଡ । ମେଳଣ ପଡିଆ । ଗାଁ ଗୋହିରୀ । ଖପା ଖପ୍ ଚାଲିପାରୁନି ରାଧା । ବେଳକୁବେଳ ପାଣି ବଢିଚାଲିଚି । ନଳିଗୋଡ ଲାଗୁଥିବା ପାଣି ବଢି ହେଲାଣି ଅଣ୍ଟାଏ । ରାଧାର ହାତ ଛାଡି ଛାଡି ଯାଉଚି । ପିଲାଗୁଡା ଭିଡି ହେଇ ଯାଉଛନ୍ତି ସୁଅ ମୁହଁରେ । ଗାଁମୁଣ୍ଡ ମଶାଣି ପଦାରେ ଅଛି ଗୋଟେ ମସ୍ତ ଶିମିଳିଗଛ । କୁଣ୍ଢେରୋଟ । ମୁନିଆଁ ନଖ ପରି କଣ୍ଟାଗୁଡା ବାହାରିଚି । ଆଉଜିଲେ ପଶିଯିବ ଦେହ ଭିତରେ ଟପ୍ ଟାପ୍ । ଆଗକୁ ଜଳାର୍ଣ୍ଣବ । ଏଇ ହେଉଛି ଏକମାତ୍ର ଶେଷ ଆଶ୍ରୟ । ରାଧା ଟାଣି ହେଇ ଯାଉଚି, ଗୋବିନ୍ଦ ମନୁଆକୁ କାନ୍ଧରେ ବସେଇ ଟାଣୁଚି ରାଧାକୁ ।

ପିଲା ଦିଟା ଭିଡି ହେଇ ଯାଉଛନ୍ତି ଓହ୍ଲେଇ ଗାଈ ପରି । ଆସିଲା ଝଲକାଏ ଫେଣ ଲଗା ସୁଅ । ସୁଅ ମୁହଁରେ ପତର ପରି ଭାସିଗଲେ ପିଲା ଦି'ଟା । ଅକାତକାତ ଗଭୀର ତୋଡ ଭିତରକୁ ।

ଅଣ୍ଟାଲଗେଇ ଭିଡି ଧରିଚି ଗୋବିନ୍ଦ । ରାଧା ଉଠୁଚି ଶିମିଳି ଡାଳକୁ । ଗୋଡରଖୁନି ଗୋବିନ୍ଦ କାନ୍ଧରେ । ବାଧ କରୁଚି ଗୋବିନ୍ଦ । "ଆଉ ସବୁକଥା ଭୁଲିଯା । ଆଗ ଜୀବନ ବଞ୍ଚା" । ଟାଣୁଚି ଅଣ୍ଟାରୁ ଧରି । କାଖ ତଳେ ବାଁ ହତ ଦେଇ ଟେକୁଚି ରାଧାକୁ । ସୁଅ ବଢୁଚି । ରାଧା ଅନ୍ୟନ୍ୟ ଉପାୟ ହେଇ ଉଠିଗଲା ଶିମିଳି ଡାଳକୁ । ଦେହସାରା ରକ୍ତଧାର । ଗୋବିନ୍ଦ ଆଉ ରାଧାର ରକ୍ତ ମିଶିଯାଉଚି ଗୋଳିଆ ପାଣିରେ । ଲିଭିଯାଉଚି ରଙ୍ଗ । ଗୋବିନ୍ଦ ଦିହାତରେ ଟେକି ଦଉଚି ମନୁଆକୁ ରାଧା ପାଖକୁ । ଗୋଡ ଖସିଗଲା ଗୋବିନ୍ଦର । ହାତରୁ ଖସିପଡିଲା ମନୁଆ ।

ତୀଖ ସୁଅରେ ସାପ ଫଣା ଦିଗଡ ହେଇଯିବ । ମହାମେରୁ ଟଳିପଡିବ । ଥାକିବ ନାହିଁ । ପିଲା ବକଟେର କି ଯୁ ।

ସୁଅ କିଛି ମନେରଖେନା । କାହାର ପୁଷ ମାସ କି ସର୍ବନାଶ । କିଛି ବୁଝେନା ତା'ଧାରରେ କାହାର କେତେ ଲୁଣିଆ ଲୁହ ମିଶିଚି । କାହା କୋହରେ କେତେ ଉତ୍ତାଳ ତରଙ୍ଗ ଉଠିଚି । ଗାଁ ଗଣ୍ଡା ଗହୀର ବିଲ ବୁଡି ଚିଲିକା । ଯେଣେ ଚାହିଁବ ତେଣେ ପାଣି ହିଁ ପାଣି ।

ପାଣିଭିତରୁ ବୁଡି ବୁଡି ହାତ ଟେକୁଥିଲା ଗୋବିନ୍ଦ । ଯେମିତି କହୁଥିଲା ତୁ ଥା ରାଧା ! ମୁଁ ଆସୁଚି । ଡରନା । ମୁଁ ଆସି ଓହ୍ଲେଇ ଦେବି ।

ଆଜିକି ଚାରିଦିନ ହେଲାଣି, ରାଧା ଚାହିଁ ବସିଚି ତା ମନୁଆକୁ ଧରି ଗୋବିନ୍ଦ ଫେରିବ । କଥା ଦେଇ ଯାଇଚି । ଯିଏ ଯେମିତି ବଂଚି ଯାଇଥିଲେ ଫେରିଲେଣି ପୁଣିଥରେ ଘରଦୁଆର କରିବା ପାଇଁ । ଗୋବିନ୍ଦ କାହିଁକି ଫେରିବ ନାହିଁ ?

ରାଧା ରିଲିଫ୍ କ୍ୟାମ୍ପରେ ବସି ଖୋଜୁଛି ତା ପରିବାର ଲୋକଙ୍କୁ କାହାରି ଦେଖାନାହିଁ ।

ବୀରଭୂମ ଜିଲ୍ଲାର ଦେଶପୁର ପାଣ୍ଡେ ବଂଶର ଐଶ୍ୱର୍ଯ୍ୟ ଆଭିଜାତ୍ୟକଥା କିଏ ନ ଜାଣେ । ଧନ ଜନ ଗୋପଲକ୍ଷ୍ମୀରେ ଭରା । ଦେବୀପୁର ଓ ପାଖ ଦଶ କୋଶ ଗାଁରେ ଜଣାଶୁଣା ଜମିଦାର । ପୁରୁଣା କାଳିଆ ଖାନଦାନୀ ଘର । ଗରିବ ଗୁରୁବାଙ୍କ ମା'ବାପ । ମାନସମ୍ମାନ କଥା କହିଲେ ନସରେ । ଦଶ ବାରବର୍ଷ ତଳେ ଯୋଉଦିନ ସେ ନୂଆବୋହୂ ହୋଇ ଆସିଥିଲା ପାଣ୍ଡେ ପରିବାରକୁ ସେଦିନର ଆନନ୍ଦ ଉଲ୍ଲାସ

ଦେଖେ କିଏ ? ଘରର ବଡ ବୋହୂ । ଶାଶୁ ଶ୍ୱଶୁରଙ୍କ ଗେହ୍ଲା ଝିଅପରି । ସଭିଙ୍କର ସ୍ନେହ ସୋହାଗର ଲବଣୀ ପିତୁଳା । ନାଁ ତାର ରାଧାରାଣୀ । ଶାଶୁ ଡାକନ୍ତି ରାଧିକା । ସେଇ ଡାକ ତାକୁ ଭଲ ଲାଗେ । ଶାଶୁଙ୍କ ମୁହଁରୁ ଶୁଣିଲେ ପେଟପୂରିଯାଏ । ସ୍ୱାମୀ ବି ବେଳେ ବେଳେ କଉତୁକ କରି କହନ୍ତି ଆଗୋ ରାଧିକେ ! ତମ ରାଇଜରେ ରହିବାକୁ ଟିକେ ଥାନ ମିଳିବ ?

ରାଧା କାନି ଉଡେଇ ହସ ଚାପି ରଖି ଯୋଉଢଙ୍ଗରେ ବୁଲିପଳାଏ ତାହା ଗୋବିନ୍ଦ ମନ ନୟନକୁ ଭାରି ମାନେ । ରାଧା ଆକଟକରିବା ଢଙ୍ଗରେ ଅନୁଚ୍ଚ ସ୍ୱରରେ କାନପାଖରେ କହିଯାଏ - ମାଲୋ ! କି ବେଲଜ୍ଜା ତମେ ! ବୋଉ ଶୁଣିଲେ କ'ଣ ଭାବିବେ । ଗୋବିନ୍ଦ ପାଖକୁ ମାଡିଆସେ ରାଧା ଧାଇଁ ପଳାଏ ।

କି ସୁଖକର ମୁହୂର୍ତ୍ତମାନ କୁଆଡେଗଲା ଝଲକାଏ ନଈସୁଅରେ । ଏ ଘରକୁ ଆସିବା ଦିନଠୁ ଶାଶୁ ଅଣ୍ଟାରୁ ଚାବିପେନ୍ଥା କାଢି ଧରେଇ ଦେଲେ ହାତରେ ଆଲୋ ହେ ରାଧିକା ! ଧଅ ଏ ଚାବି ନେନ୍ଥା । ଏଣିକି ଏ ଘର ଦୁଆର, ଧନ ଦଉଲତ, ଜାୟଜମିଦାରୀ ତମର । ଆମେ ବୁଢା ବୁଢ଼ୀ ହେଲୁ । ଏତେ ଜଞ୍ଜାଳ ବୁଝିପାରିବୁ ନାହିଁ । ଶେଷବେଳକୁ ଟିକେ ଧ୍ୟାନ ଧର୍ମତ କରିବୁ । ନହେଲେ ନରକରୁ ପାର୍‌ହବୁ କେମିତି ? ତୋରି ଭଳିଆ ମୋ ହତରେ ଚାବି ଧରେଇ ଦେଇ ଶାଶୁ ଚାଲିଗଲେ ବୃନ୍ଦବନ । ଆଉ ଫେରିନାହାନ୍ତି । ତୁ ସେମେତି ଧରେଇଦବୁ ତୋ ପୁଅ ବୋହୁକୁ । ନେ ରଖ । ବୁଲିପଡି ପୁଣି ବୁଝେଇ ଦଉଥିଲେ । ଦେଖ୍ ! ଗରିବ ଗୁରୁବାଙ୍କ ଗୁହାରି ଶୁଣୁଥିବୁ । ନିଆଶ୍ରୀ ଦୁଃଖୀ ରଙ୍କିଙ୍କର ମାଆ ବାପା ତୁ । ତାଙ୍କ ପାଇଁ କେବେ କିଛି ଊଣା କରିବୁ ନାହିଁ । ଚାକର ବାକର ମୂଲିଆଙ୍କ ପେଟ ଚିହ୍ନିବୁ । ଘରେ ସଭିଙ୍କ ମନନେଇ ଚଳିବୁ । ମୋ କଥା ମାନି ଥିଲେ ଅହି ସୁଲକ୍ଷଣି, ରାଜରାଣୀ ହୋଇ ନାଁ କରିବୁ ।

ଶାଶୁ ନୂଆ ନୂଆ ସେଇବର୍ଷ କେଇଟାରେ ଘରଛାଡି ବାହାରି ଗଲେ ସନ୍ୟାସିନୀ ହୋଇ । ଆଉ ଫେରିନାହାନ୍ତି । ଶ୍ୱଶୁର ତାଙ୍କ ଆଗରୁ ଚାଲିଯାଇ ଥିଲେ ସେପୁରକୁ କୋଉ ଅଚିହ୍ନା ବେମାରିରେ । ଖାଲି ଡାକଛାଡିଲେ ଭୋ ଭୋ ହୋଇ କୁକୁର ପରି । ମାଟି ତାଡି ପକେଇଲେ । ଛାଟିପିଟି ହେଲେ ପାଣି ଦେଖି ଡରି ମରି ଲୁଚିଲେ କବାଟ ସନ୍ଧିରେ । ଗାଁ ଲୋକେ ଚାକର ବାକର ତାଙ୍କୁ ଅଖା ଗୁନ୍ଥେଇ ଧରି ପକେଇ ବାନ୍ଧିଦେଲେ ଗୋଡହାତ । ସେଇଠି ଛାଟିପିଟି ହୋଇ ତାଙ୍କର ପ୍ରାଣଗଲା । ଯିଏ ଦେଖିବ । ତା ଆଖିରେ ଲୁହ ରହିବ ନାହିଁ ।

ରାଧା ହାତରେ ସାରାଟା ଜମିଦାରୀର ଚାବିକାଠି । ଗୋବିନ୍ଦ ହାତରେ କାଣି କଉଡିଟିଏ ନାହିଁ । ସେଥିରେ ଆପତ୍ତିନାହିଁ ତାର । ଯାହା ଯେତେ ବେଳେ ଲୋଡା

ମାଗିନିଏ ଗୋବିନ୍ଦ ରାଧା ପାଖରୁ । ବଗଲା ବଗୁଲୀ ପରି ପିଲା ତିନୋଟିଙ୍କି ନେଇ ବଡ ସୁଖ ଆଉ ସନ୍ତୋଗରେ ଚଳୁଥିଲେ ଦିହେଁ । ଧନ ଦଉଲତର ଅଭାବ ନାହିଁ । ସ୍ନେହଁ ସୋହାଗର ଅଭାବ ନାହିଁ । ଘରେ ନିତି ଦିନ ଚାକର ବାକର । ବନ୍ଧୁ ବାନ୍ଧବ ଭରା । ଗହଗହ କମ୍ପୁଚି ଜମିଦାରୀ । ଆଗକୁ ଅଛି ଦଶହରା । ମା' ଦଶଭୂଜାଙ୍କର ପୂଜୋତ୍ସବ ।

କାହାର କେତେକଣ ଯୋଜନା । କିଏ ବୁଲିଯିବ କଲିକତା କାଳୀମେଢ ଦେଖି । କିଏ ଯିବ ମାମୁଁ ଘର । କାହାର କ'ଣ କିଣାହବ । ବରାଦ ଚାଲିଛି ଦିନରାତି ଉଆସରେ । ପାଣ୍ଡେ ବଂଶର କୂଳ ଦେବୀ କାଳୀଙ୍କର ପୂଜାବି ଏଥର ବଡ ଜାକ ଜମକରେ ହବ ଦେବୀପୁର ସ୍କୁଲ ପଡିଆରେ । ଗୋବିନ୍ଦ ଗାଁ ଟୋକାଙ୍କର ସଭା ଡକାଇ କହି ଦେଇଛି  ତମେ ସବୁ ଲାଗିପଡ । ଯାହା ଖର୍ଚ୍ଚହବ ଦେବେ ଆମ ରାଧିକା ଦେବୀ । ତାଙ୍କୁ ମାଗିକରି ଆଣିବା । ଖୁବ୍ ଆଡମ୍ବରରେ କରିବା ମା' କାଳୀଙ୍କର ପୂଜା । ବାଣ ଫୁଟିବ । ସଲଟଣ ନାଚିବ । ଏଥର ମେଢ଼ ହବ ରୂପାରେ । ଭୋଗ ପରିମାଣ ଟିକେ ଅଧିକା କରିଥିବ । ଯିଏ ଦେଖଣାହାରି ଆସିବେ ଖାଇକି ଯିବେ ଭୋଗ ।

ମଣିଷର ଏ ଯୋଜନା ନିୟତି ପାଇଁ ଗ୍ରହଣୀୟ କି ନା ମଣିଷ ଜାଣେନା । ଅଙ୍କମଣିଷ ହିସାବ କରି ଚାଲିଥାଏ  ତା' ଇପ୍‌ସିତ ସ୍ୱପ୍ନକୁ ଧରି । କାମନାର ବଶବର୍ତ୍ତୀ ହୋଇ ସେ ଦେଖି ପାରିନଥାଏ ଆଗକୁ କ'ଣ ହବ ତାର ।

ଚିରକାଳ ମଣିଷ ସ୍ୱପ୍ନନେଇ । ସ୍ୱପ୍ନବାଣ୍ଟି । ସ୍ୱପ୍ନଧରି ବଂଚିଥାଏ ।

ଗୋବିନ୍ଦ ଯେ - ଆଗକୁ ଥିବା ଦଶରା ପାଇଁ କେତେକ'ଣ କଳ୍ପନା ଜଳ୍ପନା କରୁଥିଲା ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ଯାହା ସ୍ୱଭାବିକ୍ ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ଚଟୁଳକରି ଗୋବିନ୍ଦ ପଚାରୁଥିଲା ରାଧାକୁ - କି ରାଧିକେ । ଦେବୀପୁର ଜମିଦାରୀର ମାଲିକାଣୀ, ତମର ଏଥର ଦଶରା ବଜାର ଭାଉଟା କ'ଣ କହିଲ ଶୁଣେ । ରାଧାର ପ୍ରସ୍ତାବିତ ଲମ୍ବା ତାଲିକାରେ ରାଧାପାଇଁ କିଛିନଥିଲା । ଏକଥା ଦେଖି ଗୋବିନ୍ଦ ତାଜୁବ୍ ।

ମୁହଁକଥା ମୁହଁରେ ଅଛି । ବଦଳିଗଲା ସଂସାର । ଓଲଟ ପାଲଟ ହୋଇଗଲା ଜୀବନ ପ୍ରବାହ । ନଈବଢୀରେ ଲୁଟିଗଲା ସର୍ବସ୍ୱ । ବଢିରହିଲା ତିନିଦିନ । ଛାଡିବା ଆଜିକୁ ହେଲାଣି ଚାରିଦିନ । ପଚାଗନ୍ଧରେ ଫାଟିପଡୁଛି ନାକ । ଫେରୁଛନ୍ତି ଜଣ ଜଣ ହୋଇ ଗାଁ ଲୋକ ରିଲିଫ କ୍ୟାମ୍ପରୁ ।

ଶୁଖିଲାରୁଟିରେ ଲେଖା ହୋଇଛି - କାଳେ ସେମାନେ ଆସିବେ ? ଅସହାୟ ନିଆଶ୍ରୀ ରାଧାର କେହି ନାହିଁ । କାହିଁକି ଆଉଜୀବନଧରି ରହିବ କାହାପାଇଁ ? ରିଲିଫ୍

କ୍ୟାମ୍ପରେ କାମ କରୁଥିବା ସ୍ୱେଚ୍ଛାସେବୀଙ୍କ ପାଇଁ ? ଦେହଧରି ରହିବାର ତାର କି ଅଧିକାର ଅଛି ? ଭାବୁଥିଲା ବେଳେ ତାକୁ ଯେମିତି କିଏ କହିଦେଉଥିଲା ଆରେ ହେ – ଏ କ'ଣ କରିବାକୁ ଯାଉଛୁ । ଛି ଛି ସେ କାମ କରନା ଆ ! ଅପେକ୍ଷା କର । ସେମାନେ କାଲେ ଆସିବେ ?

ନ ଆସିବା ଯାଏଁ ଅନ୍ନଜଳ ସ୍ପର୍ଶ କରିବ ନାହିଁ । ସେମାନେ ନ ଫେରିଲେ ସେବି ଚାଲିଯିବ ସେ ପୁର ।

ନିସ୍ତେଜ ପାଦ ଆଉ ହାତ । ନିସ୍ତବ୍ଧ ଦୃଷ୍ଟିଶକ୍ତି ଓ ଶ୍ରବଣଶକ୍ତି । ନିର୍ବେଦ ଶରୀର ବେଦ। ସ୍ୱେଚ୍ଛାସେବୀମାନଙ୍କ ମଧ୍ୟରେ ଲାଗିଚି ଗହଳ । କିଏ ଯେମିତି ଖବର ନେଇ ଆସିଚି ସେମାନେ ଆଉ ଆସିବେ ନାହିଁ । ପତ୍ତା ନାହିଁ ସେମାନଙ୍କର ।

ରାଧା ଆଖିଆଗରେ ଛିଣ୍ଡି ଯାଉଚି ଆକାଶ। ଭାଙ୍ଗିପଡୁଚି ମହଲ । ଚାରିଆଡେ ହାହାକାର । ଶବମାଳ । କାଉ ଚିଲ ଆଉ ଶାଗୁଣା ମାଳ ମାଳ। ଦିନରେ ବି କୁକୁର ବିଲୁଆ ହେଉଛନ୍ତି ଧାଁ ଦଉଡ। କିଏ ଯେମିତି ଶୂନ୍ୟରୁହାତ ଠାରି ଡାକୁଚି – "ରାଧା ! ରାଧା ! ରାଧିକା ! ଆ ମା ଆଃ ! !"

ଉଡିଆସି ଶାଗୁଣାଟା ପାଖରେ ବସି ଝୁଣି ନଉଚି ମାଂସ ପୁଳା ପୁଳା । ହାସ୍ ବୋଲି କହିବାର ଯୁ ନାହିଁ ରାଧିକାର । ପଡିଚି ମଶାଣି ପଦାର ହଡା ବଳଦପରି । ଦଶହରା ରୋଷଣିରେ ଚାରିଆଡ ଦିଶିଲାଣି ଆଲୁଅ । ମନ୍ତ୍ର ଧ୍ୱନିରେ କଂପୁଚି ଧନଧାନ୍ୟ ଧରା ।

"ଯା ଦେବୀ ସର୍ବ ଭୂତେଷୁ ମାତୃ ରୂପେଣ ସଂସ୍ଥିତା
ନମସ୍ତସ୍ୟୈ, ନମସ୍ତସ୍ୟୈ, ନମସ୍ତସ୍ୟୈ ନମୋ ନମଃ ।"



## ଭାଇ

କାଉର ଡେଣା ଭାଙ୍ଗି ଯାଇଛି । ବଗର ଥଣ୍ଡ । ସାପର ଫଣା ଚୂର୍ ହୋଇ ଯାଇଛି । ମେଣ୍ଢାର ଶିଂଘ । ହନୁମାଙ୍କଡ ଗେଧର ଛାତି ଫାଟି ପଡିଛି ତଳେ ଚାରିକାତ ମେଲି । ଆଉ ଚିତ୍କାର ଶୁଭୁନି 'କଜଳ ପାତି ତରକା ଅତି'ର । ଫୋନ୍ ତାରରେ ଝୁଲୁଚି ବାୟାବସା ସ୍ୱପ୍ନ ହେଇ। ଘର ସବୁ ସହୀଦ ହୋଇ ଯାଇଛି । ତାଳ ନଡିଆ ଗୁଆଗଛ ଶବାସନ ଓ ଆମ୍ବ ଜାମୁ ଚାକୁଣ୍ଡା ମାନେ ବଜ୍ରାସନ ମୁଦ୍ରାରେ ପ୍ରଣତି ଜଣାଉଛନ୍ତି ଆଗାମୀ ସହସ୍ରାବ୍ଦୀକୁ ଆଉ ଅଶ୍ରୁ ଢାଳୁଛନ୍ତି ବିଦାୟୀ ଶତାବ୍ଦୀ ପାଇଁ । ରାସ୍ତା ସାରା ବିଂଚା ଯାଇଛି ଫୁଲ ପତ୍ରର ପାଖୁଡା । ଶିରୀ ତୁଟିଯାଇଛି ଗାଁ ଗହୀରର । କ୍ଷେତ ସାରା ଉଜୁଡା ସଭ୍ୟତାର ଚିହ୍ନ । ପଚାଗନ୍ଧ ଓଃ.... । ନଈସାରା ଶବ। ବାଟ ସାରା ଗଛବୃକ୍ଷ ଓ ମଣିଷ ମୁଣ୍ଡ। ଗୋରୁମଡା । ହାହାକାର । ଶାଗୁଣା ବିଲୁଆ । ନିଖୋଜ।

ଗାଁ ନାୟିକର ଭାଙ୍ଗି ଯାଇଛି ଅହଂକାରର ପାଚେରୀ । ଘରର ଛପର ଉଡିଯାଇ ପଡିଛି ବାରିପଟ ଟୁବିଗଡିଆରେ । ଆତଙ୍କବାଦୀ ବେଲୁର ଭାଙ୍ଗିଯାଇଛି ଅଣ୍ଟା ଗଛପଡି । ଘୁଷୁରୁଛି । ପରସ୍ୱାପହାରୀ ରାମସାହୁର ତିନ୍ତି ଯାଇଛି ଯେତେକଧାନ ଚାଉଳ ଆଉ ପଶିଯାଇଛି ସମୁଦ୍ର ଜୁଆର ତା ଗୋଦାମ ଘରେ । କ୍ଷେତରୁ ଚାଟି ହୋଇଯାଇଛି ଫସଲ । ପରାକ୍ରମଶାଳୀ ନଟୁ ସାଆନ୍ତରାର ଅଙ୍ଗରକ୍ଷୀ ମରିଯାଇଛି । ଶବ ପାଖରେ ଠିଆ ଠିଆ ନଟୁ କାନ୍ଦୁଛି ଛୋଟ ପିଲାପରି ।

ମୋଟ ଉପରେ ପ୍ରକୃତିର ତାଣ୍ଡବଲୀଳା ଆଗରେ ମଣିଷର ସଂଚିତ ଐଶ୍ୱର୍ଯ୍ୟ ଚୂନା ହୋଇ ଯାଇଛି ମାତ୍ର କେଇଘଣ୍ଟାରେ । ଶହ ଶହ ଶତାବ୍ଦୀର ସଭ୍ୟତା ଆଜିମୂକ ପାଲଟି ଯାଇଛି । ବଚନ ସ୍ଫୁରୁନାହିଁ କାହାରି ମୁଖରେ ।

ଚାରିଆଡେ ଉଜୁଡା ମାଟିର ସଂଗୀତ ।

ଉପକୂଳବର୍ତ୍ତୀ ଇଲାକାର ଶୋକ ଆଉ ଦୀର୍ଘଶ୍ୱାସରେ ଫାଟି ପଡୁଛି ଆକାଶ । ମେହେନତି ମଣିଷ ହୋଇ ଯାଇଛି କାଠ । ସହରରୁ ଶୁଭୁନି ରେଡିଓ କି ଟି.ଭି. । ପ୍ରତି ବଟୀଖୁଣ୍ଟରେ ଝୁଲୁଚି ବଗପର ।

ଛନ୍ଦାଛନ୍ଦି ତାରରେ ମଣିଷ ପଲ ପାଉନି ବାଟ । ଝୁଣ୍ଟୁଚି । ପଡୁଚି । ଖୋଜୁଚି । ଆହାର । ଦୋଷରା ହାତକୁ ଚାହିଁ ରହିଛି ଓଡିଶାବାସୀ ରାସନ ଗଣ୍ଡାକ ପାଇଁ ।

ସ୍ୱାଭାବିକ୍ ଜୀବନରେ ପଶିଯାଇଚି ଗୋଟେ ମେଖଡ । ମାତ୍ର କେଇ ଘଣ୍ଟାରେ ଆଧୁନିକ ସଭ୍ୟତା ଫେରିଯାଇଛି ଆଦିମସଭ୍ୟତାକୁ । ଜାତି, ଅଜାତି ନାରୀ ପୁରୁଷ, ବଡ ସାନର ଭେଦ ନାହିଁ । ସମସ୍ତଙ୍କ ହାତରେ ବ୍ୟାଗ୍ ଆଉ ଜାର୍‌କିନ୍ । କିଛି ରସଦ ଆଉ ଜାଳ । ଏଇ ଦି'ଟା ହିଁ ମୁଖ୍ୟ ଯୋଗାଡ ।

ସଭିଙ୍କ ହୃଦତଳେ ହରାଇବାର ଦୁଃଖ ଆଉ ବେଦନା । ମା' ହରାଇଚି ପୁଅ । ସ୍ୱାମୀ ହରାଇଚି ସ୍ତ୍ରୀ । ସ୍ତ୍ରୀ ହରାଇଚି ସ୍ୱାମୀ ଓ ସନ୍ତାନ । ସନ୍ତାନ ହରାଇଚି ପିତା ମାତା ବନ୍ଧୁ ସୋଦର, ଘର । ଗାଁ ହରାଇଛି ସାଇ ଭାଇ, କ୍ଷେତ ଖମାର । ଗଛବୃଛ । ଚାଷୀ ହରାଇଛି ଫଳନ୍ତି ଧାନ କିଆରୀ, ଗୁଆ, ନଡିଆ, କଦଳୀ,ଗାଈ,ଛେଳି, କୁକୁଡା, ମାଛ ଓ ମାଟିର ମୂଳ ।

ସବୁହରାଇବା ଭିତରେ ପାଇବା । ସବୁ ନଥିବା ଭିତରେ ଥିବା ସବୁ ବିନାଶ ଭିତରେ ବିକାଶ । ସବୁ ଦୂରତ୍ୱ ଭିତରେ ନୈକଟ୍ୟ । ସବୁ ଦୁର୍ଯ୍ୟୋଗ ଭିତରେ ସୁଯୋଗ । ସବୁ ବିଚ୍ଛେଦ ଭିତରେ ମିଳନ । ପୁନର୍ମିଳନ । ଏ ବିଧିର ଲେଖା ସବୁଶୂନ୍ୟ ଭିତରେ ପୂର୍ଣ୍ଣ ଓ ସବୁ ଅଭାବ ଭିତରେ ଭାବର ସନ୍ଦେଶ ଦେଇ ଯାଇଥାଏ ପ୍ରକୃତି ଯୁଗେ ଯୁଗେ ।

ପ୍ରକୃତି କାହାର କ'ଣ ଛଡାଇ ନେଇଛି ରହିମ୍ ଜାଣେନା । ହେଲେ ତାକୁ ଫେରାଇ ଦେଇଛି ତା ଭାଇ । ଦୀର୍ଘ ବାରବର୍ଷ ହେଲା , ଏକା ମା ପେଟର ଭାଇ । ଏକା ଲାହି ଦିଖଣ୍ଡ । ବିଭୀଷଣ ସାଜିଥିବା ଭାଇକି ସେ ଫେରିପାଇଛି । ମହାବାତ୍ୟା ଭାଙ୍ଗି ଦେଇଛି ଅଗଣା ମଝିର ପାଚେରୀ ଓ ପୋତିଦେଇଛି ରାସ୍ତାର କଣ୍ଟା ବାଡ । ସ୍ୱାଭାବିକ୍ କରି ଦେଇଛି ସଂପର୍କ । ତାର ସେ ମୁହୂର୍ତ୍ତ କେଇଟା ମନେରହିଛି ଛାତିଭିତରେ ପଥର ଖୋଳା ଅକ୍ଷର ପରି ।

ପବନର ଗତି ବଢିଗଲାଣି ଦିଗ ବି ବଦଳିଗଲାଣି । ଗତରାତିରୁ ଅସରା ଅସରା ବର୍ଷା ସହିତ ପବନ ଅବିରାମ ଗତିରେ ବହିଚାଲିଛି । ଦିନ ହେଲାଣି ଦି'ଘଡି । ପବନ ବୁଲିଗଲାଣି ପଶ୍ଚିମକୁ । ଗତ ବାରଘଣ୍ଟାର ପବନମିଶା ବର୍ଷାମାଡରେ ଘରକାନ୍ଥ ଆଉ ହାତିଅନ୍ଦ ସବୁ ଛିଡିଗଲାଣି । ଗାଁର ଯେତେକ ଚାଳଛପର ଉଡିଗଲାଣି ଅଧା ଅଧି ।

କରିମ୍ ଚଢିଚି ଚାଳ ଉପରେ । ବରଡା ଆଉ ଛଣ ଛିଣ୍ଡାକରି କେଇଟା ପକାଇ ରକ୍ଷାକରିଦବ ଘର । ।ଡାକ ମାରୁଚି ଉପରୁ – ଜରି ଉଡିଯାଉଚି , ଇଟା ଦିଟା ରସିର ଦି ମୁଣ୍ଡରେ ବାନ୍ଧି ନଗିରେ ବଢା ।

ନସିମନ୍ ବୋଉ କରିମ୍ କଥା ଶୁଣି ନଗିରେ ବଢେଇ ଦେଲା ଇଟା ଦି'ଟା । ଦିହିଁକି ଦିହେଁ ଓଦା ସଡ ସଡ । ପବନ ମାନୁନି କିଛି । ଯେମିତି ନିଷ୍ପତ୍ତି କରିଛି ଆଜି ଉଜାଡି ଦବ ସାରାଟା ଜଗତ । ବେଶ୍ ବଢିଚାଲିଛି ବେଗତାର। ପାଖଗଛ ମଡମଡ ହଉଚି ପବନରେ। ଦୋହଲି ଶୋଇ ପଡୁଚି ଘରଉପରକୁ । ମୂଳରେ ଝଲାକାଏ ପାଣିପଶି ଗଛକୁ ଆହୁରି ଦୁର୍ବଳ କରିଦେଉଛି ।

ଯେତେ ଯାବୁଡି ଧରିଲେବି ମାଟିଠୁ ଅଲଗା କରିଦେବ ପବନ ଗଛକୁ । ଅଗଣାସାରା ପତ୍ର କୁଢ କୁଢ । ଘରସାରା ଓଦାମାଟି, ପିଲାଏ ଘରର ସବୁ ଆସବାବପତ୍ର କଣକୁ ଏକାଠି କରି ତା ଉପରେ ବସିଛନ୍ତି, ଗଛଡାଳରେ ଭିଜୁଥିବା ଅସହାୟ ମାଙ୍କଡ ଛୁଆପରି ।

ନସିମନ୍ ବୋଉ ଚିକ୍କାରକରି ଉଠିଲା –ହେ ଆଲ୍ଲା ! ତମେ ଚାଳରୁ ଓହ୍ଲେଇ ଆସ । ଆମେ ଘରଛାଡି ପଳେଇବା । ଶୋବାନ୍‌ଘରେ ନଡିଆଗଛ ପଡି ଘର ଭାଙ୍ଗିଗଲା । କାନ୍ଦ ଶୁଭୁଚି । କାହାର କଣ ହେଇଚିନା କଅଣ ? ଆମର ଘର ଦରକାର ନାହିଁ । ବେଗି ଆସିଲ ।

କରିମ୍ ଓହ୍ଲାଇବା ଅବସରରେ ନସିମନ୍ ବୋଉ ହାତରେ ଗୋଟେ ପୁରୁଣା ଦସ୍ତା ଟ୍ରଙ୍କ ଧରି ପିଲାଙ୍କୁ ନେଇ ହାଜର ଦୁଆର ମୁହଁରେ । ତାର ଇଛା ବଡ ଭାଇଙ୍କ ଘରକୁ ପଳାଇବା ।

ହେ ! ଆସୁନ ଭାଇଙ୍କ ଘରକୁ ପଳେଇବା। ତାଙ୍କରତ ପଥର ଟାଇଲିଘର । ଦି'ବଖରା ଛାତ । ଆମେ ସେଠିକି ପଳେଇଲେ ହୁଅନ୍ତା ନାହିଁ ।

ଚୋପ୍ ! କାଲି ସଂଜବେଳେ ତା ସ୍ତ୍ରୀ କେମିତି ମୋ ସାଙ୍ଗରେ ନଳା ପାଣିପାଇଁ ଅଣ୍ଟାରେ ଲୁଗାଭିଡି ତିଆର୍ ହୋଇଥିଲା, ଦେଖିନୁ ? ହଇରେ ଭିନ୍ନ ହେଲା ଭାଇ କି ପଡିଶାକୁ ଲେଖା ? ଆମେ ପଛେ ମଲେ ମରିବା କୁଆଡେ ଯିବାନାହିଁ ।

ତମେ ନଯିବ ନାଇଁ । ଏଇଠି ଥାଅ । ମୁଁ ମୋ ପିଲାଙ୍କୁ ନେଇ ଯାଉଛି, ଏବେଳରେ କିଏ କାହାକୁ ମନା କରିବ ନା କଅଣ ? ବତାଶ ଥମିଲେ ବରଂଚ ଆମେ ପଳେଇ ଆସିବା ?

ଖାମୁସ୍ ! ମୁଁ କହୁଚି ଏକବାର ଖାମୁସ୍ !! ବାରବର୍ଷ ହେଲା ତାର ମୋର ଅପଡ। ତୁ ଦେଖିନୁ ସେଥର ନସିମନ୍ ଭାଡିରୁ ପଡି ମଲାଗଲା ହେଇଗଲା । ଆମେ ଆଠଦିନ ହାସ୍‌ପାତାଲରେ ରହିଲେ । ଦିନେ ସେ କି ତା ପିଲାଛୁଆ କେହି ଅଇଲେ ? ଯା ! ଯା !! ଏତେ ଦେଖାନା । ତୋ ପାଇଁ ତା ଆଖିରେ ଲୁହ ରହିପାରୁନଥିବ ଯେମିତି ?

ତମେ ତାଙ୍କୁ ଯୋଉ ଗୋଡେଇଥିଲ ଶାବଳ ଧରି ? ଲୋକେ ଛଡା ଛଡି କରିନଥିଲେ ସେତ ମର୍ଡର ହୋଇଯାଇଥାନ୍ତେ ? ତାଙ୍କର ବଳନାହିଁ ବୋଲି କଣ ରାଇଜରେ ଧର୍ମନାହିଁ ?

ଚୁପ୍ ହାରାମ୍‌ଜାଦି ! ଆସିଲା ଭଲେଇ ହେବାକୁ । ଯାଉନୁ ମାଗିଖାଇ ଛତରୀ ଘରଛୁଆ । ଯା ! ଆଉଁଷିଦବୁ ଯା ! ଗଣ୍ଡେ ପେଟପୁରା ଖାଇବାକୁ ମିଳିବ ।

କଥା ପଦକ ନସିମନ୍ ବୋଉର ମାନସମ୍ମାନକୁ ଭାରି ବାଧିଲା । ସେ କାନ୍ଦି ପକାଇଲା ।

ଘର ମଡ୍ କିନା ହେଲା । ପିଲାଏ ଛାନିଆରେ ବୋଉଲୋ ! ମରିଗଲି କହି କାନ୍ଦିପକାଇଲେ । କରିମ ଦେଖିଲା ଅଗଣାର ପାଚେରୀ ଭାଙ୍ଗିଗଲା । ଘର ଉପରେ ନଡିଆଗଛ ପଡି ଘର ଦବିଗଲା । ମଝି ଓରା ଭାଙ୍ଗିଯାଇଛି ନା କଅଣ ? ଗୁହାଳରୁ ଗାଈ ଓ ଛେଳି ବେକରୁ ପଘା ବାହାର କରି ଛାଡି ଦେଲା ।

ମଣିଷ ପ୍ରକୃତି ସହିତ ଚିରକାଳ ସଂଗ୍ରାମ କରି ଆସିଛି । ଏ ସଂଘର୍ଷରେ ମରିଯାଇଚି ସିନା ହାରି ଯାଇ ନାହିଁ । ହାର ସ୍ୱୀକାର କରିନାହିଁ । କରିମ୍ ଶେଷ ଯାଏଁ ଦଉଡା ଟାଣି ଘରକୁ ରକ୍ଷାକରିବାକୁ ଚେଷ୍ଟା କଲା । ପାରିଲାନାହିଁ

ପାଖପଡିଶା ମୁନିର୍ ଘର ଲୋକେ ଦି'ଘଣ୍ଟା ଆଗରୁ ବାହାରିଗଲେଣି ଗାଁ ସ୍କୁଲ୍ ଘରକୁ । ସେଠି ପଠାଣ, କଣ୍ଡରା, ବାଉରୀ, ବ୍ରାହ୍ମଣ, ପଧାନ ତେଲି, ଗୁଡିଆ କାହାରି ବାଛ ବିଚାର ନାହିଁ । ଜାତି ଅଜାତିର ଭେଦ ଏବେଳେ କିଏ ଦେଖୁଚି । ଗୋଟାଏ ଚୂଲି ! ଗୋଟାଏ ପଙ୍ଗତ । ଏକା ବିଛଣା। ଏକା ଅବସ୍ଥା ନେଇ ଏଠି ସଭିଏଁ ରହିଛନ୍ତି । କରିମ୍ ଭାବିଲା ଦେଖ ସ୍କୁଲ ଘରକୁ ପଳାଇବ । ହେଲେ ମୁହାଁଇ ହେଇ ପାରୁନି କୋଉଠି ? ଭୂଷ୍‌ଭାଷ୍ ନଡିଆ ଆମ୍ବ ଚାକୁଣ୍ଡାଗଛ ପଡୁଛି । ଘୁଘୁ କରାଳ ରୂପନେଇ ଗର୍ଜୁଛି ମେଘ । ଦିନର ମଳିନ ଆଲୁଅରେ ଦେଖିପାରୁଚି ସେ ବାଟ ଘାଟ ବନ୍ଦ୍ । ସ୍କୁଲ୍‌ଯାଏ ଯିବାକୁ ଲାଗିବ ଦେ'ଘଣ୍ଟା । ପିଲାଗୁଡାଙ୍କୁ ଧରି ଯିବା ଠିକ୍ ହେବ ନାହିଁ ।

ରାତି ହେଇଥିଲେ କେତେଯେ ଲୋକ ପଦା ହେଇଯାଇଥାନ୍ତେ, ଗଛତଳେ, କାନ୍ଥତଳେ, ଚାଳଘର ଭିତରେ ତାର ହିସାବ ନଥାନ୍ତା । ଦିନବୋଲି ରକ୍ଷା ।

ଅଗଣା ପାଚେରୀ ଭାଙ୍ଗିଯିବାରୁ ପିଲାମାନେ ପଳେଇବେ ପଳେଇବେ ହଉଛନ୍ତି ରହିମ ଘରକୁ ।

ଚାହୁଁ ଚାହୁଁ ଝଲକାଏ ପବନ ଆସି ଆଉଜେଇ ଦେଲା ଘର ଦି'ବଖରା । କରିମର ହୋସ୍ ଉଡିଗଲା । ଜୀବନ ବିକଳରେ ସାନପିଲା ଦି'ଟାକୁ କାଖରେ ଧରି ଧାଇଁଗଲା ଭାଇଘର ପିଣ୍ଡାକୁ । ପଛେ ପଛେ ନସିମନ୍ ବୋଉ ମୁଣ୍ଡରେ କଳଙ୍କି ଲଗା ଦସ୍ତାବାକ୍‌ସ ।

ରହିମ୍ ଦେଖୁଥିଲା ଝରକା ଫାଙ୍କରୁ କରିମ୍ ଆସୁଛିକି ନାହିଁ ।

"ଆହା ହାହାହା ....... ସରାଗ ଗୁଡାକ ଢାଳି ହେଇ ଯାଉଚି ଯେମିତି"କାଆଲି ସଂଜବୁଡ କଥା ଆଜିକି ପାଶୋର ? ମୁଁ ମରିଯାଉଁଥାଇଁଟି । ହେଇ ଶୁଣ କହିଦେଲି । ତାର ଆସିବାର ଅଛିତ ଆସୁ । ଆପଣାଛାଏଁ । ଆମେ କାହିଁକି ଡାକିବା ? ଏ ବେଳେ ବି ପେସ୍‌ଟିକ୍ ଲିଇକି ହେଇଯିବ ? ଗର ଗର ହେଇ ଶୁଣେଇ ଦେଲା ରହିମର ସ୍ତ୍ରୀ ହସିନା ।

ଧେତ୍ ! ଏ ବେଳରେ କେହି କାହାକୁ ଏମିତି କହନ୍ତି ? ସାତ ଶତ୍ରୁର ଶତ୍ରୁଯେ ମିତ୍ର ବନିଯାଏ ଏତେବେଳେ ପରା ! ଦଇବତ ସଭିଙ୍କି ଗୋଟେ ନାବରେ ବସେଇଚି । ସେଥିକି ପୁଣି ମଣିଷର କି ବହପ ?

ତୋବା ! ତୋବା !! ଏଭଳି କଥା ମୁହଁରେ ଧରନାହିଁ । ଦେଖୁଚଟି କେତେ ଲୋକ ପାଖ ସ୍କୁଲରେ ପଶିଛନ୍ତି ?

ବର୍ଷା ସହିତ ପବନ ବେଗ ବଢିଚାଲିଚି । ଅନ୍ଧାର ହେଇ ହେଇ ଆସୁଚି । ପିଲାଏ ବାରଣ୍ଡାରେ ଠିଆରହି ଓଦା ଥୁରୁ ଥୁରୁ ହେଇଗଲେଣି । ସ୍ତ୍ରୀ ନସିମନ୍ ବୋଉ ଦାଣ୍ଡ କବାଟରେ ଦି'ଥର ହାତମାରି ଗଲାଣି । ହସିନା କିଳିଣି ପକାଇଥିଲା । ଖୋଲି ନାହିଁ । ବର୍ଷାପବନ ପଶିଯିବ ଘର ଭିତରକୁ । ପଛିମା ଦୁଆର ପବନର ମୁହଁ ଝଲସାଇ ପଶିଯିବାକୁ ଉଦ୍ୟତ ।

ସଂଜପହରୁ ରାତି ନଅ ହେଲାଣି । ବାହାର ବାରଣ୍ଡାରେ ଠିଆ ରହିଛି କରିମ୍ । ପିଲାଏ ଥରୁଛନ୍ତି । ଦି'ଥର ହାତମାରି ଗଲାଣି କବାଟକୁ । କବାଟ ଖୋଲୁନି ଇଚ୍ଛା କଲେବି ଡାକିପାରୁନି ।

ଭାଇ ! ଭାଇମ !! କବାଟ ଖୋଲିଲ ? ବାହାରେ ଭୀଷଣ ବର୍ଷା ପବନ । ମୋ ଘରଦ୍ୱାର ସବୁ ଭାଙ୍ଗିଗଲା । ସଅଳ ଖୋଲ । ଏତିକି କହିବା ପାଇଁ କରିମର ତୁଣ୍ଡକୁ ଆସୁନି । ପେଟକଥା କଣ୍ଠଯାଏଁ ଆସି ଫେରିଯାଉଚି ତା ଯାଗାକୁ । ସେଇଠୁ ସେଇଠୁ ମିଳେଇ ଯାଉଛି ଆପେ ଆପେ ।

ନସିମନ୍ ବୋଉ କହିଲା - ହେଇ ତମେ ନଡାକିବ ନାଇ ମୁଁ କି ପିଲାଏ ଆମଭିତରୁ କେହି ଡାକିଲେ କ'ଣ ହେଲା ? କବାଟ ନ ଖୋଲିଲେ ଆମେ କ'ଣ କରିବା ?? ସେମାନେ କେମିତି ଜାଣିବେ ଆମେ ଆସି ଦାଣ୍ଡ ପିଣ୍ଡାରେ ଠିଆ ହୋଇଚେ ?

ନା ! ଥାଉ ! ଏଇଠି ଠିଆହବା ! ମେଘ ପବନ କୋଉରହିବ ? ଛାଡି ଯିବନି ?

କ୍ରୋଧୀ ମଣିଷର କ୍ରୋଧଠାରୁ ବିଶାଳତର ଓ ଉଗ୍ରରୂପ ହେଉଛି ପ୍ରକୃତିର କୋପ । ଏତେବଡ ଦର୍ଶନ କଥା କରିମ୍ କ'ଣ ବୁଝି ପାରୁଛି ।

ପ୍ରେତାତ୍ମା ପରି ଜିଭ ଲହଲହ କରି ମାଡିଆସୁଚି ବାତ୍ୟା । ଚାଟିନବ ଆଜି ଏସାରା ଇଲାକାର ଜୀବଜନ୍ତୁ ମଣିଷ ଆଉ ତାର ଗର୍ବଗୌରବ ଚିହ୍ନ ସଭ୍ୟତା, ସଂପଦ ସବୁକିଛି ।

ଟାଇଲିଟିଏ ଉଡିଆସି ପଡିଲା ନସିମନ୍‌ର କାନ୍ଧଉପରେ ବୋଉ ତାର କାନ୍ଦିଉଠିଲା ।

ରହିମ୍ ଘରଭିତରୁ ଧାଇଁ ଆସିଲା ଦାଣ୍ଡଦୁଆର ଯାଏଁ। ହସିନା ବି। କ'ଣ ହେଲା ବୋଲି ଧାଇଁ ଆସିଲା । ଭାବିଲା କବାଟଟା ଖୋଲି ଦବ । ରହିମ୍ ମନାକଲା ।

'ଆଉ' ତୁ ଖୋଲିଲେ କାଳେ ଆମକୁ ଦେଖିପକାଇବ । ଓଃ ! ଆମ ଉପରେ ଦୟାକରୁଛନ୍ତି ଭାବି ପଳେଇ ଯିବ । ତମେ ଚାଲିଆସ ।

ବର୍ଷା ସେମିତି ଲାଗିରହିଛି ଅବିରାମ୍ । ଏଥର କରିମ୍ ଛାତିତଳ ନରମ୍ ହୋଇଗଲା । ସେ ଧାଇଁଲା କବାଟ ଆଡେ। ହସିନା ରହିମକଥାରେ କବାଟ ଖୋଲୁଖୋଲୁ ହାତଫେରାଇ ନେଇ ମୁହୂର୍ତ୍ତେ ରହିଯାଇ ଥିଲେବି ରହିପାରିଲାନାହିଁ । ଫେରିଥିବା ଯାଗାରୁ ଝପ୍‌ଟି ଆସିଲା ଦୁଆର କିଳିଣି ଯାଏ ।

ବେଳେବେଳେ ପ୍ରକୃତି କଠିଣ ମଣିଷକୁ ପିଟିପିଟି ତରଳାଇ ଦିଏ । ଯେମିତି ଲୁହାକୁ ତରଳାଏ କମାର । ସୁନାକୁ ତରଳାଏ ବଣିଆ । ମଣିଷ ପିଟା ନଖାଇବା ଯାଏ ସାବାଡ୍ ହୁଏ ନାହିଁ କି ତାର ଚକ୍ ଚକ୍ ରୂପ ମୂଲ୍ୟବାନ ଧାତୁପରି ପଦାକୁ ଦିଶେନାହିଁ ।

ମେହେନ୍ଦୀ ଛେଚା ଖାଇଲେ ତାର ରଙ୍ଗ ବାହାରେ । ମଣିଷ ଛେଚା ଖାଇଲେ ତାର ଢଙ୍ଗ ବାହାରେ ।

ସେ ଯାଏ କରିମ୍ ଜାଣି ପାରିନି ଯେ – ତା ହାତ ତିଆରି ଏତେ ଯତ୍ନର ରଙ୍ଗବୋଳା ଘରଖଣ୍ଡିକ ଭାଙ୍ଗି ଗଲାଣି । ତା ଦୁହାଁଳଗାଇ କାନ୍ଥପଡି ମରିଯାଇଛି । କୁକୁଡା ବତକ କଥା ପଚାରେ କିଏ ? ବାରିପଟ ପାଚିଲା କଦଳୀ କାନ୍ଦି ଗଛ ସହ ଭାଙ୍ଗିଯାଇ ପଡିଚି ତଳେ । ଯେମିତିକି ତାର ସବୁକିଛି ଅହଂକାର ଭାଙ୍ଗିରୁଜି ଚୁରମାର୍ ହୋଇ ଯାଇଛି କ୍ରସରର କଳା ମୁଗୁନି ଚିପ୍‌ସ୍ ପରି ।

ରକ୍ତର ହେଇ ରକ୍ତଚିତା ନେବାର ଶପଥ ତାର ମିଳେଇଗଲା । ବାତ୍ୟା ଆଗରେ ପାଣିଫୋଟକା ପରି ନିଜ ବଳ ଓ ପରାକ୍ରମ ଉପରେ ଖୁବ୍ ଗୋଟାଏ ବିଶ୍ୱାସ ରଖିଥିବା କରିମ୍ ଆଜି କେତେ ଅସହାୟ ? କେତେ ଦୁର୍ବଳ । କେତେ ନିରୀହ ? ସେ ଆଜି ବୁଝିପାରିଚି ।

ଅର୍ଥ କ୍ଷମତା ଓ ପରାକ୍ରମଦ୍ୱାରା ସୃଷ୍ଟି କରାଯାଉଥିବା ଭୟ ଓ ଆତଙ୍କ ଦିନେ କାଳ ହୁଏ ନିଜର। ଏଟା ଭଲବାଟ ନୁହେଁ ।

ଦି'ଟୋପା ଲୁହ ଗଡିଗଲା ଆଖିରୁ ତାର । ଭାଇ ! ବୋଲି ଗୋଟଏ ବଡ ପାଟିରେ ଚିତ୍କାର କରି ସେ ପିଟିଦେଲା ପାହାରେ କବାଟକୁ । ସେତେବେଳେ ହସିନା ଭାଉଜ ଖୋଲି ସାରିଥିଲା କବାଟ ।

କାହାମୁହଁକୁ ନଚାହି କରିମ୍ ପଶିଗଲା ଘର ଭିତରକୁ । ପଛେ ପଛେ ନସିମନ୍ ବୋଉ ଓ ଛୁଆ ।

ରହିମ୍ ଆଖିବୁଜି ଡାକୁ ଥିଲା ମନେମନେ - ହେ ଆଲ୍ଲା ! ତୁ ମେହେର୍‌ବାନ୍ - ତୁମେହି ମହାନ୍ ।

କରିମ୍ ଭାଉଜକୁ ଧରି କାନ୍ଦୁଥିଲା କଇଁ କଇଁ ସାନ ଗୋଟେ ଅଝଟ ପିଲାପରି । ବାହାରେ ଶୁଭୁଥାଏ ଗୁଡମ୍ ଗୁଡ୍‌ମ !! ମହା ବାତ୍ୟାର ପ୍ରଳୟଙ୍କରୀ ଧ୍ୱନି ପଶି ପାରୁନଥିଲା କାହାରି କାନରେ। ଦୁଇ ପରିବାର ମିଶି ଘୋଳି ହୋଇଗଲେ ।

ପ୍ରକୃତି ହସୁଥିଲାକି କ'ଣ?

ରହିମ୍ ଭାବୁଥିଲା - ଆଃ ! ଏ ବାତ୍ୟାଟା କାହାର କଅଣ ନେଇଗଲା କେଜାଣି, ମୋତେ ତ ଦେଇଗଲା ମୋର ହଜିଲା ଦରବ ମୋଭାଇ। ଆଉ ଦି'ଚାରି ବର୍ଷ ଆଗରୁ ଆସିନଥାନ୍ତା ???



# ମଡା

ଠିକଣା ସ୍ଥାନରୁ ଇଞ୍ଚେ ବି ଘୁଞ୍ଚୁନାହିଁ ଲାସ୍ ।

ପଡିଛି ଆସି ହେଲାଣି ପ୍ରାୟ ୧୦/୧୨ ଘଣ୍ଟା ବେୱାରିସ୍ କି ଲାୱାରିସ ଯେମିତି ।

ଦିନ ୧୦ଟା ବେଳକୁ ହୁଇଲ୍ ଷ୍ଟ୍ରେଚର୍‌ରେ ଆଣି ଶୁଆଇ ଦେଇଗଲେ ଡାକ୍ତରଖାନାର ବେହେରା, ସୁଇପର୍ । ବାରଣ୍ଡାର ଗୋଟାଏ କଡକୁ । ମାଛି ଲାଗିଲେଣି ଭଣଭଣ । ବାରଲୋକ ବାରକଥା କହିବା ଆରମ୍ଭିଲେଣି ଡାକ୍ତରଖାନା ଷ୍ଟାଫ୍‌ମାନଙ୍କୁ । ହାଡିଭାଇମାନେ ଟାକି ବସିଛନ୍ତି କେତେବେଳେ କିଏ କହିଦବ - ଉଠାଅ, ଉଠାଅ ଲାସ୍ ବେୱାରିସ୍ । ଆୟୋଡିନ୍ କୁଣ୍ଡରେ ପକାଇ ସ୍କେଲ୍‌ଟନ ବିକିଦେଲେ ଭଲ ଦି'ପଇସା ହେଇଯିବ ତାଙ୍କର ।

ଜୀବ ଥିବାଯାକେ ତେଲ, ସାବୁନ, ଅତର ଓ ନାନା ପ୍ରଲେପରେ ମଣିଷ ସଜାଉଥାଏ ତା' ଦେହ । ମଲାପରେ ତା'ଶହେ ଛ'ଖଣ୍ଡି ହାଡରେ ଲାଗିଥିବା ଏତେ ସୁନ୍ଦର ମାଂସ ପୁଳାର ଯେ କି ହାଲତ,ଅବସ୍ଥା ହୁଏ, ତା' କିଏ କହିବ ? ପ୍ରତ୍ୟକ୍ଷ ଦର୍ଶୀ ହିଁ କହିପାରିବ ।

ମଣିଷ ପରି ଏକ ସର୍ବଶ୍ରେଷ୍ଠ ସ୍ୱାର୍ଥପର ଅକୃତଜ୍ଞ ଜୀବ ହୁଏତ ଅଛି ଭାବି ଖୋଜିଲେ ସଂସାରରେ ମିଳିବ ନାହିଁ ।

ଚୌଧୁରୀ ରଣବୀର ସିଂହଙ୍କର ହାର୍ଟ୍ ଆଟାକ୍ ହେଲା ପଅରଦିନ ସକାଳ ଛଅଟାରେ । ଆଇସିୟୁରେ ରହିଲେ ରାତି ଦୁଇଟାଯାଏଁ । ସଂଜ୍ଞା ଫେରିଲା ଦିନକ ପରେ ପୁଣି ହେଲା ସେକେଣ୍ଡ ଷ୍ଟ୍ରୋକ୍ । ତା'ପରେ ସବୁ ଶେଷ । ଡିକାଲାର୍ଡ୍ ଡେଥ୍ ।

ସିଂହ କହିଲେ-ସେ ପଞ୍ଜାବୀ ସିଂହ ଥିଲେ । ଓମ୍‌ପଡା ସିଂହ ସାହିର ଖଣ୍ଡାୟତ । କେବେ ସେମାନଙ୍କର ଖଣ୍ଡା ଥିଲା ବୃତ୍ତି । କୋଉ ରାଜପୁତନାରୁ ଆସିଥିଲେ ତାଙ୍କର ପୂର୍ବପୁରୁଷ । ଯୁଦ୍ଧ ଥିଲା ତାଙ୍କର ମୂଳ ଜାତିଗତ ବୃତ୍ତି । ଯୋଦ୍ଧୃଜାତି ଯେତେବେଳେ ଯୁଦ୍ଧ ନାହିଁ ଆଦରି ନେଲା କୃଷିକର୍ମକୁ ନିଜର ବୃତ୍ତିକରି । ଏବେବି

ବାରହାତ ଖଣ୍ଡା ଘରେ ରହିଛି , ତାଙ୍କର। ପୂଜା ହୁଏ କେଇ ପୁରୁଷ ହେଲା । ଲେଖା ହୋଇଛି ଆରବୀରେ କୁଟା ଅକ୍ଷର । ଖଣ୍ଡାଧାରୀ ହୋଇଥିବାରୁ ଖଣ୍ଡାୟତ । କ୍ଷେତକୁ ମାନିନେଇଥିବାରୁ କ୍ଷତ୍ରୀୟ । ଏଇମିତି ସୋଜାସୁଜି ଅର୍ଥରେ ରଣବୀର ଚଳାଉଥିଲେ ଏକ ଜମିଦାରୀ ।

ମୂଳ ମରିଚପୁର ଜମିଦାରୀର ସବା ସାନଅଂଶ ରଣବୀରଙ୍କ ବାପା ଥିଲେ ଜମିଦାର ଭାନୁପ୍ରତାପ ସିଂହ । ଭାନୁପ୍ରତାପଙ୍କର ପିତା ରୁଦ୍ରପ୍ରତାପ ସିଂହ ଥିଲେ ଜମିଦାର। ତାଙ୍କର ତିନିପୁଅ ବିନୟ ପ୍ରତାପ, ବିଜୟ ପ୍ରତାପ ଓ ଭାନୁପ୍ରତାପ । ମୂଳ ଜମିଦାରୀ ଭାଗଭାଗ ହୋଇଯିବା ପରେ ଖଣ୍ଡେ ଚକଡା ପଡିଛି ସବାସାନ ଅଂଶ ଭାନୁପ୍ରତାପଙ୍କ କଛରେ । ଭାନୁପ୍ରତାପଙ୍କ କଛରେ ବଡଅଂଶ ରଣବୀର ଅପୁତ୍ରିକ । ଚାରିକନ୍ୟାର ଜନକ । ତାଙ୍କ ସାନଭାଇ ଧରମବୀର୍ ସିଂହଙ୍କର ଦୁଇ ପୁଅ । ରହନ୍ତି ଦିଲ୍ଲୀରେ । ପଡେନାହିଁ । ବଡବାପା ରଣବୀରଙ୍କ ସହିତ, ଧରମବୀରଙ୍କ ପତ୍ନୀ ରୂପମତୀଙ୍କର । ପୁଅମାନେ ବଡବାପାଙ୍କୁ ଯେତେକରି ଡାକିଲେ ରଣବୀର ମିଶିନଥିଲେ କୋଉ କାମରେ । ଝିଅ ଜୋଇଁମାନେ ଆସିଯିବେ ବୋଲି ମନା କରି ଖବର ଦେଇଥିଲେ ଆଗତୁରା । ଶ୍ୱଶୁରଙ୍କ ଭୟରେ କେହି ଆସିନଥିଲେ । ଧରମବୀରଙ୍କ ପିଲାଙ୍କୁ ପଚାରିଲେ କହନ୍ତି- "ବଡବାପା ତ ଆମର ସବୁନେଲେ । ଜମି, ଜମାପାଣ୍ଠି, ସୁନା ରୂପା, ଆସବାବପତ୍ର । ବୋଉ ତ ସ୍ତ୍ରୀଲୋକଟା । ଆମ ଉପରେ କାଳେ ଶତ୍ରୁତା କରିବେ ଭାବି, ସବୁ ଜାଣି କିଛି କହିନାହିଁ । ମାନିନେଲା ସବୁ ନୀରବରେ । ସେ କହୁଥିଲା। ଟିକିଏ ଅମାନ୍ୟ ହୋଇଥିଲେ ଆମର କି ଯେ କ୍ଷତି ହେଇଥାନ୍ତା !!"

କଡା ମିଜାଜ୍‌ର ଲୋକ ଥିଲେ ରଣବୀର । ଓମ୍‌ପଡା ପଞ୍ଚାୟତରେ ସେ ଏକ ପ୍ରଭାବଶାଳୀ ଚରିତ୍ର । ନେତାମାନଙ୍କ ଆଗରେ ଯେତିକି ଟାଣ, ପୁଲିସ ଫାଣ୍ଡି କୋର୍ଟ କଚେରୀ ଲୋକଙ୍କ ଆଗରେ ତହୁଁ ବଳି । ଦୁଇ ଦୁଇଥର ସରପଞ୍ଚ ରହିଛନ୍ତି ଓମ୍‌ପଡା ପଞ୍ଚାୟତର । ଏବେ ଥିଲେ ଜିଲ୍ଲା ବୋର୍ଡର ଚେୟାରମ୍ୟାନ୍ ।

ଭୟଭୀତ କରାଇଦେବା ତାଙ୍କ ପାଖରେ ଥିଲା ସବୁଠାରୁ ବଡ ଅସ୍ତ୍ର । କି ଅଫିସର, କି ଥାନା ଦାରୋଗା କି ସାଧାରଣ ଲୋକ ତାଙ୍କ ମୁହାଁମୁହିଁ ହେବାକୁ କେହି ସାହାସ କରନ୍ତି ନାହିଁ । ଆଇନ୍ କାନୁନ୍ ମୁହେଁ ମୁହେଁ ଘୋଷାପଦ । ଜମିଜମା ନକ୍‌ସା ତାଙ୍କ ନଖଦର୍ପଣରେ ଥୁଆ । ପଞ୍ଚାୟତ ଗୋଟାକର ବାହେଲି, ଲାଖରାଜି, ପୀରୋତ୍ତର, ଦେବୋତ୍ତର, ଅମୃତମଣୋହି, ନଈ, ନାଳ, ଯୋଡ, ପାଟ, ତୋଟା କାହାର ନିଜାତିସ୍ୱତ୍ୱ କାହାର ବାହେଲି ସ୍ୱତ୍ୱ , କାହା ବାଡି ଭିତରେ ପଶି କିଏ ଘର କରିଛି, କିଏ ଗଡିଆ ଖୋଳିଛି । ସବୁ ଥୁଆ ହୋଇଥିଲା ଜିଭ ଅଗରେ । ଲୋକେ ଡରନ୍ତି ଜମିବାଡି ହିସାବ ନେଇ ।

ଅଫିସର ମନା କଲେ କାହାକୁ କିପରି ସାଧି ହବ ସେ ମନ୍ତ୍ର ଜଣାଥିଲା ରଣବୀର ସିଂହଙ୍କୁ । ସଭା ସମିତିରେ ଠୋ ପଟାସ୍ ଭାଷଣ । ଡର କି ଭୟ ନଥିଲା କାହାକୁ ।

ଛଅମାସ ତଳେ ସେ ଗୋଟାଏ ସଭାରେ ଥାନାବାବୁ ଓ ତହସିଲ୍‌ଦାରଙ୍କୁ ଖୋଲାଖୋଲି ଧମକାଇଲେ- "ତହସିଲ୍‌ଦାର ମହାଶୟ ! ଭାବନ୍ତୁ ନାହିଁ ଯେ ସେ ଏ ଏରିଆର ଲ'ଅଫିସର୍ । ଆଇନ୍‌କାନୁନ୍ ପରିସ୍ଥିତି ସୃଷ୍ଟି ହେଲେ ସେ ତାଙ୍କର କ୍ଷମତା ଜାହିର କରିପାରିବେ । ହେଲେ ତାଙ୍କ ଉପରେ ଆଉ ଯେ କିଏ ଏଠି ଲ'ଅଫିସର୍ ଅଛନ୍ତି ତାଙ୍କୁ ସେ ଭୁଲିଯାଉଛନ୍ତି ! ସେ ହଉଛି ଜନତାଙ୍କ ପ୍ରତିନିଧି, ଅଫିସରଙ୍କ କାର୍ଯ୍ୟକଳାପର ଗୋଇନ୍ଦା । କୌଣସି ଗୋଟେ କାମ ତା' ଅଜଣାରେ ହେଉନାହିଁ । ଖୋଲିଦେଲେ କିଏ କାହା ଉପରେ ଆଇନ୍‌ର ରାଜୁତି କରିବ ଜଣା ପଡିଯିବ ।

ଥାନା ଭାଇ ମୋର ଅଳ୍ପଅଳ୍ପରେ କାମ ରଫା ଦଫାକରି ଦେଉଛନ୍ତି । ଅବଶ୍ୟ ଗୋଟେ ଯୋଡେ କାମ ମୋ' କାନକୁ ଆସିଛି ଟିକେ ଚଢା ଦରର । ଦଫା ଜୋର୍‌ଦାର ନ ଥାଇ ଅଙ୍କ ମୋଟା ହେଲେ କଥା ଓଲଟା । ଅପରାଧୀମାନେ କୁହାଟ ମାରୁଛନ୍ତି ରାସ୍ତାଘାଟରେ । ସେମାନଙ୍କ ସାଙ୍ଗେ କି ଭାବ ଅଛି ଥାନା ଭାଇଙ୍କର ତା'ମୁଁ ଜାଣେନା । ବେଆଇନ୍ ବାଟ ଧରିଲେ ଯିବେ ଜନତାଙ୍କ ଦରବାରକୁ । ବିଚାର ହେବ ସେଇଠି । ଅପରାଧ ରୋକିବାକୁ ଯାଇ ଅପରାଧୀ ହେଲେ ମୁଁ କ'ଣ କରିବି ?"

ଭୋଟ୍ ଆସିଗଲା ତ ଦେଖ ନେତାଙ୍କର ଲାଗିଗଲା ଭିଡ । କଅଁଳେଇ, ଫୁସୁଲେଇ, କାହାକୁ ଧମକେଇ, ଚମକେଇ, ନୋଟ୍‌ବିଡା ଲୁଟେଇ ବାସ୍ ରୁଣ୍ଡେଇ ନେଲେ ଭୋଅଟ । ତା'ପରେ ଆଉ ସାକ୍ଷାତ ନଦାରଦ । ଯଦି ତାଙ୍କଠି କୌଣସି କିଛି କାମ ଅଛି ତ ଧର ରଣବୀର ସିଂହ ଭାଇନାକୁ । ମୁଁ ଜନତାଙ୍କ କଥାକୁ ଆଉ ଏତେ ଗୋଡ ଲମ୍ୱେଇ ଶୁଣିପାରିବି ନାହିଁ । ମୁଁ ନେତାଙ୍କୁ କେବେ ଭୟ କରିନାହିଁ । ଭୋଟ ବେଳେ ଯେମିତି ଆସୁଥିଲ, ଅନ୍ୟବେଳେ ରଣବୀର ଭାଇନା ପାଖକୁ ସେମିତି ଆସ । ନଇଲେ ଦେଖାଦେଖି ହବା ଆର ଭୋଅଟକୁ । ଯିଏ ନ ଆସିବ ତମ ଗାଁକୁ ଛ'ମାସ ବର୍ଷରେ ଥରେ, ମନେରଖ ! ତାକୁ ପୂରେଇ ଦବନାହିଁ ଗା'ରେ ଆର ଇଲେକ୍ସନ୍‌କୁ । ଦେଖିବା କ'ଣ ହବ । ମୁଁ ଅଛି ତମ ପଛକୁ । ରାଜନୈତିକ ଦଳର ହାଲ୍ ଡର ରଣବୀର ସିଂହ ଜମିଦାର୍‌କୁ ।

ନ୍ୟାୟ ନିଷାପରେ ରୋକ୍‌ଠୋକ୍ କଥା । କି ମନ୍ତ୍ର ଅଛି ସେ ତୁଣ୍ଡରେ କେଜାଣି । ଅଛିଣ୍ଡା କଥା ଛିଣ୍ଡିଯିବ ମାତ୍ର କଥା ଦି'ପଦରେ ।

ଗାଁ'ର ଜଣେ ପୁରୁଖା କହୁଥିଲେ- 'ରଣବୀର ଯାହା ସାଙ୍ଗେ ଲାଗିନି, ଲାଗିନି । ଯାହା ପଛରେ ସେ ପଡିଗଲା, ଜାଣିବ ତା'ର ଚେରମୂଳ ଉପାଡି ଫୋପାଡି ଦବ । ନାକ ରଗଡେଇ ଛିଣ୍ଡେଇ ଦବ । ତା'ଇଙ୍ଗିତରେ ରାଜୁତି ଚାଲେ ଏଠି । କି ରଜା କି ପ୍ରଜା ସଭିଏଁ ତା କଥାରେ ବସ ।

---

ପାଖ ଗାଁରେ ସରପଞ୍ଚ ଇଲେକ୍ସନ୍ ବେଳେ ଦି'ଦିଟା ମର୍ଡର ହେଇଗଲା । କହନ୍ତି ତହିଁରେ ହାତ ଥିଲା ରଣବୀରର । ଉଡିଗଲା ସେ କେଶ୍ ବାଏଁ ବାଏଁ । କୋର୍ଟ କଚେରୀ ହାକିମ ତା' ଯୁକ୍ତି ଆଗରେ ହାର୍ ମାନି ଛାଡିଦେଲେ ମୁଦାଲାମାନଙ୍କୁ । ମୁଦେଇ ପାଇଲେ ସରକାରଙ୍କଠୁ ସାହାଯ୍ୟ । କଥା ଛିଣ୍ଡିଗଲା । ସବୁ ଯେମିତିକୁ ସେମିତି ପୂର୍ବପରି ।

ସମାଜରେ ଭୟର କୁହେଳି ରଚନା କରୁଥିବା ଧନୀ ଓ କ୍ଷମତାଧାରୀମାନେ ଲୁଟନ୍ତି ସମାଜକୁ ଅଗୋଚରରେ ।

ଆଇନ୍ କାନୁନ୍ ଗରିବଗୁରୁବାଙ୍କ ରକ୍ଷା କବଚ ଓ ମାରଣଯନ୍ତ୍ର ହେଲେ ଧନୀ ପୁଞ୍ଜୀପତିମାନଙ୍କର କ୍ଷମତା ଓ ଧନ ଉପାର୍ଜନର ସାଥୀ ସହୋଦର ।

ସରପଞ୍ଚରେ ଥିଲାବେଳେ ଥରେ ଧରା ହୋଇଥିଲେ ରଣବୀର ସିଂହ କଣ୍ଟ୍ରାକ୍ଟରୀ ବେପାର କରୁଛନ୍ତି ବୋଲି । ଯା ତା ନାଁରେ କାମ ପାରିତ କରେଇ ଭିଲେଜ କମିଟିରେ ଟଙ୍କା ଖଟେଇ ବୋହି ନିଅନ୍ତି ସବୁ ଧନ ନିଜ ଘରକୁ । ମୋହରା ହୁଅନ୍ତି କେଇଟା ବେକାର ଟୋକା ପଞ୍ଚାୟତର । ଧରପକଡ ହେଲେ ରଣବୀର ଧୋଇଧାଇ ସଫାସୁତୁରା । ଟିକେ ବି ଦାଗ ନାହିଁ କି ଛିଟା ପଡେନା ଦିହରେ । ସେଥର କଥା କୁଆଡେ ଗଲା । ସସ୍‌ପେଣ୍ଡ୍ ରଣବୀର ପୁଣିଥରେ ଫେରିପାଇଲେ ସରପଞ୍ଚ ପୋଷ୍ଟ୍ ।

ଧନ ସାଉଁଟିବା ଗୋଟାଏ ଟ୍ରିକ୍ । ଯାହାକୁ ଜଣାଅଛି ସେ ଲାଲେଲାଲ୍ । ଯାହାକୁ ଜଣାନାହିଁ ସେ ନିକମା ବେହାଲ । ଖାଲି ନିନ୍ଦା କରେ ନିଜକୁ ଓ ବଖାଣିବସେ ଅନ୍ୟର ଦୋଷ ଦୁର୍ବଳତା । ଲୋକେ କହନ୍ତି– "ସେ ତ ସୁନା ଚାମଚ ନେଇ ଜନମ ହୋଇଛି । ତାଙ୍କର ତ ଧନ ଉପରେ ଧନ କୁଡେଇ ହେଇ ଯାଉଛି । ଯାହାର ନାହିଁ ତ ନାହିଁ । ଦିନ କଟୁଛି ବଡ ଟାଣଟୁଣରେ ।"

ରଣବୀର ତୋଳିଛି ଘର ବୋପା ଅଜାର ଭିଟା ମାଟି ଉପରେ, ଦେଖିଲାଭଳି । ଆଧୁନିକ କୌଶଳର ଜୀବନ୍ତ ପରିଭାଷା ଫୁଟିଉଠୁଛି ଘରର କାନ୍ଥରେ, କବାଟରେ । ଭିତର ପରୀମହଲ । ପଶିଗଲେ ଇନ୍ଦ୍ରଜାଲରେ ଛନ୍ଦି ହେଇଯିବାର ସମ୍ଭାବନା । ରଣବୀର କହେ– "ଏଥେରେ ଭାଇ ଅନେକ ପଇସା ଖର୍ଚ୍ଚ ହୋଇଗଲା । ତିନିତିନିଟା ଆରକିଟେକ୍ଟ ଆସି ପଇସା ନେଇଗଲେ । ଜଣେ ଇନ୍‌ଡୋର୍, ଜଣେ ଆଉଟ୍‌ଡୋର ଡିଜାଇନ ଆଉ ଜଣେ କଲର୍ କମ୍ବିନେସନ୍ ପାଇଁ । ଯା ତୁଳନାରେ ବାଙ୍ଗାଲୋର୍ ଘର କିଛି ନୁହେଁ । ମୁଁ ଏଠି ନିଜେ ଦେଖାଶୁଣା କରି କାମ କଲି । ବାଙ୍ଗାଲୋର୍ ଘରଟା କିଣାହେଲା । ସମାନ ହବ କେମିତି ?"

ଦୁର୍ନୀତି ବିଭାଗ ବାଲା ଥରେ ଆସି ରେଡ୍ କଲେ । ଘରୁ ତ କିଛି ପାଇଲେ ନାହିଁ । କେବଳ ଘରର ମୂଲ୍ଯ କରିଗଲେ । ଆଜିକାଲିକା ବଜାର ଦରରେ ଘରର ଦାମ ହେବ ଅତିକମ୍‌ରେ ଦି'କୋଟି ଟଙ୍କା ।

ଏତେ ଟଙ୍କା ଆସିଲା କେଉଁଠୁ ? ସ୍ତ୍ରୀ ନାଁରେ ଚାଲିଥିଲା ଦଶ ବାର ଖଣ୍ଡ ବସ୍‌ରୁ କେତେ ଆସିବ କି ? ବାକି ରହିଲା ନିଜ ନାଁରେ କଣ୍ଟ୍ରାକ୍ଟରୀ ଲାଇସେନ୍ସ । ରେଳବାଇ କଣ୍ଟ୍ରାକ୍ଟର । ପାୱାର ଅଫ୍ ଆଟର୍ଣ୍ଣି ଦେଇ କାମ କରାଏ । ପୋଷା ଲୋକଙ୍କ ନାଁରେ । ଟଙ୍କା ସେ ଉଠେଇବ । ନବ ରଣବୀର । ସବୁ ପ୍ରକାର ଆୟ ସହିତ ଫାର୍ମ ହାଉସ୍ ଆୟ ମିଶିଲେ ବି ଦେଶର ଦି' ଦି' ଯାଗାରେ ଠିଆ ହୋଇଥିବା ଏଡେ ଏଡେ ଇମାରତ୍‌ର ମୂଲ୍ୟ ଟପିଯିବ ସବୁ ଆୟକୁ ।

ଇନ୍‌କମ୍ ଟ୍ୟାକ୍ସ ବାଲା କଷିଦେଲେ ଦଶଲକ୍ଷ ଟଙ୍କାର ଆୟକର ଫାଙ୍କି । ଦୁର୍ନୀତି ବିଭାଗ ଖୋଳତାଡ କରି ପାଇଲେ ଆୟ ବହିର୍ଭୂତ ପଚାଶଲକ୍ଷ ଟଙ୍କାର ହିସାବ ମିଳୁନି । ଉଣ୍ଡି ଉଣ୍ଡି ତିନିବର୍ଷରେ ଧରିଲେ- 'ଦେଶୀ ମଦଭାଟି' । କାଗଜପତ୍ର କିଛି ନାହିଁ । ଲକ୍ଷ ଲକ୍ଷ ଟଙ୍କାର ପଲିପ୍ୟାକ୍ ବିକ୍ରି ଚାଲିଛି ।

ଠୋସ୍ ପ୍ରମାଣ ନେଇ ସାମନାରେ ଉଭାହେଲେ ଦୁର୍ନୀତି ବିଭାଗବାଲା । ସାଙ୍ଗରେ ପୋଲିସ୍ ଫୋର୍ସ । ମଦ ଆଡ୍ଡାରେ ବରାଦ କରୁଚି ରଣବୀର । ଏଠୁ ଖସିବାର ଉପାୟ ନଥିଲା । ଷାଠିଏ ପଁଷଠି ବର୍ଷ ଜୀବନ କାଳରେ କେହି ରେ'ପଦ କହିବାକୁ ସାହାସ କରି ନଥିଲା । ଆଜି ହାତରେ ପଡିଗଲା ଚୋର ତସ୍କରଙ୍କ ଚିରସାଥୀ, ହାତର ଅଳଙ୍କାର ହାତକଡା ।

କଥାରେ ଅଛି 'କାହାରି ସବୁଦିନ ସମାନ ଯାଏନି' । ବେଲ୍ ନ ପାଇ ରଣବୀର ରହିଲା ଜେଲ୍‌ରେ ତିନିମାସ । ଏ ତିନିମାସ ତା'ଜୀବନର ସବୁଠାରୁ ଦୁଃଖମୟ କାଳ । ଜେଲ୍‌ରୁ ଫେରିଲା ପରେ ରଣବୀରଙ୍କୁ କେହି ଆଉ ଦେଖିନାହିଁ ଗାଁ ରାସ୍ତା, ପଞ୍ଚାୟତ ଘର କି ନ୍ୟାୟ ନିଷାପ ପେଣ୍ଡାଲ୍‌ରେ ।

ମଣିଷ ଥରେ ଲୋକଲୋଚନରୁ ଅଦୃଶ୍ୟ ହୋଇଗଲେ, ତାକୁ ଭୁଲିଯାଏ ଜଗତ । ଭୁଲିଯାଆନ୍ତି ଜନତା ।

ମେଡିକାଲ୍‌ରେ ପଡିଲାବେଳେ ଅବଶ୍ୟ କେଇଜଣ ଶୁଣାଶୁଣି ଯାଇଥିଲେ ଦେଖିବାକୁ । କଥା ବାହାରୁ ନଥିଲା କଣ୍ଠରୁ । ଅସ୍ପଷ୍ଟ ସ୍ୱରରେ ରଣବୀର ଯେମିତି ଯାହାକୁ ଦେଖୁଥିଲା କହୁଥିଲା-

"ତମେମାନେ ମୋତେ କ୍ଷମା କରିଦେବନି ? ଖୁବ୍ ଅନ୍ୟାୟ କରିଛି ମୁଁ ତମମାନଙ୍କ ପ୍ରତି । କେଇଟା ଧନ ପାଇଁ ମୁଁ ଯେତେ ଅବିଚାର କରିଛି ସେଥିପାଇଁ ହାତ ଯୋଡି କ୍ଷମା ମାଗୁଛି । (ହାତକୁ ଶୋଇବା ଜାଗାରୁ ଉଠାଇବାର ଯତ୍ନ କରେ,

ଉଠିପାରେନା ।) ମୁଁ ଆଉ ବଞ୍ଚ ପାରିବିନାହିଁ ।" ଏ ସବୁ ଧନ... କ'ଣ ଯେମିତି ସଅଁପି ଦେବାକୁ ଚାହୁଁଥିଲା ରଣବୀର ଲୋକମାନଙ୍କୁ । ବୁଝା ପଡୁନଥାଏ ତା' ସ୍ୱର ଓ ଇଙ୍ଗିତରୁ ।

ଗଲା ଦଶ ବାରଘଣ୍ଟା ତଳେ ଖବର ଚହଟିଗଲା- 'ଓମ୍‌ପଡା ସରପଞ୍ଚ ଜମିଦାର ରଣବୀରଙ୍କର କାଳ ହୋଇଗଲା ।' ସେ ଅଞ୍ଚଳରେ ଅବଶ୍ୟ କେଇଜଣ ଖୁସି ମନେଇଥିବେ । ସବୁଠୁ ବେଶୀ ଖୁସି ହୋଇଥିବ ଚାରୁଲତା। ଘରର ମୁଖ୍ୟ ଚାକରାଣୀ ଓରଫ ରକ୍ଷିତା ମାଲିକାଣୀ । ସେବା କରେ ଜମିଦାରଙ୍କର । ହିସାବ ପତ୍ର ରଖେ । ଦବାନବା କରେ । ଜମିଦାରଙ୍କୁ ଜମା ଖରଚ ବୁଝାଏ । ଧାନ, ବିରି, ମୁଗ, ନଡିଆ, କଦଳୀ, ମାଛ, ଗଛ ବିକାରୁ ଆୟ ହେଲା କେତେ ବ୍ୟୟଗଲା କେତେ ? ହିସାବ ବୁଝି ଟିପି ରଖନ୍ତି ଖାତାରେ ଜମିଦାର ।

ଗଲାଛଅ ବର୍ଷ ହେଲା ଆସିଯାଇଛି ଅଡା ତା'ହାତକୁ । ସାନଝିଅ ମୀନାର ବାହାଘର ଦର୍ଷ ସ୍ତ୍ରୀ ସୁରଭି ଚାଲିଗଲା, ବ୍ରେନ୍‌ମ୍ୟାଲେରିଆରେ । ବହୁତ ଟଙ୍କା ଖର୍ଚ୍ଚ ହେଲା । ଫଳ କିଛି ହେଲା ନାହିଁ । ଜର ଚଢି ଯାଇଥିଲା ମୁଣ୍ଡ ଉପରକୁ । ଘରେ ନିଜର କେହି ବୋଲି କେହି ନାହାନ୍ତି ।

ବଡ ଝିଅ ରହେ ବାଙ୍ଗାଲୋର୍‌ରେ । ଜୋଇଁର ଚାକିରୀ ସଫଟ୍‌ଓ୍ୱାର୍ ଇଞ୍ଜିନିୟର୍ । ଫ୍ଲାଟ୍ କିଣି ରହିଯାଇଛି ସେଠି । ପୁଅଝିଅଙ୍କ ପାଠପଢା, ଚାକିରୀ ଛାଡି ଆସିପାରିବ ନାହିଁ ।

ବଡ ମଝିଆ ରହେ ହାଇଦ୍ରାବାଦ୍‌ରେ । ଜୋଇଁର ବିଦେଶୀ କମ୍ପାନୀ ଚାକିରୀ । ଏମ୍‌ବିଏର ଭଲ ଛାତ୍ର । ମୁହୂର୍ତ୍ତେ ବି ଫୁର୍‌ସତ ନାହିଁ । କମ୍ପାନୀର ସବୁତକ ଗୁରୁତ୍ୱପୂର୍ଣ୍ଣ କାମ ତା' ହାତରେ । ଛୁଟିନାହିଁ କହିଲେ ଚଳେ । ମାସକୁ ଦରମା ପଚାଶ ହଜାରରୁ ଅଧିକ ।

ସାନ ମଝିଆଁ ଥିଲା ବମ୍ବେରେ । ଛଅ ମାସ ତଳେ ଜୋଇଁଙ୍କର ପୋଷ୍ଟିଂ ହୋଇଛି ସିଙ୍ଗାପୁର୍। ପ୍ରମୋଶନରେ। ଯିବାର ଆୟୋଜନ ଚାଲିଛି । ପିଲାଙ୍କ ପରୀକ୍ଷା ସରିଲେ ଯିବ ଚାଲି ସିଙ୍ଗାପୁର ।

ସାନଝିଅ ମୀନା ବର ଡାକ୍ତର । ରହେ ଏଇ ପାଖ କଲିକତାରେ । ବର୍ଷରେ ଦି'ଥର ଆସେ । ଦେଖାଶୁଣା କରେ । ବାପା ଓ ବୋଉର ସେ ଥିଲା ବଡ଼ ଗେହ୍ଲାଝିଅ । ପଦେ ପଦେ କଥାରେ କେତେବେଳେ କ'ଣ କହିଦେଲେ ଚାରୁଲତା ଅଭିମାନଭରା ଆଖି ଲୁହରେ ଧମକାଏ ଜମିଦାର ରଣବୀରଙ୍କୁ- "ମୋତେ ମୋ ବୋଉ ପାଖରେ ଛାଡିଦିଅ । ମୋ ଗରିବୀ ମୋତେ ଭଲ । ଦି'ଓଳିରେ ଓଳିଏ ନଖାଇବି ପଛେ, ମୋତେ କେହି ରେ' ପଦ କହିବାକୁ ନାହିଁ । ତମର ଏ ସୁଖଭାତ ମୋର ଲୋଡାନାହିଁ । ଏତେ ଗାଳିଗୁଲଜ ଅପାମାନ ଖାଇ ଖାଇ ମୋ କାନ ବଧିରା ହୋଇଗଲାଣି । ମୋର

ତ ପୁଣି ତିନିଚାରି ଭାଇ ଭଉଣୀ ପରର ପାଇଟି କରି ଚଳୁଛନ୍ତି । ହାତଗୋଡରେ ବଳ ଥିଲେ ମୁଁ କ'ଣ ଚଳି ପାରିବିନାହିଁ ?" ଜମିଦାର ଥକ୍କା ହୋଇ ବୁଝାଇ ଦିଅନ୍ତି- "ଧେତ୍ ! ଏଇ ବୋଲି ଗୋଟେ କଥା ? ଦେ କାନ୍ଦେନା । ମୀନା ଗୋଟେ କୋଉ ବଡ ମଣିଷ ହେଇଗଲାଣି । ତୋ ଝିଅ ବୟସର । ତା'ର ପୁଣି ଗାଳି ? ଥା ମୁଁ ତାକୁ ପଚାରିବି। କାହିଁକି ତତେ ସେ ଏମିତି କହିଲା ।"

ଚାରୁ ଜାଣେ ଜମିଦାରଙ୍କୁ ଆପଣାର କରିବାର ଆଉ କୋଉ ଉପାୟ କାମ କରିବ ନାହିଁ । ଅଭିମାନ ଭରା ଆଖି ଲୁହ ହେଲା ସବୁଠୁ ବଡ ଅସ୍ତ୍ର ।

ଯୁଗେ ଯୁଗେ ପୁରୁଷ ନାରୀର ଲୁହ, ଅଭିମାନ ଓ ଆକର୍ଷଣ ନିକଟରେ ହାର୍ ମାନିଛି । ପଥର ଛାତି ତରଳି ପାଣି ହୋଇଯାଇଛି । ସଙ୍ଗୀତରେ ବଶ ହୋଇଯାଏ ସର୍ପ । ସେବାରେ ବଶ ହୋଇ ପାଦଚାଟେ ବ୍ୟାଘ୍ର । ସେବା କାର୍ପଣ୍ୟ ଭକ୍ତି ବଳେ- କିବା ଅସାଧ ଏ ମହୀତଳେ ? ରଣବୀର କିବା ଛାର ।

ଖବର ଶୁଣି ଚାରିଝିଅ ଚାରିଜୋଇଁ ଦିନେ ଦୁଇଦିନ ପାଇଁ ଆସିଲେ ଛୁଟି ନେଇ। ହାତରେ ସମୟ ନାହିଁ । ଯାହା ସବୁ ତୁଟିଯିବ ଏଇଠି । ମେଡିକାଲ୍ ବାରଣ୍ଡାରେ ବସିଛି ସଭା । ଝିଅ ଜୋଇଁମାନଙ୍କର। ଦିବଙ୍ଗତ ଜମିଦାର ରଣବୀରଙ୍କର । ସଭାରେ କଥା କଟାକଟି ଯୁକ୍ତି । ପ୍ରତିଯୁକ୍ତି । ଈର୍ଷା ଅହଙ୍କାର । ଆତ୍ମବଡିମା । ଜଣେ ଜଣକର ଉପଯୁକ୍ତ, ସମସ୍କନ୍ଧ ପ୍ରତିଯୋଗୀ । ତହୁଁ ବଡ଼ା । ତହୁଁ ବଡା ।

ବଡଝିଅ ସୁରତିପ୍ରଭାର ଏକାଜିଦ୍- 'ମୁଁ ଗାଁ ଘରଟା ନେବି । ଯାହାବି ହେଲେ ମୁଁ ବଡ ଅଂଶ । ବାପା ବୋଉଙ୍କର ସେବା ମୁଁ ତମମାନଙ୍କ ଅପେକ୍ଷା ଅଧିକ କରିଛି । ମୋର ଗାଁ ଘର ପାଇବାଟା ହକ ଓ୍ୱାଜିବ୍ ।

ବଡ ମଝିଆ- ଆରତୀ ପ୍ରଭାର ବି ଏକା ଜିଦ୍ ଗାଁ ଘରଟା ନବ । ସେ ଘର ତିଆରି ବେଳେ ବାପାଙ୍କୁ ଆଇଡିଆ ଦେଇଥିଲା- ମୋ ପ୍ଲାନ୍‌ରେ ଘର ହେଇଛି । ବାପା ମୋତେ ସେ ଘର ତିଆରି ବେଳେ ସବୁ କଥା ପଚାରୁଥିଲେ । ବୋଉ କହୁଥିଲା ତୋ ପାଇଁ ମୁଁ ଗୋଟେ ଘର ତୋଳାଇ ଦେବି ଗାଁ'ରେ । ଗାଁ ଯୁଗକୁ ନା, ସହର କ'ଣ ଯୁଗକୁ ?'

ଘର, ଜମି, ବ୍ୟାଙ୍କ ବାଲାନ୍ସ, ହାତଜମା ସବୁ ଚାଲିଛି ହିସାବ ମେଡିକାଲ ବାରଣ୍ଡାରେ । ଯାହା ଗୋଟେ ଏକ ତରଫା ଫଇସଲା ହେଇଗଲେ କାଲିଠୁ ଆଉ ଚିନ୍ତା ନଥିବ । ଚାରୁକୁ ମଣେଇ ଦେଇଗଲେ ଯାହାହବ ପରେ ଆସିଲେ । କେହି କାହାକୁ ଟିପେ ଛାଡିବାକୁ ନାରାଜ୍ । ଛୁଟିନାହିଁ ଦି'ଦିନ ରହି ଛିଣ୍ଡାଇ ନେବେ, ଲାସ୍ ଉଠିଗଲେ ଗଲା । କିଏ କୁଆଡେ ଯିବେ ଦେଖା ମିଳିବ ନାହିଁ ବର୍ଷବର୍ଷ ଧରି ।

ମଝିରେ ମଝିରେ ଚାରୁ ତା' ଚତୁରୀ ଢଙ୍ଗରେ କଳି ମଞ୍ଜି ପୋତିଦିଏ- 'ହେଇଟି ନାନୀ । ତମ ହିସା ତ ତମେ ନବ । ମୋର କି ଯାଏ ଏତେ କଥାରୁ । ତମେ କହିଲେ ଏ ଘରେ ରହିବି ନଇଲେ ଚାବି ପକେଇ ଧରେଇ ଦେବି ଯୋଉ ନାନୀର ହବ । ହେଇଟି, ଆମେ ତ ଦୁଃଖୀ ରଙ୍କି ଲୋକ । ଯିଏ କହିବ ତା'ର କରିବୁ । ତା'ଘରକୁ ନିଜର କରି ସାଇତି ରଖିବୁ । ଆଉ ଆଜି କିଛି ଗୋଟେ ନହେଲେ କାଆଲିକି କଥା ବଦଳି ଯିବନାହିଁ । ଚକେ ଗଲେ ବାର ହାତେ ।'

ଦିନ ଯାଇ ରାତି ହେଲାଣି ଦଶଘଡି । ମେଡିକାଲ ଅଥରିଟି ଆଦେଶ ଦେଇ ସାରିଲେଣି ମଡା ବେଓ୍ୱାରିସ୍ । କେହି ଛୁଉଁନାହାନ୍ତି ।

ଜମିଦାର ରଣବୀର ସିଂହର ଲାସ୍ । କଳିରେ ତାତିଗଲାଣି ମେଡ଼ିକାଲ ଓ୍ୱାର୍ଡ ।

ଗରିବ ଓ ମୁଖ୍ୟ ଲୋକମାନଙ୍କର କଳି ଶୁଣାଯାଏ ଦି'କୋଶ । ଜମା ହୁଅନ୍ତି ଦଶଲୋକ । ଡକାଡକି ହୋଇ ବୁଝାଶୁଝା କରି କଳି ତୁଟେଇ ଦିଅନ୍ତି ନ୍ୟାୟ ନିଷାପରେ ତୋ'ର ଛଅଣା ଭୁଲ, ତାର ଦଶଣା କହି, କି ତୋର ଆଠଣା ତାର ଆଠଣା କହ, ବଡଲୋକ କଳିର ସ୍ୱର ଶବ୍ଦ ନଥାଏ । ଯେମିତି ଧନର କୌଣସି ସ୍ୱର ଶବ୍ଦ ନଥାଏ । ବାସ୍ନା ଚହଟେନା ଦିଗବିଦିଗ ଜାଣିବାକୁ ଚାହିଁଲେ ତା'ର ସୁରାକ୍ ବି ପାଆନ୍ତି ନାହିଁ କେହି ।

ଧନ ବେଳେବେଳେ ମନକୁ ଏତେ ଟାଣ ଏତେ ପଥର କରିଦିଏ ଯେ ତାକୁ ଭେଦି ପାରେନା ସ୍ନେହମମତାର ତରଳ ଛଳଛଳ ଜଳ । ଓଦା କରି ପାରେନା ଭାତୃତ୍ୱ, ପିତୃତ୍ୱ, ମମତା ଓ ପ୍ରେମ ।

ପଥର କୋଇଲାକୁ ପାଣି ଥଣ୍ଡା କରିପାରେନା ତା' ଭିତରେ ଚୁପ୍‌ଚାପ୍ ଶୋଇଥାଏ ଭୀଷଣ ଅଗ୍ନିଶିଖା । ତାଉ ତାଉ ନିଆଁ ଗୁଳ । ସେ ନିଜେ ଜଳେ ଓ ଜାଳିଦିଏ ଚାରିଆଡ ।

ଧନର ଅଗ୍ନିଶିଖା ମଣିଷକୁ ଥରେ କଳାପଥର କୋଇଲା ସଜେଇ ଦେଲେ କେହି ତା'ଠୁ ଶୀତଳତା ପାଆନ୍ତି ନାହିଁ ତା ପରିବର୍ତ୍ତେ ପାଆନ୍ତି ସନ୍ତାପ ଉତ୍ତାପ । ସମାଜ ସେଇ ଉତ୍ତାପରେ ପୋଡିଯାଏ ।

ଚାରିଝିଅ ଚାରି ଜୋଇଁ ପଦେ ପଦେ କଥାରେ ଜିଦ୍ ଧରି ବସିଛନ୍ତି ଦୀର୍ଘ ୧୨ ଘଣ୍ଟା ହେଲା ମେଡିକାଲ୍ ବାରଣ୍ଡାରେ । ଯିଏ ଲାସ୍ ଛୁଇଁବ ସେ ହେବ ଅଶୌଚ, ଛୁଆଁ । ତାକୁ ଗାଧୋଇବାକୁ ପଡିବ । ଯାହା ଥିଲା କଥା ସେ ବି ହେଲାଣି ଅକଥା । ଅକଥାରୁ ଅସଭ୍ୟ କଥା । ଅସଭ୍ୟତା । ଅସଭ୍ୟତାରୁ ଜନ୍ମନିଏ ଯେଉଁ ରାକ୍ଷସ, ସେ

ମାରିଖାଏ ମଣିଷ । ତା'ର ପ୍ରଶଂସା, ପ୍ରତିଷ୍ଠା ଓ ପୌରୁଷ । ଆଉ କେତେ ହଜାର ବର୍ଷ ଗଲେ ମଣିଷ ସଭ୍ୟ ହେବ ? ଯିବା ଆସିବା ଲୋକେ କଥା ହେଉଥିଲେ ଘଟଣା ଉପରେ ମନ୍ତବ୍ୟ କାଟି ।

ଶେଷକୁ ବଡଝିଅ ସୁରତି ତା'ସ୍ୱାମୀକୁ ଟାଣି ଟାଣି ନେଇ ମେଡିକାଲ ବାରଣ୍ଡା ପାର୍ ହେଲା - ଆସ ! ତମେ ଆସିଲ । ହାତରେ ଶଙ୍ଖା ନା ଦର୍ପଣ ଖୋଜା ଚାଲିଛି । ହେୟାର୍ ସେୟାର୍ ଡିମାଣ୍ଡ ଓ ପାର୍ଟିସନ୍ ଫାଇଲ୍ କରିଦେଲେ, ଆମ ଅଂଶତକ କିଏ ନେଇଯିବ କି ? ଯାଉ କିଏ କ'ଣ କରୁଛି କରୁ ।

ବଡକୁ ଦେଖି ବଡମଝିଆ । ତାକୁ ଦେଖି ସାନମଝିଆ ଓ ସବା ସାନଝିଅ ଜୋଇଁମାନଙ୍କୁ ଧରି ବାହୁଡିଗଲେ ମେଡିକାଲ ବାରଣ୍ଡାରୁ । ପ୍ରବଳ ପ୍ରତାପୀ ଜମିଦାର ରଣବୀର ସିଂହଙ୍କର ଲାସ୍ ପଡିଥିଲା ଗୋଟାଏ ଛେଉଣ୍ଡ, ଅସହାୟ ଓ ଅପରିଚିତ ମଣିଷ ପରି ।

ଚାରୁଲତା ଅଣ୍ଟାରୁ ଟଙ୍କା କାଢି ହାଡିମାନଙ୍କୁ କହୁଥିଲା- ଭାଇମାନେ ! ଏଙ୍କ ପାଇଁ ତ ଗାଁ ଲୋକ କେହି ଆସିଲେନାହିଁ । ଝିଅଜୋଇଁମାନଙ୍କ କଥା ତ ଦେଖିଲ । ଏଇଠି କୋଉଠି ମଶାଣି ଥିବ ଟିକେ ଚାଲିଲ ଦାହ କରିଦେବା । କେତେଟଙ୍କା ଲାଗିବ ନିଅ !!'

ତାଙ୍କ ଭିତରୁ ଦି'ଜଣ କହୁଥିଲେ- 'ତମେ ଯାଉନ ମାଆ । ଆମକୁ ଟଙ୍କା ଦେଇ ଦେଇ ଯାଅ । ଆମେ ଏଇ ପାଖ ମଶାଣିରେ ଦାହ କରିଦେବୁ ନାହିଁ ।

ରଣବୀରର ପ୍ରେତାତ୍ମା ଯେମିତି ସେ ଅନ୍ଧାର ରାତିରେ ବୁଲି ବୁଲି କହୁଥିଲା- 'ହଇରେ ! ମୋ ଲାସ୍‌କୁ ଶେଷରେ ନିଲାମ୍ କରିଦେଲ ? ରହ ରହ ଶଳେ । ଦେଖି ଦଉଚି ତମକୁ ।'



# ଅନ୍ଧାରର ମୁହଁ

ସେଦିନ ଥାଏ ନଭେମ୍ବର ତେଇଶ ।

ମୋର ଅଯୋଗ୍ୟ ଘୋଷିତ ହେବାର ପୂର୍ବଦିନ । ଅଚଳ, ଅଦରକାରୀ ବେକାର ହେଇଯିବାର ଅବ୍ୟବହିତ ପୂର୍ବ । ସରକାରୀ- ବେସରକାରୀ ନିଯୁକ୍ତି ପାଇଁ ସମସ୍ତ କ୍ୱାଲିଫିକେଶନ, ଫିଟ୍‌ନେଶ୍, ଏଲିଜିବିଲିଟି ଥିବା ସତ୍ତ୍ୱେ ମୋତେ ସବୁଥିରୁ ବଞ୍ଚିତ, ପ୍ରବଞ୍ଚିତ କରି ଦିଆ ଯିବାର ପ୍ରାକ୍‌କାଳ ।

ସାମ୍ନାରେ ଅଶାନ୍ତ ସମୁଦ୍ର ଲହଡି । ଚତୁଃପାର୍ଶ୍ୱ ଜନଗହଳିପୂର୍ଣ୍ଣ ବେଳାଭୂମି । ନୀରବ ଅଥଚ ଆପଣାଭିତରେ ଗୁମୁରି ଗୁମୁରି ବାରମ୍ବାର ପ୍ରଶ୍ନ ତୋଳୁଥିବା ନିକାଞ୍ଚନ ବାଲିଶଯ୍ୟା । ପାଖରେ ସମଦୁଃଖୀ, ସମବୟସୀ ସହଯାତ୍ରୀ ବଂଧୁ ସଂଗ୍ରାମ । ଜୀବନ ସଂଗ୍ରାମ ଭୂମିର ଜଣେ ପରାସ୍ତ ସୈନିକ ।

ଏତେବଡ ସଂସାର । ଏତେ ସମାଗମ । ସମାରୋହ ଅଥଚ ଆମେ ଦି'ଟା ଅକର୍ମକଶୀଳା। ସବୁ ଯୋଗ୍ୟତା ଥାଇବି ତୃଠପଥର ହେବାର ସୌଭାଗ୍ୟରୁ ବଞ୍ଚିତ । ବୟସର ସାମାନ୍ୟତମ ତାରତମ୍ୟ ନେଇ ଆମେ ଅନାବଶ୍ୟକ, ଅଦରକାରୀ ଓ ୟୁସ୍‌ଲେସ୍ ।

ବେଳାଭୂମିର ପ୍ରତିଟି ବାଲି କଣାରେ ଏଇ ଗୋଟିଏ ପ୍ରଶ୍ନ । ବତିଶ ବର୍ଷ ଟପିଗଲେ କ'ଣ କ୍ୱାଲିଫିକେଶନ୍ ବୁଢା ହୋଇଯାଏ ନା ଯୋଗ୍ୟତାର ଯୌବନ ହଜିଯାଏ ? ଗୋଟିଏ ଦିନର ବ୍ୟବଧାନରେ ଗୋଟାଏ ଜୀବନର ପରିଚୟ ଲିଭିଯାଏ ? ତେବେ କେଉଁ ନୈତିକ ଅଧିକାର ବଳରେ ଜଣେ ଅଶୀତି ପର ହେଲେ ବି ଦେଶର ସର୍ବୋଚ୍ଚ ଶାସନ କଳର ବୋଝ ମୁଣ୍ଡେଇବାରେ ସକ୍ଷମ ହୁଏ ? ଚାକିରୀ ପାଇଁ ସର୍ବ ସମ୍ଭାବନାର ବିମୂର୍ତ୍ତ ବିଗ୍ରହ ଯୁବକକୁ ଅସମର୍ଥ ଘୋଷଣା କରାଇ କେଉଁ ନୀତି ଓ ଆଦର୍ଶ ବଳରେ ଭାରତପରି ଏକ ବୃହତ୍ତମ ଗଣତନ୍ତ୍ର ରାଷ୍ଟ୍ରର ଜଣେ ଶାସକ ହେବାକୁ ପ୍ରବେଶ ପତ୍ର ପାଏ ? ଅଠାବନ ବା ଷାଠିଏ ବର୍ଷରେ ଚାକିରୀରୁ ଅବସର ନେଲାପରେ ଦେଶ ସେବାର ଚାକିରୀରେ ଜଣେ ପ୍ରବେଶାଧିକାର ପାଇ ପାରୁଥିଲା ବେଳେ, ଦେଶପାଇଁ ସମସ୍ତ ଶ୍ରମ ଶକ୍ତି, ଜ୍ଞାନ, କୌଶଳ ଓ ଅଧ୍ୟବସାୟ ବିନିଯୋଗ କଲାଭଳି

ଉଦ୍ଦାମଶୌର୍ଯ୍ୟ ସାହାସ ଓ ସାମର୍ଥ୍ୟଥିବା ଯୁବକକୁ ବୟସର ମାପକାଠିରେ ମାପି ରାସ୍ତାକଡକୁ କାଢି ଫିଙ୍ଗି ଦେବାରେ ହାତ କାହାର ? କିଏ ତେବେ ଡାକି ଆଣୁଛି ସାମାଜିକ ବିଶୃଙ୍ଖଳା ? ରାଷ୍ଟ୍ରୀୟ ଅସନ୍ତୁଳନ ? ପ୍ରଗତି ପରିବର୍ତ୍ତେ ଅଧୋଗତ ? ନିର୍ମାଣ ସ୍ଥାନରେ ଧ୍ୱଂସ ? ଉଦୟସ୍ଥାନରେ ଅସ୍ତ ?ଫିଲ୍‌ଗୁଡ୍ ସ୍ଥାନରେ ଫିଲ୍‌ବ୍ୟାଡ୍ ?କିଏ ତାହେଲେ ଧରେଇ ଦେଉଛି ଯୁବକ ହାତରେ କାମ ପରିବର୍ତ୍ତେ ଅକାମ । ଭାରତବର୍ଷର ତେର ଚଉଦ କୋଟି ଯୁବକ ଯୁବତୀର ଏଇ ମର୍ମବେଦନାର ଉତ୍ତର ଦେବ କିଏ ?

ଦେହସାରା କ୍ଷୁଦ୍ର ବାଲିକଣାର ମୃଦୁ ଆଘାତ ସତେ ଯେପରି ତୁହାଇ ତୁହାଇ ପଚାରୁଚି- 'କହ ? ଏବେ କରିବୁ କ'ଣ ? କାଲିଠୁ ତୋର ଏଜ୍ ବାର୍ କରିଯିବ ? ତୋ ସାଙ୍ଗ ସଂଗ୍ରାମର ବି। ଏମିତି ଲକ୍ଷ ଲକ୍ଷ ଯୁବକ ଯୁବତୀଙ୍କର । ଏଥିପାଇଁ ତମର କିଛି ପ୍ରସ୍ତୁତି ଅଛି ? କିଛି ପ୍ରତିଜ୍ଞା ଅଛି ? କିଛି ପ୍ରତିକ୍ରିୟା ଅଛି ? ମହମର ପାଦଦିଟା ତରଳିଗଲା ପରେ କଣ୍ଢେଇ ଯେମିତି ଆପଣା ଭିତରର ମେସିନ୍ ଚକ୍ ଥିଲେ ବି ଚାଲିପାରେନା । କାଚ କଣ୍ଢେଇ ଦେଖିବାକୁ ଡଉଲ ଡାଉଲ ଅଥଚ ଦାମ୍ କମ୍ ଓ ମୂଲ୍ୟହୀନ ।

ଯୁବକର ଗୋଟିଏ ମିନିଟ୍ ନଷ୍ଟଗଲେ ଦେଶର ତେରକୋଟି ମିନିଟ୍ ନଷ୍ଟଯିବ । ଅଫୁରନ୍ତ ଶକ୍ତି ଓ ସାହସ, ଅପୂର୍ବ କାର୍ଯ୍ୟଦକ୍ଷତା ଯାହାଦିନେ ଦେଶପାଇଁ ଆଣିଦିଅନ୍ତା ସୁଖ, ସମୃଦ୍ଧି ଓ ସୌଭାଗ୍ୟ, ତାହା ସ୍ୱପ୍ନର ଶିଶ୍ ମହଲ ଭିତରେ ପଡିରହି ଛଟପଟ ହେଉଛି। କିଏ ଅଛି ସେମାନଙ୍କୁ ତାଲା ଭାଙ୍ଗି, କବାଟ ଖୋଲି ମୁକ୍ତ କରିବ ?

ଅସହାୟ ମଣିଷ ଯୁଆଡେ ଚାହେଁ ତାକୁ ଲାଗେ ଅନ୍ଧାର । ଡାଳଧରିଥିଲେ ଲାଗେ ପତ୍ରଧରିଛି । ପଥର ତଳେ ଥିଲେ ଲାଗେ ପତ୍ରତଳେଅଛି । ସଭିଏଁ ଥାଇବି ତାକୁ ଲାଗେ ତାର କେହି ନାହାନ୍ତି। ଏକୁଟିଆ ।

ଆଲୋକ ବେଳେ ବେଳେ ଚିନ୍ତାକରୁଛି । କାହିଁକି ଏତେଗୁଡେ ପଇସା ଖର୍ଚ୍ଚକରି ରାତି ଉଜାଗର ରହି ପରିଶ୍ରମକରି ପାଠ ପଢ଼ିଲା । ୟୁନିଭର୍ସିଟିର ଜଣେ ସୁଯୋଗ୍ୟ ଛାତ୍ର ଭାବେ ନାଁ ଅର୍ଜିଲା । କି ଲାଭ ? ତା ଗାଁ ସାଙ୍ଗ ବିକାଶ ପାଠ ପଢା ଅଧାରୁ ଛାଡିଲା । ନବମ କି ଦଶମ । ବାପାର ଛୋଟିଆ ତେଜରାତି ଦୋକାନ ଥିଲା- ଚଳେଇଲା । ବାପାର ମୃତ୍ୟୁପରେ ସେ ଦୋକାନ ହେଲା ତାର। ଏବେ ସେ ଲକ୍ଷପତି । ଦଶବାରଜଣ ଚାକର ବାକର କୋଠାବାଡି । ଗାଡିମଟର । ସବୁଅଛି ତାର । ଏବେ ଘର ଅଚଳ ହେବାରୁ ସେ ବାହାହେଲା । କହୁଥିଲା ଛୋଟ ମୋଟ ଖର୍ଚ୍ଚ ସବୁକୁ ଯୋଡି ହିସାବ କଲେ ହେଇଯିବ ପାଞ୍ଚଲକ୍ଷ । ପାଇଚି ବି ସେମିତି ତାଠୁ ଅଧିକ। ଗିଫ୍‌ଟ୍ ଟାଏ ଦେବାପାଇଁ ନାହିଁ ସମ୍ବଳ ନାହିଁ ଭାରତବର୍ଷର ସର୍ବୋଚ୍ଚ ଡିଗ୍ରୀଧାରୀ ଯୁବକ ପାଖରେ । ଦୁଇ ଦୁଇଥର ଖବର ଦେଲାଣି । ଯାଇ ହେଉନି ଲାଜରେ । ବନ୍ଧୁ ପତ୍ନୀ ପାଖରେ ନିଜକୁ ନିଚା କରିଦେବାପାଇଁ ସେ ଆଦୌ ଚାହେଁନା । ତାର ମାନସମ୍ମାନ ବୋଲିତ ପୁଣି କିଛି ଅଛି ।

ତାର ଇଚ୍ଛା ହେଉଥାଏ । ତା' ହାତରେ କଲମ କାଗଜଧରାଇ ଯିଏ ତାକୁ ଅସହାୟ ଅସମର୍ଥ କରିଦେଇଛି ସେ ତାର ତଣ୍ଟିଚିପି ଖୁନ୍ ପିଇଯାଆନ୍ତା । ସେ ସମାଜ,

ସେ ରାଷ୍ଟ୍ର, ସେ ଶିକ୍ଷାବ୍ୟବସ୍ଥା, ସେ ଶାସନ କଳକୁ ଗୋଇଠା ମାରି ମାରି ଚୂର କରି ଦିଅନ୍ତା । କଲମ ନଧରି ଲଙ୍ଗଳ କି ନିହାଣ ମୁଗୁର ନହେଲେ ହାତୁଡି କରଣୀ କିଛୁଞ୍ଜି ସୂତା ନହେଲେ ରଙ୍ଗତୁଳୀ ଧରିଥିଲେ ବି ତାକୁ ଏତେ ବଡ ଅସହାୟତାର ସାମ୍ନା କରିବାକୁ ପଡିନଥାନ୍ତା ।

ତାର ମନ ହଉଥାଏ ସେ ଚିତ୍କାର କରିପଚାରିବ- 'ହେ ଆକାଶ । ଜବାବ୍ ଦେ । ମୋ ବୟସରେ ମୁଁ ଯାହା କରିବା କଥା କଲି।ଏବେ ଅଯୋଗ୍ୟତାର ଲମ୍ଫାଧାଡିରେ ମୁଁ । ମୋତେ କଣ କରିବାକୁ ହେବ କହ ? ତୁ'କଣ ଦେଖୁନୁ ଏଠି କଅଣ ଚାଲିଛି ?

ହେ ସମୁଦ୍ର। ମୋତେ ଜବାବ ଦେ ଯେତେକବେକାର ସବୁ ତୋ ବେଳାଭୂମିରେ ଆସି ସ୍ୱପ୍ନ ସାଉଁଟି ସାଉଁଟି ଫେରିବେ ଖାଲି ହାତରେ ? ବାଲିକଣାରେ କୋଉଠି ଲେଖା ହୋଇଛି ମୋ ପରି ଅସହାୟ ବେକାରର ନାଁ ଗୋଟିଏ ଲହଡିରେ ଖୋଳି ଦେଖାଇଦେ । ତୁ କ'ଣ ଜାଣୁନୁ କ'ଣ ଘଟିଚାଲିଛି ଏ ସଂସାରରେ ?

ହେ ଭୂମାତା । ମୋତେ ଜବାବ ଦେ ତୋ କୋଳରେ ଜନ୍ମ ଦେଇ ତୋ ମାଟିର ରସ ପିଆଇ, ଗଛର ଫଳ ଖୁଆଇ, ତୋ ସ୍ନେହ ମମତାରେ ବାନ୍ଧି ମୋତେ ଏତେ କଲୁ, ମୁଁ ତୋରିଠାରୁ ଶିଖିଲି ସହନଶୀଳତା, ତରଳ ପଣ ଓ ନରମିଯିବା କଥା । କେତେଦିନ ଆଉ ଏ ଶୁଖିଲା ପାଂଶୁଳ ଆଦର୍ଶକୁ ନେଇ, ପେଟରେ ଓଦାକନା ପକାଇ, ପରପଦାନତ ହୋଇ, ବଂଚିବାର ଛଳନା କରିବି ? ଦେହରେ ତେଜ ଦେଲୁ, ମଗଜରେ ବୁଦ୍ଧି ଦେଲୁ ଆଉ ହାତରେ କାମ କାହିଁ ? ତୁ କହ ମୋତେ କ'ଣ କରିବାକୁ ହେବ ? କିଛି ତ କରିବାକୁ ହେବ ନା । ତୁ କ'ଣ ଦେଖୁନାହୁଁ କଣ ଚାଲିଛି ଏ ସଂସାରରେ ।

ଭାବପ୍ରବଣତାରେ ବୁଡି ଆଲୋକର ଇଚ୍ଛାହେଉଥିଲା- ଚିତ୍କାର କରି ମେଦିନୀ ଫଟାଇ ଦେବା ଭୈରବ ଡାକମାରି ଆକାଶ, ସମୁଦ୍ର ଓ ମାଟିକୁ ଏକାକାର କରିଦେବାପାଇଁ । ତାକୁ ତା' ଉତ୍ତର ବୟସର ଅସହାୟତାର ଉତ୍ତର ଏଇମାନଙ୍କଠାରୁ କାଢି ବାହାର କରିବାକୁ ପଡିବ ।

ଭାଗ୍ୟ ପଛରେ ଧାଇଁ ଧାଇଁ କୂର୍ମ ହେବା ଅପେକ୍ଷା କର୍ଣ୍ଣପରି ହାତ ପାପୁଲିରେ ତାକୁ ଭାଗ୍ୟରେଖାର ଗାର ଟାଣିଦେବାକୁ ହେବ । ଚାହିଁଲେ ଲିଭେଇ ଦବ । ଚାହିଁଲେ ଲେଖିଦେବ ।

ଆଦର୍ଶକୁ ଜଗି ଜଗି ପ୍ରତିମୁହୂର୍ତ୍ତରେ ସନ୍ତୁଳି ସନ୍ତୁଳି ମରିବା ଅପେକ୍ଷା ବାସ୍ତବରେ ଯେ କୌଣସି ଚରମସତ୍ୟକୁ ଆପଣେଇ ନେଇ ବଂଚିବାର ଅଧିକାର ଛଡାଇ ଆଣିବା କ'ଣ ଦୋଷାବହ ? ନହେଲେ ଉପାୟ କାହିଁ ?

ଉତୀର୍ଣ୍ଣ ସଂଧ୍ୟା ଲୋକରେ ବେଳାଭୂମିର ମୁହଁ ସ୍ପଷ୍ଟ ଦେଖାଯାଉ ନାହିଁ । ଯେଉଁ ସୁନ୍ଦରୀ ନବଯୌବନୀ ଦୃଷ୍ଟିରେ ମାଦକତା ଭରି ସମୁଦ୍ର ଢେଉ ଭାଙ୍ଗୁଥିଲେ

ସେମାନେ ଗଲେଣି କୋଉ କାଲୁ । ଚେନାଚୂର ବିକାଳୀ, ଶାମୁକାମାଳ ଶଙ୍ଖ ବିକାଳି ଟୋକା ସେଦିନର ଶେଷ ଆୟ ରେଜାପଇସା ତକ ଗଣି ଫେରିଲାଣି ଘରକୁ ।

ଅଦୂରରେ ଦୁଇଜଣ ପୃଥୁଳକାୟ ମଣିଷ । ଆପଣାକଥାରେ ମସ୍‌ଗୁଲ୍ । ସନ୍ଧ୍ୟା ଭ୍ରମଣରେ ଆସି ବସିଯାଇଛନ୍ତି ଲଥ୍ କରି ।

କେତୋଟି ଛାୟାମୂର୍ତ୍ତି ରାସ୍ତାରୁ ଖସି ଅପସରି ଯାଉଛି ସୁଦୂର ନିର୍ଜନ ଆଡେ । ଆଲୋକରୁ ଅନ୍ଧାର ଇଲାକାକୁ ।

ସଂଗ୍ରାମ ପ୍ରକୃତିସ୍ଥ ହୋଇ ଚାହିଁଲା ଆଲୋକ ଆଡେ । ଆଲୋକ ତଥାପି ଭାବିଚାଲିଛି ନିଜକୁ ନେଇ ଏତେବଡ ବିଶ୍ୱବ୍ରହ୍ମାଣ୍ଡରେ । ଆପଣା ଭିତରର କ୍ରୋଧରେ ସେ ଚେତନା ହରାଇ ବସିଥିଲା । ଆଲୋକ ସେଯାଏଁ ଚାହିଁନି କି ବୁଝିନି କଅଣ କହୁଚି ସଂଗ୍ରାମ ।

ଆ ! ଯିବା । ଆଜି ଆଉ କିଛି ହବନି । ସନ୍ଧିହାନ ଆଲୋକ ଫେରିଯିବାର ମସୁଧା କରୁଥିଲା ।

ସଂଗ୍ରାମ ପୁଣିଥରେ ହାତବଢାଇ ନିର୍ଦ୍ଦେଶକଲା ।

ଦେଖ୍ ! ଚାହାଁ ସେପଟକୁ । ପଳେଇବୁ କଅଣ ?

ଆଲୋକ ଏଥର ଫେରି ଆସିଲା ବାସ୍ତବ ଜଗତକୁ । ପୁଣିସେଇ ନିତ୍ୟ ନୈମିତ୍ତିକ ଗତାନୁଗତିକ ଜୀବନକୁ ନିଜକୁ ଖୁବ୍ ଅଭିସମ୍ପାତ ଦେଲା । ନିନ୍ଦିଲା । ଗାଳିଗୁଲଜକଲା ।

'ଆବେ, ଶଳା ଆଲୋକ ! ତୁ ପାଠ ଶାଠ ପଢ଼ି, ଏକ'ଣ କରୁଛୁ ? ତୋତେ କଣ ଏତେବଡ ସହରରେ ରିକ୍‌ସା ଖଣ୍ଡେ ମିଳିଲା ନାହିଁ ? କୁଲିକାମ ମିଳିଲା ନାହିଁ ? ନହେଲେ ବସ୍‌ଷ୍ଟାଣ୍ଡରେ ଠିଆହୋଇ ଡାକିଲୁନାହିଁ କଟକ ! କଟକ !! ବାଲେଶ୍ୱର ! ବାଲେଶ୍ୱର !! ଭଦ୍ରକ ! ଭଦ୍ରକ !! ବସବାଲାଠୁ ଯାହା ଦି'ପଇଶା ମିଳିଥାନ୍ତା ଶଳା କୁଳାଙ୍ଗାର କାହାଁକା ! କୋଢିଆ । ଅଳସୁଆ ବାହିଁଚୋ । ଆସି ଏଇ କାମ କରୁଚୁ ?

ଆଲୋକ ବୁଝେଇବାକୁ ଯତ୍ନକରୁଥିଲା- 'ଏତେ ପାଠ ପଢି ରିକ୍‌ସା ଟାଣିଲେ ମୋ ସାଇଲୋକ ସାଙ୍ଗସାଥୀ, ଚିହ୍ନା ଜଣା ଲୋକ କହିବେ କଅଣ ?- ଶଳା ଆଲୋକଟା କୁଣ୍ଡାଦେଇ ପାଠ ପଢ଼ିଥିଲା । ଚାକିରୀ ନାହିଁକି ବାକିରୀ ନାହିଁ , ରିକ୍‌ସାଟାଣୁଛି । ବସ୍‌ଷ୍ଟାଣ୍ଡରେ ହକର୍ ସାଜିଛି । ମୋ ମାନମହତ ଆଉ ରହିବଟି । ଏଡିଗ୍ରୀ ତାହେଲେ କଅଣ ପାଇଁ ? ଖାଲିକାଗଜ କେଇଖଣ୍ଡ ? ଚିରିଦେଲେ କି ପୋଡିଦେଲେ ତ ସେମାନଙ୍କ ସାଥୀରେ ମୁଁ ସମାନ ହେଇଯାଆନ୍ତି । ଇଂଲଣ୍ଡ, ଆମେରିକା, ଋଷିଆ ଜାପାନ୍ ପରି କଣ ଆମ ଏଠି ସଭ୍ୟଶିକ୍ଷିତ ଲୋକ ଅବଶିଷ୍ଟ ସମୟରେ ଯେକୌଣସି କାମ କରୁଛନ୍ତି ଯେ ମୁଁ କଲେ ତାଙ୍କ ସାଙ୍ଗରେ ମିଶିଯିବି । ବାରି ହେଇପାରିବି ନାହିଁ । ଏଠିଯେ ମାସକୁ ହଜାରେ

ରୋଜଗାର କଲା ସେ ପରା କହୁଚି 'ଏ କୁଲି! ବ୍ୟାଗଟା ଧଅ ତ।' ପରେ ଦି ଦିନ ଓପାସ ରହୁ ପଛେ ଶାରୀରିକ ମେହନତକୁ ଆତ୍ମସମ୍ମାନ ବୋଲି ମନେକରୁଚି । ଏ ଆତ୍ମ ସମ୍ମାନ କଥାଟା ଆମ ଏଠି ଏତେ ବେଶୀ ଯେ- କେହି ଚାହିଁଲେ ବି ତା'ସ୍ତରରୁ ତଳକୁ ଓହ୍ଲାଇ ପାରିବ ନାହିଁ । ଅବସରରେ ଶୋଇବସିପଛେ ସମୟ ଅତିବାହିତ କରିବ, ହେଲେ ଜାତିର ଆୟକୁ ବଢେଇ ଦବ ନାହିଁ ।

ଆଲୋକର ମନେପଡୁଛି ସେ ଯେଉଁଦିନ ଯାଇ ଖୁସାମତ କରିଥିଲା କଟକର ବଡ ଲୁଗା ବ୍ୟବସାୟୀ ହିରାଲାଲ୍ ବାବୁଙ୍କୁ। କପଡା ବଣ୍ଡଲ ସଜେଇଦବ। ତାର ଚାକିରୀ ଦରକାର । ସାକ୍ଷୀଗୋପାଳର ବଡ ନଡିଆ ବେପାରୀ ସେନାପତି ବାବୁଙ୍କୁ। ନଡିଆ ଗଣତି କରି ରଖିବ। ତାର ଚାକିରୀ ଦରକାର । ଖୋର୍ଦ୍ଧାର ଲୁଙ୍ଗି ଗାମୁଛା ମିଲ୍ ମାଲିକ ଅଗ୍ରୱାଲ୍ ସାହେବଙ୍କୁ। ଯେକୌଣସି କାମ କରିପାରିବ। ତାର ଚାକିରୀ ଦରକାର । କେତେ ଷ୍ଟାର୍ ହୋଟେଲ୍ କେତେ ବଡବଡ ଡେଜରାତି ଦୋକାନ, ପ୍ରେସ, ସମ୍ବାଦପତ୍ର, ବହିଦୋକାନ, ଔଷଧ ଦୋକାନ ବୁଲିଛି କିଛି ଫଳ ହେଇନି। ଫେରିଛି ଭଗ୍ନ ମନନେଇ। ହତାଶା ଓ ବ୍ୟର୍ଥତାର ଗ୍ଲାନି ଭୋଗି। ନିଜ ଉପରୁ ତାର ବିଶ୍ୱାସ ତୁଟିଯାଇଛି । ତାର ଧାରଣା ହୋଇଛି। "ଶଳା ଆଦର୍ଶ ଦେଖେଇ କଥା କହୁଛନ୍ତି ଦେଶରୁ ବେକାରୀ ଲୋପ। ହଇରେ ବେକାରୀଙ୍କ ପାଇଁ କିଏ କୋଉଠି ଦୁଆର ଖୋଲିଛି। ଭୋଟ୍ ବେଳକୁ ଟିହାଇ, ମତାଇ କେମିତି ଭୋଟତକ ହାସଲ କରିବା ପାଇଁ ଏତେ ଚାଲ୍ । ଫମ୍ପା ଡିଣ୍ଡିମ । ମିଛ ପ୍ରଚାର । ହଇରେ ଏଦେଶଟାତ ଚୋର ତସ୍କର ମିଛୁଆ, ଦଲାଲ୍, ପାଜି, ଠକ, ଓ ମଦୁଆ ମାନଙ୍କର। ଶିକ୍ଷିତ, ସଂସ୍କୃତ, ଶୃଙ୍ଖଳ ଓ ସତ୍ୟବାଦୀମାନଙ୍କ ପାଇଁ ଜାଗା କାହିଁ ?"

ହଇରେ! ଯୋଉସମାଜ ମୋତେ, ସଂଗ୍ରାମକୁ । ସଂଗ୍ରାମ ପରି ଲକ୍ଷ ଲକ୍ଷ ଯୁବକ ଯୁବତୀଙ୍କୁ ସ୍କୁଲ କଲେଜରେ ନେଇ ଛାଡିଥିଲା । ସେତେବେଳେ ସେ କି ଲକ୍ଷ୍ୟ ନେଇ ଛାଡିଥିଲା ? କି ସ୍ୱପ୍ନଦେଖିଥିଲା ସମାଜ ଆମକୁ ନେଇ ? ତାକୁ ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟରୁ କାଢି ଧକ୍କା ଦେଇ ଫୋପାଡି ଦେବାକୁ ? ତାହେଲେ ଏଶିକ୍ଷାର ମୂଲ୍ୟ କଅଣ ? ଇଂରେଜମାନେ କୋଉଠି ଆମକୁ ଭାରି ଅତ୍ୟାଚାର କରୁଥିଲେ । ଆରେ ଆମେତ ଆମଲୋକଙ୍କୁ ସବୁଠୁ ବେଶୀ ଅତ୍ୟାଚାର କରୁଛେ । ଅଧିକାର ଛଡାଇ ନେଉଛେ । ଜଣେ ଶିକ୍ଷିତ ବେକାର ପାଇଁ କ'ଣ ସମାଜରେ କୋଉଠି ଜାଗାନାହିଁ। ସମ୍ବିଧାନରେ କଣ ଉଚ୍ଚଶିକ୍ଷିତଙ୍କ ପାଇଁ ଦି'ଧାଡି ଆଇନ୍ ଲେଖା ହେଇପାରିବନି ? ସରକାରୀ କାର୍ଯ୍ୟ କ୍ରମରେ ସେମାନଙ୍କ ସ୍ଥାନ କୋଉଠି ?

ଠକ! ପୁରା ଠକ ଏ ବ୍ୟବସ୍ଥା । ଖାଲି କୁମ୍ଭୀର କାନ୍ଦଣା । ଆଖିରେ ଟୋପାଏବି ଲୁହନାହିଁ । ଷୋଳବର୍ଷ କି ଅଠର କୋଡିଏ ବର୍ଷ କାଳ ପଢିପଢି ଯୁବକ ଚାକିରୀଟିଏ ଯୋଗାଡ କରିପାରୁନି କି ତା' ନିଜପାଇଁ ମୁଠେ ଅନ୍ନ ସଂସ୍ଥାନ ବ୍ୟବସ୍ଥା କରିପାରୁନି । ଦେଖହେ! କେଇଟା ଦିନ ଲୋକଙ୍କ ଭୋଟରେ ଜିତି ମନ୍ତ୍ରୀ ବିଧାୟକ ସଂସଦ ହେଇ ଗଲେ ବୋଲି ତାଙ୍କ ପାଇଁ ପୂରାକୁପୂରା ପେନ୍‌ସନ୍ ? ଯାବତ୍ ଜୀବନ

ପୁଣି ଆଇନ୍ କରିଦେଲେ ଫ୍ୟାମିଲ୍ ପେନ୍‌ସନ୍ । ସରକାରୀ କି ବେସରକାରୀ ଚାକିରୀରେ ନିହାତି କମ୍‌ରେ କୋଡିଏବର୍ଷ ଚାକିରୀ ନକଲେ ପେନ୍‌ସନ୍ ନାହିଁ । ଏଠି କୋଉ ନିୟମରେ । କୋଉ ସାମ୍ବିଧାନିକ ଆଇନ୍ ବଳରେ ମାତ୍ର ତିନିବର୍ଷର ଲୋକପ୍ରତିନିଧି ହେଇଗଲେ ସେ ପାଇବ ପେନ୍‌ସନ୍ ? ନେଇ ଯାଉନ । ଜନତାଙ୍କ ଧନ ଲୁଟି ନେଇ ଯାଉନ । ସାଙ୍ଗସାଥୀହେଇ । ୱାର୍ଡମେମ୍ବର, ସରପଞ୍ଚ, ଜିଲ୍ଲାପରିଷଦ, ଚେୟାରମ୍ୟାନ୍ ଯାଏ ସମସ୍ତଙ୍କ ପାଇଁ ପେନ୍‌ସନ୍ କରିଦଉନ । ଦେଖିବ ଦିନେ ସାରା ଭାରତରେ କେବଳ ଦଳେ ପେନ୍‌ସନ୍ ଭୋଗୀ ଥିବେ । ଦେଶ ତା ଆୟର ଅଧିକାଂଶ ସେମାନଙ୍କ ପାଇଁ ଦେଇ ଦଉଥିବ । ଆଉ ବିକାଶ ମୂଳକ କାମର ଦରକାର କଅଣ ? ଯଦି ସବୁତକ ଲୋକ ପେନ୍‌ସନ୍ ପାଇପାରିବେ, ତା'ହେଲେ ସେମାନଙ୍କ ପାଇଁ ବିକାଶ ଲୋଡାହବ ନାହିଁ । ତାହେଲେ ପିଲାଟିଏ ଜନ୍ମହେଲେ ସେ କାଗଜ କଲମ ପେନ୍‌ସିଲ୍ ନଧରି । ଧରିବ ପତାକା, ଫିମ୍ପା ମାଇକ୍ ଆଉ ପ୍ରଚାର ପତ୍ର । ରାଜନୀତିର ଦି'ଅକ୍ଷର ପଢି ସେ ବରିନେବ ତାକୁ ତାର ବେଉଷା କରି, ଇନ୍ଦିରା ଆବାସ ବାଣ୍ଟିବ ଦି'ପଇସା ପାଇବ । ବନ୍ୟାବାତ୍ୟା ଚାଉଳ ଲୁଗା ଟଙ୍କା ବାଣ୍ଟିବ, ସେଥିରୁ ରଖିନବ ଅଧେ । ରୋଡରେ ମାଟି ଗୋଡି ପକେଇବ, କୂଅ ଖୋଳିଦବ, ପୋଖରୀ ଉଝାଳିବ, ତମକୁ ଆମକୁ ଲୋନ୍ କରେଇଦବ, ଥାନା ଫାଣ୍ଡିରୁ କେଶ୍ ଉଠେଇ ଆଣିବ, ପାଇବ ଦି'ପଇସା । କିଛି ନପଢି ସେ ରାତି ପାହିଲା ବେଳକୁ କୋଠାଛାତ ପକେଇବ । ମଟର ସାଇକଲ ଆଉ ଚାରିଚକିଆ ଚଢିବ । ଯିଏ ପଢୁଛି-ଫୁସ୍ । ତା'ହେଲେ କ'ଣ ପାଇଁ ପଢିବ ?

ଦେଶର ବିକାଶମୁଖୀ କାର୍ଯ୍ୟକ୍ରମରେ ଏତେ ବିଶାଳ ଯୁବଶକ୍ତି, ଏତେଶକ୍ତିଶାଳୀ ଯୁବକଯୁବତୀଙ୍କ ପାଇଁ କିଛି ବି କାର୍ଯ୍ୟକ୍ରମ ନାହିଁ ? ରାଷ୍ଟ୍ରୀୟ ମହାସ୍ରୋତରୁ ସେମାନଙ୍କୁ ଅଲଗା ରଖିବା, ସାମିଲ୍ ନକରିବା ପଛରେ କାରଣଟି କଅଣ ବୁଝାପଡେନା ।

ଏତେସମୟ ପରେ ଆଲୋକ ପ୍ରକୃତିସ୍ଥ ହୋଇ ସଂଗ୍ରାମ ଇଂଗିତରେ ପର୍ଯ୍ୟାଲୋଚନା କଲା ଓ ବୁଝିଗଲା ସେମାନେ ଯାହା ଯାହା ଆଜିଠୁ କରିବେ ବୋଲି ତାର ପ୍ରଥମ ନମୁନା ।

ଉଠି ଠିଆ ହେଲା ଆଲୋକ । ଶିକାର ପଛରେ ପାଦଚିପି ଚିପି ଶିକାରୀ ଗଲାପରି ସେ ଏକମୁହାଁ ଚାଲିଲା ବେଳାଭୂମିର ଅନ୍ଧାକାର ଇଲାକା ଆଡେ । ଯେତେ ଅନ୍ଧାର, ସେତେଭଲ । ନିଜକୁ ପରଖି ନେଉଥିଲା ବାରମ୍ବାର ସେ ଅନ୍ୟ ମାନଙ୍କ ଦୃଷ୍ଟିରେ ଆସୁଚିକି ନା । ଏବେ ସେ ଅନ୍ଧାରକୁ ଗାଢ ଅନ୍ଧକାରକୁ ଖୁବ୍ ଭଲ ପାଇ ବସିଚି କାରଣ ଘନ ଅନ୍ଧକାର ଭିତରେ ହିଁ ନିଜକୁ ଚମତ୍କାର ଭାବେ ଲୁଚେଇ ହୁଏ । ଆଜିଠୁ ସେ ବରିନେବ ଅନ୍ଧାର । ଏ ତାର ଶପଥ ।

ଆଲୋକ ଶୁଣିଥିଲା ସମୁଦ୍ରକୂଳ ମଣିଷକୁ ସବୁ ଦେଇଛି । ଧନରତ୍ନ ସୁଖ ସଂପଦ, ଗର୍ବ ଗୌରବ ସବୁକିଛି । ଇତିହାସର ସେଇ ପୁରୁଣା କଥା ଆଜିବି ସତ ପାଲଟି

ଯାଇଚି । ସମୁଦ୍ରକୂଳ ଅସହାୟ ମଣିଷର ସାହା ଭରସା । ଏଇଠୁ ଅନ୍ଧାର ଭିତରୁ ସେ ସାଉଁଟି ଆଣିବ ତା'ଜୀବନପାଇଁ ରସଦ। ଯାହାପାଇବ ସେଥିରେ ସଂଗ୍ରାମର ଅଧେ ।

ଅନ୍ଧାରଭିତରୁ ଆବିଷ୍କାର କରିବ ଆଲୋକ ତାର ଜୀବନ ସମ୍ବଳ। ଫିଙ୍ଗା ହୁଇସ୍କି ବୋତଲରୁ ନିଗାଡି ନିଗାଡି ଢାଳିଦେଇ ଦି'ବୁନ୍ଦା ହୁଇସ୍କି ତା' ନିଜ ଓଠ ଉପରେ । ପ୍ରଥମ ଦିନରେ ସାହାସ ସଂଚୟ କଲା । ଏଭଳି ଜଘନ୍ୟ କର୍ମକୁ ଆଦରି ନେବାର ଆଦୌ କୌଣସି ଅଭିଲାଷ ନଥିଲେବି ସେଥିରୁ ଓହରିବାର ଆଉ ଉପାୟ ତା ପାଖରେ ନଥିଲା । ନିଷ୍ପତ୍ତିକୁ ଦୋହରାଇ ପାରିବ ନାହିଁ । ଜବାବ୍ ଦେଇ ସାରିଛି ବଂଧୁ ସଂଗ୍ରାମ ପାଖରେ । ସମୁଦ୍ର ବେଳାର ଯେତେକ ଆୟ ତାର। ସହରର ଯେତେକ ଆୟ ସଂଗ୍ରାମର । ସେତକ ମିଶି ହବ ଦି'ଭାଗ । ପଛକୁ ଫେରିବାର ଉପାୟ ନାହିଁ । ଆଜି ପୁଣି ପ୍ରଥମ ଦିନ । ତା'ପାଳି । କ'ଣ କହିବ କିପରି ଆରମ୍ଭ କରିବ । କେତେ ସମୟ ଭିତରେ କାମ ଶେଷକରି ଫେରିବ। କୋଉ ବାଟେ ଯାଇ, କୋଉବାଟେ ଫେରିବ । ସଂକଟ ପଡିଲେ କିପରି ନିଜକୁ ଉଦ୍ଧାର କରିବ ଓ ଆତ୍ମରକ୍ଷାର ଉପାୟ କ'ଣ ? ସବୁ ଭାବିଚିନ୍ତି ବିଚାରିନେଲା। ଜୋର୍ କରି ପଶିଗଲା ଅନ୍ଧାରଭିତରେ । ଝପଟି ଆସି ପହଞ୍ଚିଗଲା ସଂଗ୍ରାମ ପାଖରେ ।

କ'ଣ କିଛି ହେଲା ? ପଚାରିଲା ସଂଗ୍ରାମ ।

ହଁ ଚାରିଶ ଟଙ୍କା ଉତ୍ତର ଦେଲା ଆଲୋକ । ଜଣକୁ ଦୁଇଶହ ଲେଖେଁ କହି ଦେଇଛୀ ଆଜିଠୁ ଯିଏ ଏପଟକୁ ଆସିବ। ଆମ ଖଟିରେ ବଟିଗଣିଦେଇ ଆସିବ । ନହେଲେ ଶଳେ ଧରା ହେଇଯିବ ଥାନାକୁ। ଜଣକେ ଦି'ଶହ । ଆମର ଦେଢଶ ଆଉ ଡ୍ୟୁଟିରେ ଥିବା ଦାରୋଗା ବାବୁର ପଚାଶ ।

ସଂଗ୍ରାମ ଉପଦେଶ ଭଙ୍ଗିରେ କହିବା ଆରମ୍ଭିଲା – 'ଆବେ ଶଳା ଓଲୁ! ଦି'ଶ ଟଙ୍କା କ'ଣ ବେଶୀ ହେଇଗଲା । ଯୋଉଗୁଡା ଭାଙ୍ଗ ଗଂଜା ଚରସ୍, ବ୍ରାଉନସୁଗାର ବେପାର କରୁଛନ୍ତି ତାଙ୍କ ଚାନ୍ଦା ଟିକେ ମୋଟା । ଲକ୍ଷ ଲକ୍ଷ କୋଟି କୋଟି ଟଙ୍କାର ବେପାର ନେଇ ଆସିଥିଲା ବେଳେ ଶଳେ ଆମକୁ ଦି'ଚାରିହଜାର ଦେବେନି କାହିଁକି ? ଅଲବତ୍ ଦେବେ । ସେଟା ତୋ କାମ। କେମିତି ତାଙ୍କ ପକେଟରୁ ଖସିବ ମୋଟା ଅଙ୍କର ଟଙ୍କା । ବୁଝିଲୁ ତୁ ଚିନ୍ତା କର।

ପ୍ରବେଶକଲେ ଦୁଇଜଣ ସମବୟସ୍କ ପୁରୁଷ ଆଉ ସ୍ତ୍ରୀ। ସ୍ୱାମୀ ସ୍ତ୍ରୀ ହେବେ ନା କଅଣ ? ବୟସ ଚାଳିଶରୁ ପଇଁଚାଳିଶ ଛୟାଳିଶ ବର୍ଷଭିତରେ। ଖାଇପିଇ ଆରାମ୍‌ରେ ରହି ଚେହେରା ଖାଲି ଜଳୁଚି । ଚେହେରାରୁ ବୟସ କଳନା କରିହେବ ନାହିଁ । ଏତେବେଳକୁ ଆସିଛନ୍ତି ସମୁଦ୍ରକୂଳ । ବୋଧହୁଏ ଶରୀର କ୍ଳାନ୍ତି ଦୂର କରିବା ସହିତ ମନ ହାଲକା କରିବା ପାଇଁ । ଅନ୍ଧାର ଆଡେ ମୁହାଁଇବା ମାତ୍ରେ ଆଲୋକ ତା' କର୍ତ୍ତବ୍ୟରେ ଅବହେଳା ନକରି ମଦୁଆଭାଷାରେ ଆରମ୍ଭକଲା- 'ଏ! ଆମକୁ ନପଚାରି କୁଆଡେ ଯାଉଛୁ ଶାଳା! କୋଉଠୁ ଉଡେଇକି ଆଣିଚୁ ଏ ଚିଡିଆକୁ ? ଆମ ବଟିଟା ନଦେଇ କୁଆଡେ ଚାଲିଲୁ ବେ!!

ଆଜ୍ଞା ବଟିକେତେ ? ପଚାରିଲା ଆଗନ୍ତୁକ ।

ଦି'ଶ । ଦେଢଶ ଆମର, ପଚାଶ ସେ ହାବିଲ୍‌ଦାର ବାବୁର। ଦେଇ ଦେ। ତୁ ଯାହାକର ଆମର କିଛି କହିବାର ନାହିଁ ।

ଆଗନ୍ତୁକ ପଚାରିଲା 'ଆଛା! ତମର ଦିନକୁ କେତେ ଆୟ ହୁଏ ସମୁଦ୍ରବେଳାରୁ ?

'ନାଇଁ ଆଜ୍ଞା! ଆଜି ଆରମ୍ଭ କରିଛୁ । ମାତ୍ର ଚାରିଶ । ଜଣକୁ ଦି'ହଶ ଲେଖେଁ । ଏଣିକି ଚାଲିବ। କିଏ ଜାଣେ କୋଉଦିନ କେତେ ହବ ?

ଭଦ୍ରବ୍ୟକ୍ତି ଆଗନ୍ତୁକ ପକେଟରୁ ଏକହଜାର ଟଙ୍କିଆ ଗୋଟେ ବାହାର କରି ଧରାଇଦେଲେ ଆଲୋକ ହାତରେ ।

ଆଲୋକ ଏତେଗୁଡେ ଟଙ୍କା ଦେଖି ହଡବଡେଇଗଲା । ପ୍ରଥମ ଦିନରେ ଏକହଜାର ଟଙ୍କା ? ବୋଧହୁଏ ପାଟିଟା ବଡଗୋଟେ ବେପାରୀ ହେଇଥିବ । ଏତିକିରେ ଚଳିବ ନାହିଁ ବୋଲି କହି ଦେବାକୁ ଇଛା ହେଉଥିଲେ ବି କଥାଟା ତଣ୍ଡିଯାଏଁ ଆସି ଫେରିଗଲା । ଓଠର ଏଗୁଣ୍ଡି ଡେଇଁ ପଦାକୁ ଆସିପାରିଲା ନାହିଁ ।

ସଂଗ୍ରାମ ପଚାରିଲା- 'ଆପଣ ଆମକୁ ଏତେଗୁଡେ ଟଙ୍କା ଦେଇ କ'ଣ କହିବାକୁ ଚାହୁଁଛନ୍ତି ?

ମୁଁ କହିବାକୁ ଚାହେଁ ତମପରି ଯୁବକ । ଏଇ ବେଳାଭୂମି ଦେଇ ଦେଶର ଭାଗ୍ୟତକ ବିକ୍ରି ହୋଇଯାଉଥିବା ଘଟଣାକୁ ଦେଖିମଧ୍ୟ ନୀରବ ହୋଇ ନବସୁ । ମାତ୍ର କେଇଟା ଟଙ୍କା ବିନିମୟରେ ସମାଜକୁ କଳଙ୍କିତ ବିଶୃଙ୍ଖଳ ଓ ନିଷ୍ପ୍ରାଣ ନକରୁ ଦେଶକୁ ଅନ୍ତସାରଶୁନ୍ୟ ନ କରୁ।

'ତମେ ଦୁହେଁ ପାଠ ପଢିଛ ?'

ହଁ ।

କେତେ ?

ଆଲୋକ ନିଜକୁ ଦେଖାଇ କହିଲା- 'ମୁଁ ଆଜ୍ଞା ରାଜନୀତି ବିଜ୍ଞାନରେ କରିଛି ଏମ୍.ଏ.ଏମ୍‌ଫିଲ୍ ।

ମୁଁ ପ୍ରାଣୀବିଜ୍ଞାନରେ କରିଛି ମାଷ୍ଟର ଡିଗ୍ରୀ। ୟୁନି ଭରସିଟିର ଫାଷ୍ଟକ୍ଲାସ୍ ଫୋର୍ଥ, ସଂଗ୍ରାମ କହିଲା ।

ଆଗନ୍ତୁକ ଭଦ୍ରବ୍ୟକ୍ତିଙ୍କ ସ୍ତ୍ରୀ ଟିକେ ନିରୋଳାକୁ ଡାକିନେଇ କହୁଥାନ୍ତି- 'ଆଛା ଚୋରଧରିବା ପାଇଁ ସାଦାଡ୍ରେସ୍‌ରେ ଆସିଚ। ତମକୁ କିଏ କାହିଁକି ଜାଣିବ ? ବେକାର ଟୋକା ଗୁଡାଙ୍କୁ ଏଇ ଡ୍ରେସ୍‌ରେ, ଏଇ ଢଙ୍ଗରେ, ଏଇ ଉପାୟରେ କାମ କରିବାପାଇଁ

ଆପଏଣ୍ଟମେଣ୍ଟ ଦେଇ ଦଉନ । ଦେଖିବ ବେଳାଭୂମିରେ ହେଉଥିବା ହତ୍ୟା, ଧର୍ଷଣ, ଜନାକାରୀ ଆଉ ଚୋରାବେପାର କେତେ ରୋକି ହେଇଯିବ ?

'ତମେ ଶୁଣିଲଟି ? ଡ୍ୟୁଟିରେ ଥିବା ହାବିଲ୍‌ଦାର୍‌ର ସେୟାର୍ ପଚାଶ୍‌ଟଙ୍କା ? ସେମିତି ଏମାନେ ଭାଗ ନେଇ ସବୁ ଛାଡିଦେବେ, ଆଗନ୍ତୁକ ଉତ୍ତର ଦେଲେ ।

ତମେ ତାଙ୍କୁ ଚାକିରୀ ଏକ ସର୍ତ୍ତରେ ଦବ । ଯେତୋଟି କେସ୍ ସେମାନେ ରିପୋର୍ଟ କରିବେ ତାରିଉପରେ ଚାକିରୀ ଜୀବିକା, ଜୀବନ ସବୁକିଛି । ରିପୋର୍ଟ ନାହିଁତ ଦରମା ନାହିଁ କି ଚାକିରୀ ନାହିଁ । ଯେତେ ଆଦାୟ ତାରି ଅନୁପାତରେ ଚାକିରୀ ବୈଧିକରଣ ଓ ଦରମାର ପରିମାଣ ଏ କଥା ଆଗନ୍ତୁକଙ୍କ ମନକୁ ପାଇଗଲା । ସେ ଗୋଟେ କାଗଜରେ ଲେଖି ଦସ୍ତଖତ କରି, ଆଲୋକ ହାତରେ ଧରାଇ ଦେଇ କହିଲେ- ' ନିଅ ! ଏ ହାବିଲ୍‌ଦାରକୁ ଦେଇଦେବ । ତମେ ଦିହେଁ କାଲି ମୋ ଅଫିସ୍‌କୁ ଆସିଦେଖା କରିବ ।

ଆଗନ୍ତୁକ ବେଳାଭୂମିରୁ ରାସ୍ତା ଉପରକୁ ଆସି ଗାଡିରେ ବସି କୁଆଡେ ଅନ୍ତର୍ଦ୍ଧାନ ହୋଇଗଲେ ।

ଆଲୋକ ଆଉ ସଂଗ୍ରାମ ! କାଗଜ ଧରି ଧାଇଁଲେ ହାବିଲଦାର ପାଖକୁ । କାଳେ ଏଇ କାଗଜରେ କିଛି ଗୋଟେ ବଡବେପାର ହେଇଯିବ । କୋଉଗୋଟେ ଜାହାଜପାକାଇଚି ଲଙ୍ଗର। ଆମ ଭାଗ୍ୟଦେବୀ ପ୍ରସନ୍ନ ହେଲେ କି କଅଣ ? ହାବିଲ୍‌ଦାର କାଗଜ ଦେଖି ଛାନିଆଁରେ କହିଉଠିଲା ।

ହେ- ଭଗବାନ୍ ଏସ୍.ପି.ସାହାବ୍ ଆସିଥିଲେ ? ତମେ ମୋ ବିଷୟରେ କିଛି କହିନ ତ ?

ଆଲୋକ ଆଉ ସଂଗ୍ରାମର ପାଦତଳେ ଭୂଇଁନଥିଲା ।

ଲାଗୁଥିଲା ସେମାନେ ଖସି ଖସି ଯାଉଛନ୍ତି ପାତାଳଆଡେ ।

ଏତେଦିନ ହେଲା ଯାହା ହୋଇନଥିଲା । ଆଜି କାହିଁକି ଏ ଆଚରଣ କଲୁ । ହେ ଭଗବାନ୍ ! ଆମକୁ ରକ୍ଷାକର। ତମେ ହିଁ ଆମର ସାହାଭରଷା । ଏସ୍.ପି.ଙ୍କର ଏକହଜାର ଟଙ୍କା କେମିତି ଫେରିବ ? ସରିଗଲୁ ଆମେ । ହେ ଭଗବାନ୍ ।

ସମୁଦ୍ରର ଛାତିଚିରି ଲାଲ୍ ପେଣ୍ଡୁପରି ଜହ୍ନ ଉଇଁ ଆସୁଥିଲା ।

ଭୀତତ୍ରସ୍ତ ସଂଗ୍ରାମ ଓ ଆଲୋକ ଭାବୁଥିଲେ- 'ୟା ପରେ କ'ଣ ହବ ?'



ଗାଳ୍ପିକ **ଅବଦୁଲ ଓସିଦ୍ ଖାଁଙ୍କର** **"ଅନ୍ଧାରର ମୁହଁ"** ଏକ ସଫଳ ଗଳ୍ପ ସଂକଳନ । ପ୍ରତ୍ୟେକଗଳ୍ପରେ ସେ ଅନ୍ଧାରରମୁହଁ ପରି ଅନେକ ନାଟକୀୟତା ବଳରେ ଗ୍ରନ୍ଥି ମୋଚନ କରିଛନ୍ତି । ପ୍ରୟୋଗବାଦୀ ସତ୍ୟ ଓ ରୋମାଞ୍ଚକର ଝଲକ ମଧ୍ୟରେ ସେ ଯାହା କହିବା କଥା, ତାହା କହିଦେଇଛନ୍ତି । ଗଳ୍ପର ସଫଳତା ହେଉଛି ବାସ୍ତବତା ଅପେକ୍ଷା ତାରୁଣ୍ୟ । ଏତେ ପ୍ରଭାବଶାଳୀ ଭାବରେ ସେ ଚରିତ୍ରଗୁଡିକୁ କାଉଁରୀକାଠି ଭଳି ଯେଉଁଠିକି ଇଛା ସେଠିକି ସେ ବୁଲେଇ ପାରିଛନ୍ତି । ଏଣୁ ପାଠକ ଚରିତ୍ରକୁ ଖୋଜିଲାବେଳକୁ ଚରିତ୍ର ସେଠି ନାହିଁ । **'ମହାପୁରୁଷ', 'ବିଷକନ୍ୟା', 'ଅନ୍ଧାରର ମୁହଁ'** ଭଳି ବହୁଗଳ୍ପରେ ଯାହାକୁ କେହି କେବେ ଦେଖିନାହିଁ ମାତ୍ର ଶବ୍ଦର ଐନ୍ଦ୍ରଜାଲିକତାରେ ତାହା ଦେଖି ହୋଇଯାଉଛି । ଏ ଗଳ୍ପ ସଂକଳନଟି ଅନ୍ତିମ ନୁହେଁ । ଏହା ଡଃ ଓସିଦ୍ ଖାଁଙ୍କର ପ୍ରଥମ ଉପୋଦ୍‌ଘାତ ମାତ୍ର ।

ଡଃ ଉମେଶ ପଟ୍ଟ୍ରୀ



ଡଃ ଅବ୍‌ଦୁଲ ଓସିଦ୍ ଖାଁ ଓଡ଼ିଶାର ଏକ ସୁପରିଚିତ ନାମ । ଏକାଧାରରେ ସେ ଜଣେ ବିଜ୍ଞ ଗବେଷକ, ସମାଲୋଚକ, ପ୍ରାବନ୍ଧିକ, କବି, ଗାଳ୍ପିକ, ଗୀତିକାର, ଶିଶୁସାହିତ୍ୟିକ, କଣ୍ଠଶିଳ୍ପୀ, ସମାଜ ସେବକ ଓ ସାରସ୍ୱତ ସାଧକ । ଓଡ଼ିଶାର ବହୁ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତ ଓ ସମ୍ବର୍ଦ୍ଧିତ । ପ୍ରଥମ ଶିଶୁ ଅନନ୍ତ ସମ୍ମାନ, ଡଃ.କୁଞ୍ଜବିହାରୀ ସ୍ମୃତି ସମ୍ମାନ, ଦୀନକୃଷ୍ଣ ସ୍ମୃତି ପରିଷଦସମ୍ମାନ, କୋଣାର୍କ ସାହିତ୍ୟ ଉତ୍ସବ ସମ୍ମାନ, ସାହାଣ ମେଲା ଦୈନିକ ସମ୍ବାଦପତ୍ର ତରଫରୁ 'ସାଲବେଗ ସମ୍ମାନ' ଆଦି ଦ୍ୱାରା ସେ ସମ୍ମାନିତ । "୧୯୫୦ ପୂର୍ବବର୍ତ୍ତୀ ଓଡ଼ିଆ ଉପନ୍ୟାସରେ ଖଳ ଚରିତ୍ର" ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ଡିଗ୍ରୀ ଲାଭ କରିବାରେ ସେ ହେଉଛନ୍ତି ପ୍ରଥମ ମୁସଲମାନ ଓଡ଼ିଆ ଅଧ୍ୟାପକ । ସଂପ୍ରତି ନିମାପଡ଼ା ମହାବିଦ୍ୟାଳୟ ଓଡ଼ିଆ ବିଭାଗରେ ବରିଷ୍ଠ ଅଧ୍ୟାପକ ଭାବେ କାର୍ଯ୍ୟରତ ଓ 'ପ୍ରାଚୀ ଉପତ୍ୟକା: ଓଡିଶାର ଧର୍ମ ଓ ଲୋକଧାରାର ଏକ ଗନ୍ତାଘର' ଶୀର୍ଷକରେ ବିଶ୍ୱବିଦ୍ୟାଳୟ ଆୟୋଗ, ନୂଆଦିଲ୍ଲୀଙ୍କ ଦ୍ୱାରା ଉଚ୍ଚତର ଗବେଷଣାରତ । ଶ୍ରୀଯୁକ୍ତ ଖାଁଙ୍କର 'ଅଜ୍ଞାତ ବାସର ନିର୍ଜନତା' ଏକ ବହୁ ଚର୍ଚ୍ଚିତ କବିତା ଗ୍ରନ୍ଥ । 'ଅନ୍ଧାରର ମୁହଁ' ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ ସଂକଳନ ।

ପ୍ରକାଶିକା